
ସୂଚୀ

ବିଷୟ | ପୃଷ୍ଠା

---

### ସଚିତ୍ର ଓ ବୃହତ୍

# ଖୁଲଣାସୁନ୍ଦରୀ

ବା

# ନିଶା ମଙ୍ଗଳବାର



## ପ୍ରଥମ ଛାନ୍ଦ

### ମଙ୍ଗଳାଙ୍କ ବନ୍ଦଣା

ରାଗ—କଳଶା

ନମୋ ମା ମଙ୍ଗଳା ଦେବୀ ଜଗତପାଳିନୀ । ମଙ୍ଗଳ ଦାୟିନୀ ମାତ ସ୍ୱାପଦହାରଣୀ । ସତ୍ୟେ ସତ୍ୟରୂପା ମାତ ଯୋଗକଲ୍ପାନ୍ତରେ । ଅମର-ଆତଙ୍କ ମାତ ନାଶିଲୁ ଅମରେ । ୧ । ଆଦ୍ୟା ସନାତନୀ ମାତ ପ୍ରକୃତି ରୂପିଣୀ । ବିଷ୍ଣୁ କଳ୍ପନା ସମ୍ଭୂତା ଶକ୍ତି ସ୍ୱରୂପିଣୀ । ୨ । ହରିହର ମାନସ ମୋହିନୀ ବ୍ରହ୍ମାୟଣୀ । ସର୍ବଦେବ ତେଜୁଁ ଜାତ ହେଲ ଗୋସ୍ୱାମିଣି ୩ । ଅମର କଣ୍ଟକ ଯେ ମହିଷା ନାମେ ଦୈତ୍ୟ । ତା ନିଧନେ ହୋମ କଲେ ସର୍ବଦେବ ବ୍ରାତ ॥ ସେ ଯଜ୍ଞ ଅନଳୁ ସର୍ବଦେବ ତେଜ ଘେନି । ପ୍ରକୃତି ରୂପିଣୀ ଜାତ ହେଲ ଏ ଅବନୀ ॥ ପଞ୍ଚବର୍ଷୀ ମଙ୍କରନ୍ଧୀ ଷଡ଼ଭୁଜା ହୋଇ ।

ସ୍ୱର୍ଣ୍ଣ ଗିରିପରେ ମାତ ଥିଲ ଭଦ୍ରହୋଇ । ୪ । ସଂସାର ଅସାରକାରୀ ମହିଷା
ଦୁର୍ମତି । ତା ନିଧନେ ହେଲୁ ମାତ ମୋହିନୀ ମୂରତି । ୫ । ନାଶି ସର୍ବ
ସୈନ୍ୟ ମହିଷାକୁ ମାଡ଼ି ବଳେ । କନ୍ଧେ ଧେନି ବୁଲିଲୁ ସେ ଅତି
କୋପାନଳେ । ୬ । ଅକସ୍ମାତେ ଜ୍ୟୋତି ସ୍ୱରୂପିଣୀ ହେଲୁ ଜାତ । ତବୁ
ହେତୁ ପଳାଇଲେ ମା ମହିଷା ଦୈତ୍ୟ । ୭ । ପ୍ରକୃତିଅଙ୍ଗିନୀ ମାତ ସର୍ବସିଦ୍ଧି
ଦାତ୍ରୀ । ଆପଦ ପଡ଼ିଲେ ରକ୍ଷା ଦେଖାଇ ଶକତି । ୮ । ଅତୁଟ ଅକାଟ ଅଟେ
ଶରୀର ତୋହର । ପବନସ୍ୱରୂପୀ ଧରୁ ନିବିଧ ଆକାର । ୯ । ସତ
ରଜ-ତମ ରୂପା ଅଟୁ ତୁ ଭବାନୀ । ମାତାରୂପେ ଜନୁକର ବୋଲୁତ
ଜନନୀ । ୧୦ । ଜାଗ୍ରତରୂପେ ପ୍ରୀତି ଦେଇ କାଳିକା ରୂପରେ । ଜୀବନ
ହନ୍ତକରୁ ମା ସକଳ ପ୍ରାଣୀରେ । ୧୧ । ହିଙ୍ଗୁଳା ରୂପରେ ଶେଷେ କରୁ
ମା ଦହନ । ତୋ ମହିମା କି ବର୍ଣ୍ଣିବ ମୁହିଁ ମୂଢ଼ଜନ । ୧୨ । ଅଗାଧ ବାରିଧି
ତୋର ମହିମା ମଧ୍ୟରୁ । ବର୍ଣ୍ଣନା କରିବି ମାତ ତୋହର କୃପାରୁ । ୧୩ ।
ଅଦ୍ୟା ସନାତନୀ ମୋର କଣ୍ଠେ ବସି ତୁହି । ପଦ କହିଦିଅ ମାତ କରୁଣାକୁ
ବହି । ୧୪ । ମଙ୍ଗଳବାରରେ ପ୍ରାଣୀ ତୋ ଚରଣେ ସେବି । ବିପଦୁ
ଉଦ୍ଧାର ହେବେ ଗୋ ମଙ୍ଗଳା ଦେବି । ୧୫ । ସେହି ବିଷୟ ପୂର୍ବରୁ
ଶୁଣିଛି ମୁଁ ଯାହା । ଅହେ ସାଧୁ ସନ୍ଥମାନେ କହେ ଶୁଣ ତାହା । ୧୬ ।



## ଦ୍ୱିତୀୟ ଛାନ୍ଦ

ରାଗ—କଳଶା

ବନ୍ଦଇ ଶ୍ରୀ ଗଣନାଥ ଗଉରୀ ନନ୍ଦନ । ପାଶ ଅଙ୍କୁଶ ତ୍ରିଶୂଳ ଶ୍ରୀକରେ
ଶୋଭନ । ୧ । ବିଘ୍ନରାଜ ବିଘ୍ନ ନାଶି ଦିଅ ବିଦ୍ୟା ଦାନ । ମୋର ପଞ୍ଚମନ
ରହୁ ଶ୍ରୀପଦ ତଳେଣ । ୧ । ବନ୍ଦଇ ଶ୍ରୀଜଗନ୍ନାଥ ଲକ୍ଷ୍ମୀଦେବୀ ପତି ।
ତ୍ରୈଲୋକ୍ୟର ପ୍ରଭୁ ଦେବ ଅନନ୍ତ ମୂରତି ॥ ବନ୍ଦଇ ଧରାଧରଙ୍କ ସୁତାପତି

ପାଦେ । ମୋହର ଦୁରିତ ନାଶକର ଅପ୍ରମାଦେ ॥ ବନ୍ଦେ ମା ଗଉରୀ ଦେବୀ
ସଦାଶିବ ବାମା । ଆଦ୍ୟା ସନାତନୀ ମାତ ପ୍ରକୃତି ଜନମା ॥ ବନ୍ଦଇ
ଶ୍ରୀ ଲକ୍ଷ୍ମୀଦେବୀ କୃଷ୍ଣଙ୍କ ଘରଣୀ । ଜଗତଜନନୀ ମାତ ତ୍ରୈଲୋକ୍ୟ ପାଳିନୀ ॥
ବନ୍ଦଇ ଶ୍ରୀ ସାଧୁସନ୍ଥ ଜନଙ୍କ ଚରଣେ । ଭକ୍ତିସୁଧା ଦେଇ ତାର ଏ ଅଧମ
ଜନେ ॥ ବନ୍ଦଇ ଶ୍ରୀ ସରସ୍ୱତୀ ପାଦେ ଏକ ଚିତ୍ତେ । କଣ୍ଠରେ ବସିଣ ପଦ
କହିଦିଅ ମୋତେ ॥ ରାଜାଙ୍କ ମଧ୍ୟରେ ଶ୍ରେଷ୍ଠ ବନ୍ଦେ ରଘୁନାଥ । ବୀରବରଙ୍କ
ମଧ୍ୟରେ ବନ୍ଦଇ ମୁଁ ପାର୍ଥ ॥ ରସିକଙ୍କ ମଧ୍ୟେ ବନ୍ଦୁ କୃଷ୍ଣଚନ୍ଦ୍ର ଏକା ।
ନାରୀଙ୍କର ମଧ୍ୟେ ମୁଁ ଯେ ବନ୍ଦଇ ରାଧିକା ॥ ସତୀଙ୍କର ମଧ୍ୟେ ମୁଁ ଯେ
ବନ୍ଦଇ ଜାନକୀ । ଋଷିଙ୍କର ମଧ୍ୟେ ମୁଁ ଯେ ଅଗସ୍ତିଙ୍କି ଲେଖି ॥ ନାଗରଙ୍କ
ମଧ୍ୟେ ବନ୍ଦେ ମହାକାଳ ଶର । ଯକ୍ଷଙ୍କ ମଧ୍ୟରେ ମୁହିଁ ବନ୍ଦଇ କୁବେର ॥
ଶାସ୍ତ୍ରଙ୍କର ମଧ୍ୟେ ବନ୍ଦେ ଶ୍ରୀମହାଭାରତ । ତୀର୍ଥଙ୍କ ମଧ୍ୟେ ବନ୍ଦଇ ମୁଁ ପୁଷ୍କର
ତୀର୍ଥ ॥ ପତ୍ରଙ୍କର ମଧ୍ୟେ ମୁଁ ଯେ ତୁଳସୀ ବନ୍ଦଇ । ଧାତୁଙ୍କ ମଧ୍ୟେ ସୁବର୍ଣ୍ଣ
ବନ୍ଦୁଅଛି ମୁହିଁ ॥ ଦ୍ୱୀପଙ୍କର ମଧ୍ୟେ ମୁଁ ବନ୍ଦିଲି ଜମ୍ବୁଦ୍ୱୀପ । ମନୁଷ୍ୟଙ୍କ ମଧ୍ୟେ
ମୁଁ ଯେ ବନ୍ଦିଲଇଁ ନୃପ ॥ ଦାନୀଙ୍କ ମଧ୍ୟରେ ମୁହିଁ କର୍ଣ୍ଣକୁ ବନ୍ଦଇ । ପୁତ୍ରଙ୍କ
ମଧ୍ୟରେ ବନ୍ଦେ ପ୍ରହଲ୍ଲାଦ ମୁହିଁ ॥ ପଣ୍ଡିତଙ୍କ ମଧ୍ୟେ ମୁଁ ବନ୍ଦିଲି ବୃହସ୍ପତି ।
ହସ୍ତୀ ମଧ୍ୟେ ମୁଁ ବନ୍ଦିଲି ଐରାବତ ହସ୍ତୀ ॥ ପର୍ବତଙ୍କ ମଧ୍ୟେ ମୁଁ ବନ୍ଦିଲି
ମେରୁଗିରି । କ୍ଷେତ୍ର ମଧ୍ୟେ ବନ୍ଦେ ଶ୍ରୀ ପୁରୁଷୋତ୍ତମପୁରୀ ॥ ପୁଷ୍ପଙ୍କର ମଧ୍ୟେ
ମୁଁ ବନ୍ଦିଲି ପାରିଜାତ । ବ୍ରତ ମଧ୍ୟେ ମୁଁ ବନ୍ଦିଲି ଏକାଦଶୀ ବ୍ରତ ॥ ବାରଙ୍କର
ମଧ୍ୟେ ମୁଁ ବନ୍ଦିଲି ଗୁରୁବାର । ବସନ୍ତ ଋତୁକୁ ବନ୍ଦେ ଋତୁଙ୍କ ମଧ୍ୟର ॥
ବାନରଙ୍କ ମଧ୍ୟେ ମୁଁ ବନ୍ଦିଲି ହନୁମାନ । ଦେଶ ମଧ୍ୟେ ବନ୍ଦିଲି ଯେ
କାଶୀକ୍ଷେତ୍ର ସ୍ଥାନ ॥ ମନ୍ତ୍ରୀଙ୍କ ମଧ୍ୟରେ ମୁଁ ବନ୍ଦିଲି ସହଦେବ । ରାଜାଙ୍କର
ଶ୍ରେଷ୍ଠ ଯେ ବନ୍ଦିଲି ମୁଁ ବାସବ ॥ ଦାନୀଙ୍କର ମଧ୍ୟେ ମୁଁ ଯେ ବନ୍ଦିଲଇଁ ବଳି ।
ଚଣ୍ଡୀଙ୍କର ମଧ୍ୟେ ମୁହିଁ ବନ୍ଦିଲି ମା କାଳୀ । ୨୩ । ଛନ୍ଦଙ୍କର ମଧ୍ୟେ ମୁଁ
ବନ୍ଦିଲି ପାଠଛନ୍ଦ । ଶରଙ୍କର ମଧ୍ୟେ ମୁଁ ବନ୍ଦିଲି ବ୍ରହ୍ମଅସ୍ତ୍ର ॥ କବିଙ୍କର ମଧ୍ୟେ
ବ୍ୟାସଦେବଙ୍କୁ ବନ୍ଦଇ । ମାସ ମଧ୍ୟେ ବନ୍ଦିଲଇଁ କାର୍ତ୍ତିକ ଯେ ମୁହିଁ । ୨୫ ।

ସାଗରଙ୍କ ମଧ୍ୟେ ଯେ ବନ୍ଦିଲି କ୍ଷୀରସିନ୍ଧୁ । ନକ୍ଷତ୍ର ମଧ୍ୟରେ ମୁହିଁ ବନ୍ଦିଲଇଁ ଇନ୍ଦୁ ।୨୬। ଧେନୁଙ୍କର ମଧ୍ୟେ ମୁଁ ଯେ ବନ୍ଦିଲି ସୁରଭୀ । ନଦୀଙ୍କର ମଧ୍ୟେ ମୁହିଁ ବନ୍ଦିଲି ଜାହ୍ନବୀ । ୨୭ । ଆକାଶର ମଧ୍ୟେ ମୁଁ ବନ୍ଦିଲି ମେଘମାଳ । ନବଗ୍ରହ ମଧ୍ୟେ ବନ୍ଦେ ରବିଙ୍କ ଦୁଲାଳ । ୨୮ । ଛୟ୍ୱା ମାୟା ସହିତରେ ଆଦିତ୍ୟ ବନ୍ଦଇ । କମଳାକାନ୍ତ ଚରଣେ ଶରଣ ପଶଇ । ୨୯ । ଭାଇଙ୍କର ମଧ୍ୟେ ମୁଁ ଯେ ବନ୍ଦିଲି ଲକ୍ଷ୍ମଣ । ବୀରଙ୍କର ମଧ୍ୟେ ଯେ ବନ୍ଦିଲି ହନୁମାନ ॥ ଧାନୁକୀଗଣରେ ବନ୍ଦେ ପାର୍ଥ ବରବର । ପ୍ରତିଜ୍ଞା ସମର୍ଥେ ବନ୍ଦେ ଗଙ୍ଗାଙ୍କ କୁମର । ୩୧ । ସତ୍ୟବାଦୀ ପଣେ ମୁହିଁ ବନ୍ଦେ ଯୁଧିଷ୍ଠିର । ଯତିଙ୍କ ମଧ୍ୟରେ ବନ୍ଦେ ଦେବ ଷଣ୍ମୁଖର । ୩୨ । ବୃକ୍ଷ ମଧ୍ୟେ ବନ୍ଦିଲଇଁ ଅଗୁରୁ ଚନ୍ଦନ । ଘାର ସହଣେ ବସୁଧା କଲଇ ବନ୍ଦନ ।୩୩। ସର୍ପଙ୍କର ମଧ୍ୟେ ମୁଁ ଯେ ବନ୍ଦିଲି ଅନନ୍ତ । ପକ୍ଷୀମଧ୍ୟେ ବନ୍ଦଇ ମୁଁ ବିନତାର ସୁତ । ୩୪ । ବନଜନ୍ତୁ ମଧ୍ୟେ ମୁଁ ଯେ କେଶରୀ ବନ୍ଦଇ । ଚତୁର୍ଦ୍ଦଶ ପୁରେ ସ୍ୱର୍ଗ ବନ୍ଦିଲଇଁ ମୁହିଁ ॥ ବେଦ ମଧ୍ୟେ ମୁହିଁ ସାମ ବେଦକୁ ବନ୍ଦିଲି । ମନ୍ତ୍ର ମଧ୍ୟେ ରାମ ତାରକକୁ ସାର କଲି । ୩୬ । ମଣିମାନଙ୍କର ମଧ୍ୟେ ବନ୍ଦିଲି ମୁକୁତା । ଜନନୀର ମଧେ ମୁଁ ବନ୍ଦିଲି ବସୁମାତା । ୩୭ । ଯକ୍ଷ, ରକ୍ଷ, ନାଗ, ନର, ସୁର ଯେ କିନ୍ନର । ଜଳଚର ସ୍ଥଳଚର ପକ୍ଷୀ ବ୍ୟୋମଚର ।୩୮। ସବୁର ଚରଣ ତଳେ ମୋହର ଶରଣ । ଦୀନଭିକାରୀକ ପ୍ରଭୁଙ୍କର ପରିତ୍ରାଣ । ୩୯ ।

---

## ତୃତୀୟ ଛାନ୍ଦ

ରାଗ—କଳଶା

ବନ୍ଦଇ ଶାରଳା ମା ଗୋ ତୁମ୍ଭ ଶ୍ରୀ ଚରଣେ । ନିତପ୍ରତି ମନା ରଖୁ ମୋର ଅନୁକ୍ଷଣେ । କୃପା ବିଲୋକନେ ମୋତେ ଅବଧାନ କର । ଆତଙ୍ଗନାଶିନୀ ମାଗୋ ବାରେକ ଉଦ୍ଧର । ୨ । ପଦ କହି ଦିଅ ତୁମ୍ଭେ ମୋର କଣ୍ଠାଗତ । କରିବି ତୁମ୍ଭ ମହିମା ଜଗତେ ବିଖ୍ୟାତ । ୩ । ଯେଉଁ ଲୋକମାନଙ୍କୁ ଦୁଃଖରୁ ରଖିଅଛୁ । ତାହା ମୁହିଁ କହିବି କରୁଣା ହେଲେ କିଛୁ । ୪ । ଦୁରିତନାଶିଣୀ

ମା ଗୋ ଜଗତ ଜନନୀ । ବଧିର ନନ୍ଦନୀ ମା ଗୋ ହରର ଘରଣୀ । ତୁମ୍ଭେ
ଅଷ୍ଟଚଣ୍ଡୀ ମା ଗୋ ମଙ୍ଗଳା ବୋଲାଅ । ତୁମ୍ଭେ ଆଦ୍ୟମାତା ମାଗୋ ସର୍ବଠାରେ
ଥାଅ ।୭। ତୁ ଅମ୍ବିକା ତୁ ପାର୍ବତୀ ତୁହି ଶାକାମ୍ବରୀ । ତୁ ଯେ କମଳା ବିମଳା
ତୁହି ଯେ ଗଉରୀ ॥ ତୁହି ଲକ୍ଷ୍ମୀ ସରସ୍ୱତୀ ତୁହି ଯେ କାଳିକା । ତୋତେ
ଆଉ ପଟାନ୍ତର ଅଛି କେ ବାଳିକା ॥ ତୁ କଙ୍କାଳୀ ତୁ ବେତାଳୀ ଶାରଳା
ଯେ ତୁହି । ମୂର୍ଖ କଣ୍ଠେ ବସି ଚତୁର୍ବେଦ ଦେଉ କହି । ୯ । ମୋତେ ତୁ
କରୁଣା କର ହେମବନ୍ତ ସୁତା । କହିବି ବଣିଆ ରାଜା ଧନେଶ୍ୱର କଥା ।୧୦।
କେତେ ଦୁଃଖ ସହିଲା ସେ ବନ୍ଦଶାଳେ ରହି । ତାହାକୁ ଯେମନ୍ତେ ରକ୍ଷା କଲୁ
ମହାମାୟୀ ।୧୧। ଖୁଲଣା ବୋଲଣ ତାର ଅଟଇ ଯୁବତୀ । ମାନବ ଦେହରେ
ଯେତେ ସହିଲା ବିପତ୍ତି । ୧୨ । ତାହା ପରି ଦୁଃଖୀ ଆଉ ନାହିଁ ଏ ଜଗତ ।
ତାହାକୁ ଯେମନ୍ତ ରକ୍ଷା କଲୁ ଅଗୋ ମାତ । ୧୩ । ସେ କଥା କହିବାକୁ
ମୋ ଶରଧା ହେଉଛି । ମୋହଠାରେ ଦୟାକର ସିଦ୍ଧି ରାଜ ବର୍ଦ୍ଧି । ୧୪ ।
ଛପନ ଛନ୍ଦରେ ମୁହିଁ କରିବି ଯେ ଗୀତ । ଠିକ ଠିକ କରି ମୋତେ କହି-
ଦେବୁ ତୁ ତ । ୧୫ । ଶୁଣି ଉପହାସ ମୋତେ ନ କରିବେ କେହି । ସେଥି
ନିମନ୍ତରେ ବନ୍ଧୁ ଉର ମୋତେ ହୋଇ ।୧୬। ତୋହର ପ୍ରସନ୍ନେ ଗୀତ କରୁ
ଅଛି ମୁହିଁ । ପଣ୍ଡିତେ ବାଛିଲେ ମା ଗୋ ମୋର ଦୋଷ ନାହିଁ ।୧୭। ଖୁଲଣା
ଚରିତ ଏ ଯେ ଅପୂର୍ବ କାହାଣୀ । ଧୀବର ଭିକାରୀ କହେ ଜଗନ୍ନାଥ ଭଣି ॥

---

## ଚତୁର୍ଥ ଛାନ୍ଦ

ରାଗ—ରାମକେରୀ

ଶୁଦ୍ଧମନେ ଶୁଣ ହେ ବୁଦ୍ଧି ଏ ଯେ ମଙ୍ଗଳା କଥା । ପାଞ୍ଚମନ ଏକ
କରଣି ତୁମ୍ଭେ ଲଗାଅ ଚିନ୍ତା ॥ ଧନଜନ-ପୁତ୍ରସମ୍ପତ୍ତି ଏହା ପାଇବ ଯେବେ ।
ମଙ୍ଗଳା ମାତାଙ୍କ ଚରଣେ ଲକ୍ଷ୍ୟ ଲଗାଅ ଏବେ । ୨ । ଧନେଶ୍ୱର ବୋଲି
ବଣିଆ ଘର ପଶ୍ଚିମ ଦେଶେ । ପାଟଣା କଟକ ତାହାର ମଙ୍ଗଳା ନାମ
ଘୋଷେ ॥ ଏହି କଳିଯୁଗ ଆଦ୍ୟରେ ମର୍ତ୍ତ୍ୟେ ହୋଇଲା ଜାତ । ଅନନ୍ତେ-

ଶୂର ବୋଲି କରି ଅଛେ ତାହାର ତାତ ।୪। ଇନ୍ଦୁରେଖା ବୋଲି ଅଟଇ
ମାତା ନାମ ତାହାର । କୁବେର ପ୍ରାୟ ଧନପତ କହନ୍ତୁଟେଁ ସଂସାର ॥ ଦାସୀ
ପରିବାରୀ ଅଛନ୍ତି କେବା ତା କହିପାରି । ଗୃହ ଯୋଜନରେ ଉଆସ ଗୋଟି
ଅଛେ ତାହାର ।୬। ନବ ତାଳଗଛ ପ୍ରମାଣେ ପାଚେରୀ ତାରଅଛେ । ପୋଷିଲ
ମାର୍ଜାରମାନେ ଯେ ଶୋଇଥାଆନ୍ତି ଖଟେ ।୭। କି କହିବ ତାଙ୍କ ଭାଗ୍ୟ ମୁଁ ଏ
ମାତାଙ୍କ ପ୍ରସନ୍ନେ । ପାଟ ପିତାମ୍ବରୀ ପିନ୍ଧନ୍ତି ତାର ପୋଇଲମାନେ ॥ ଅଶ୍ୱଙ୍କ
ପାଦରେ ଘାଗୁଡ଼ି ହସ୍ତୀ ବେକରେ ଘଣ୍ଟା । ସାରି ପାଦେ ସୁନା ଖଞ୍ଜିତେ
ଭଲ ମୂଣ୍ଡରେ ଜଟା ॥ ଅଜାମାନଙ୍କର ଶିଙ୍ଗରେ ସୁନାଖୋଳ ଦେଇଛି ।
ନଗ୍ରପୁର ତାର ମଣ୍ଡଣି ନାହିଁ ଉପମା କହୁଛି ॥ କାହିଁ ଖଟ ଦୋଳୀ ପଲଙ୍କ
କେଉଁଠାରେ ବାଜିଅ । କାହିଁ ସୁବର୍ଣ୍ଣରେ ଛଛଣା ଅଛି ପାଟ ଚକିଅ ।୧୧।
କେଉଁଘର. ଗୋଟା ହୋଇଛି ମେଘନାଦ ସ୍ତୁଏଣି । କାହିଁ ପ୍ରବାଳରେ
ମୁକ୍ତା ଝୁମ୍ପା ଲଗିଛି ପୁଣି ।୧୨। କେଉଁ ଘର ଗୋଟା ଚନ୍ଦନ ଥୁଅ ଶେଣୀ
ହୋଇଛି । କାହିଁରେ ସାର୍ଜଳ କବାଟ ତମ୍ବାପନ୍ତ ଜଡ଼ିଛି ।୧୩। କେଉଁ ଘର
ଗୋଟା ହୋଇଛି ଚଉଷଠି ବଖରା । କାହିଁରେ ଝିଡ଼କ ଲଗିଛି ଦିଶେ
କେମନ୍ତ ତୋରା ॥ ଦିବ୍ୟ ବସ୍ତ୍ର ପାଟ ଗୁନ୍ଦୁଅ ସବଘରେ ଲଗିଛି । ହସ୍ତୀଶାଳ
ଘୋଡ଼ାଶାଳ ସେ ଭଲେ ଭଲେ -ହୋଇଛି ।୧୪। କେ କହିପାରେ ଭାଗ୍ୟ
ତାର ଅଛି ଯେତେକ ଧନ । ଏକମାତ୍ର ଚିନ୍ତା ତାହାର କୋଳେ ନାହିଁ
ନନ୍ଦନ ।୧୬। ଅଢ଼ାଇ ଶତେ ରାଣୀ ତାର ଖଟଥାନ୍ତି ନିକଟେ । ନସୁନା ସୁନ୍ଦରୀ
ବୋଲିଣ ପାଟରାଣୀ ସେ ଶ୍ରେଷ୍ଠ ॥ ତାହା କୋଳେ ସୁତ ନୋହିଲ ଧନେଶ୍ୱର
ରାଜାର । ଜନ୍ମ ନୋହିବାରୁ ବିରସ ହେଲା ସେହୁ ଅପାର ।୧୮। ନିତ
ପ୍ରତିଦିନ ରାଜା ସେ ବିପ୍ର ପାଦେ ଖଟଇ । ମଙ୍ଗଳା ମାତାଙ୍କ ଚରଣେ ମନ
ସର୍ବଦା ଥାଇ । ୧୯ । ବଡ଼ ଭାବନା କରିଥାଇ ପୁତ୍ର ନୋହିଲା ଜାତ । କି
କରିବ ବୋଲି ଭାଳଇ ପାଟରାଣୀ ଅଗତ ।୨୦। କହ କହ ମୋତେ ସଜନୀ
ମୁଁ କି ବୁଦ୍ଧି କରିବ । ଘାଗରା ନଦୀର ଗଣ୍ଡରେ ମୁଁ ଯେ ବୁଡ଼ି ମରିବ ।୨୧।
ପୁତ୍ର ବିନା ଏହି ଦେହକୁ ହିତକାରୀ ଅଟଇ । ଜନ୍ମ ଅଣ୍ଟକୁଡ଼ା ହୋଇଲି

ତାହାଙ୍କ ସୁଖ ପାଇ ॥ ଏତେ ଧନ ଦ୍ରବ୍ୟ ମୋହର ଆଉ କିସ ହୋଇବ ।
ମୋର ଅନ୍ତଃକାଳେ ପଶ୍ଚାତେ ପିଣ୍ଡଦାନ କେ ଦେବ ।୨୩। ନର୍କେ ପଡ଼ି-
ଥିଲେ ଉଦ୍ଧାର କେହୁ କରିବ ମୋତେ । କୁଳ ତ ବିନାଶ ହୋଇଲା ଏହା
ବିଚାର ଚିତ୍ତେ । ୨୪ । କାହା ଯୋଗୁଁ ଏଥି ରହିବ ମୋତେ କହ ସଜନୀ ।
ପୂର୍ଣ୍ଣଚନ୍ଦ୍ରା ମୋତେ ହୋଇଲା ଭାବ ଦିବାରଜନୀ ॥ ରାଜାଠାରୁ ଏହା ଶୁଣିଣ
ପାଟରାଣୀ କହଇ । ସେ ଦେବ ଅସୁର କର୍ମରେ ପୁତ୍ର ହୋଇଲା ନାହିଁ ।୨୬।
ଏଥିପାଇଁ କିମ୍ବା ଏ ପିଣ୍ଡ ପ୍ରାଣ ତ୍ୟାଗ କରିବ । ତୁମ୍ଭେ ନାଶଗଲେ କେମନ୍ତେ
ମୋର ଦିନ ସରିବ ।୨୭। ତୁମ୍ଭେ ଆମ୍ଭେ ଦୁହେଁ ମିଳିଣ ଯେବେ ତେଜିବା
ପ୍ରାଣ । କଥା ରହିଥିବ ସଂସାରେ ରାଜା ଗୃହ ଯୁଗେଣ । ୨୮ । ପୂର୍ବରେ
ଯେମନ୍ତେ ଥିଲେ ସେ ପୁତ୍ର ନୋହିଲା ଜାତ । ସେ ରୂପରେ ପ୍ରାଣ ହାରିଲେ
ମିଳି ଯୁବତୀକାନ୍ତ ॥ ଏ କଥା ବିଚାର କର ହେ ସ୍ୱାମୀ ମନେ ତୁମ୍ଭର । ଏହୁ
ମିଛମାୟା ଅଟଇ କେହୁ ନୋହେ କାହାର ॥ କେ କାହାର ପୁତ୍ର ବନ୍ଧୁ ତା
କେ କାହାର ଯେ ନାଥ । ଜୀବ ଗଲାବେଳେ ଏକା ତ କେହୁ କାହାର
ସାଥି । ୩୧। ଏଥକୁ ବିଚାର କର ହେ ଅହେ ମୋ ପ୍ରାଣନାଥ । ଆଉ କି
ଏ ଦେହ ପାଇବା ମର୍ତ୍ତ୍ୟେ ହୋଇବା ଜାତ ॥ ଯାହା ଭୋଗ କରିଥିବା ସେ
ଏହି କି ଜନ୍ମରେ । ଆଉ ଭୋଗ କାହୁଁ ପାଇବା ନିଜ ଦେହ ହଜିଲେ ॥
ଶତେ ଏକ ରାଣୀ ଅଛନ୍ତି ଯେବେ ନୋହିଲା ସୁତ । ଆଉ ଏକ କନ୍ୟା
ଲୋଡ଼ିଣ ବିଭା ହୁଅ ହେ କାନ୍ତ ॥ ତାହା ଶୁଣି ରାଜା ବୋଲଇ ନସୂନାର
ଅଗ୍ରତେ । ବୃଦ୍ଧକାଳ ମୋର ହୋଇଲା କନ୍ୟା କେ ଦେବ ମୋତେ ॥ ଏ
ବଚନ ଶୁଣି ବୋଲଇ ତହୁଁ ନସୂନା ରାଣୀ । ଖୁଲଣା ବୋଲିଣ ଅଛଇ
ମୋର ସାନ ଭଉଣୀ ।୩୨। ତାହାକୁ ବିଭା କରାଇବ ରାଜା ତୁମ୍ଭଙ୍କୁ ମୁହିଁ ।
ଏ ବଚନ ଶୁଣି ତାଙ୍କୁ ସେ ନୃପମଣି କହଇ ॥ ସେ କେମନ୍ତେ ବିଭା କରିବେ
ମୋତେ ପ୍ରତେ ନ ଲାଗେ । ତୋର ମନକୁ କି ଆସୁଛି ବିଧାତାର ସଂଯୋଗେ ।
କର୍ମରେ ଥିଲେ ତ ହୋଇବ କେବେ ନୁହଇ ଆନ । ଏମନ୍ତେ କହନ୍ତେ
ନୃପତି ରାଣୀର ସନ୍ନିଧାନ । ୩୯ । ନସୂନା ସୁନ୍ଦରୀ ବୋଇଲା ସ୍ୱାମୀ ଶୁଣ

ମୋ ବାଣୀ । ମୋ ଭାଇ ବିଦ୍ୟାଧରଠାକୁ ତୁମ୍ଭେ ଯାଅ ଏକ୍ଷଣି ।୪୦। ତୁମ୍ଭେ ଯାଇ ତାହା ସଙ୍ଗରେ ପଚିଶାର ଖେଳିବ । ଖେଳରେ ମୋ ଭାଇ ହାରିଲେ ଖୁଲଣାକୁ ମାଗିବ ॥ ଏ ବଚନ ଶୁଣି ନୃପତି ବଡ଼ ହରଷ ହେଲା । ଯିବ ବୋଲି କରି ରାଣୀଙ୍କ ସେ ମେଲାଣି ମାଗିଲା ।୪୨। ହରଷ ମନରେ ନୟନା ତାଙ୍କୁ ଦେଲା ମେଲାଣି । ସୁନ୍ଦ ସୁନ୍ଦ ସ୍ତନ ବନ୍ଧରେ ଦୀନଭିକାରୀ ଭଣି ॥

---

## ପଞ୍ଚମ ଛାନ୍ଦ

ରାଗ—ରାମକେରୀ

ମନ ଦେଇ ଶୁଣ ସୁଜନେ ଏଥୁ ଅନନ୍ତେ ରସ । ଧନେଶ୍ୱର ରାଜା ମନରେ ବଡ଼ ହୋଇ ହରଷ ॥ ପଣ୍ଡିତଙ୍କୁ ପାଶେ ବସାଇ ବୋଇଲା ଧୀରେ ବାଣୀ । ଶୁଭଲଗ୍ନ ଗୋଟି ଯାତ୍ରାର ଖଡ଼ୀ ପକାଅ ପୁଣି ।୨। ଆମ୍ଭ ମନରେ ଯେ ଯାତ୍ରାର ସେ କି ଭଲ ହୋଇବ । କାର୍ଯ୍ୟ ଯେବେ ମୋର ନୋହିବ ଯାତ୍ରାରେ କହିବ । ୩ । ଏହା ଶୁଣିକରି ପଣ୍ଡିତେ ବସି କୋଷ୍ଠି କାଟିଲେ । ରାମ ନାମ ଆଦ୍ୟ ଅକ୍ଷର ମଧ୍ୟଭାଗେ ଲେଖିଲେ ॥ ଅଷ୍ଟଦିଗେ ଅଷ୍ଟ ଅକ୍ଷର ଲେଖି ରଖିଲେ ଖଡ଼ୀ । ନୃପତି ଆଗରେ ପଣ୍ଡିତ କହଇ କରଯୋଡ଼ି । ୫। ଆଜ୍ଞା ଦେଲେ ଖଡ଼ୀ ଦେବ କେ ବିଦ୍ୟା ନ ଜାଣେ ଯେହୁ । ଶୁଣି ନୃପମଣି ବାଳକ ଗୋଟି ଅଣାଇ ତହୁଁ ।୬। ତାହା ହସ୍ତେ ଖଡ଼ୀ ଦିଅନ୍ତେ ସେ ଯେ ରଖିଣ ଦେଲା । ନୃପତି କାର୍ଯ୍ୟ ସିଦ୍ଧି ହେବା ଲକ୍ଷଣରେ ପଡ଼ିଲା ।୭। ପଣ୍ଡିତ ବୋଇଲା ଯେ ଦେବ କାର୍ଯ୍ୟ ହେବ ସ୍ଥିର । ନିଶ୍ଚୟ ବାର ତତକ୍ଷଣେ ରାଜା ହେଲେ ବାହାର ॥ ପ୍ରଖ୍ୟାତ ଦେଶରେ ମିଳିଲେ ବିଦ୍ୟାଧର ମନ୍ଦିରେ । ଦେଖି ବିଦ୍ୟାଧର ହରଷ ହେଲା ବଡ଼ ମନରେ । ୯ । ଅତି ଯତନରେ ବସାଇ ପୂଜାବିଧି ସେ କଲା । ଦିବ୍ୟ ସାମଗ୍ରୀମାନ ଅଣାଇ ତାଙ୍କ ନିକଟେ ଦେଲା ।୧୦। ଭୁଞ୍ଜିକରି ରାଜା ହରଷେ ତାମ୍ବୁଳ କଲେ ପାନ । ପଲ୍ୟ-ଙ୍କରେ ବସିଣ ଦେଖିଲେ କୌତୁକମାନ ।୧୧। ଦିନା ଦଶ ବାର ପନ୍ଦର ରାଜା ତହିଁ ରହିଲେ । ଏକ ଦିନ ବିଦ୍ୟାଧରକୁ ଧନେଶ୍ୱର କହିଲେ । ୧୨ ।

ଅଏ ଅସ ବିଦ୍ୟାଧର ହେ ଚଉପାର ଖେଳିବା । ଲୋଟଣୀ ପାଶୁଅ ଅଣିଛି
କାଏ ପାଉଛି ଶୋଭା । ୧୩ । ଏଥିରେ ଅମ୍ଭେ ପଣ କରି ବେଗେ ଖେଳି
ଖେଳିବା । ତୁମ୍ଭେ ଯେବେ ଏଥେଁ ହାରିବ କାଏ ଛାଡ଼ିବ ଅବା । ୧୪ ।
ମୁହିଁ ଯେବେ କାଣ୍ଟେ ହାରିବି ଦେବି ସାତ ବୋଇତ । ଏ କଥା ଅନ୍ୟଥା
ନୁହଇ ସାତବାର ଏ ସତ୍ୟ । ୧୫ । ତୁମ୍ଭେ ଯେବେ କାଣ୍ଟେ ହାରିବ
ବେଗେ ନାସ୍ତୁମ କର । ତୁମ୍ଭ ଭଉଣୀ ଶୀଳଣୀଙ୍କୁ ବିଭାଦେବ ମୋ କର ॥
ଏ କଥା ଶୁଣି ବିଦ୍ୟାଧର ବେଗେ କଲା ସମ୍ମତ । ବସି ଚଉପାର ଖେଳିଲେ
ଯୁକ୍ତି ହେଲା ବହୁତ । ୧୬ । କେହୁ ତାହା ମୁଖେ କହିବ ଯେତେ ଖେଳ
ଲାଗିଛି । କି ଅବା ଯୁଧିଷ୍ଠି ସଙ୍ଗରେ ଦୁର୍ଯୋଧନ ଖେଳୁଛି । ୧ । ସାତବାଙ୍କ
ଯାଏ ଜିଣିଲା ବଣିଅ ଧନେଶର । ତା ସଙ୍ଗେ ଜିଣି ନ ପାରିଲା ପଣ୍ଡୁଧିମ
କୁମର ।୧୯। ହରଷ ହୋଇଣ ଚଳିଲା ବିଦ୍ୟାଧର ପୁରକୁ । ସକଳ ବୃତ୍ତାନ୍ତ
ବୁଝାଇ କହିଲା ସେ ମାତାଙ୍କୁ ।୨୦। ଶଶିକଳା ନାମ ବୋଲିଣ ମାତା ନାମ
ତାହାର । ବୋଇଲା ଏହା କାମ୍ପା କଲୁ ଅହା ତୁ ବିଦ୍ୟାଧର । ୨୧ । ଏଇ
ଭଉଣୀ ଟିଏ ତୋହର ବିଭା ହୋଇଛି ପଛ । ଆଜ ଗୋଟି କେଣ୍ଡେ ଦେବୁ
ରେ କହ ମୋ ଗଳାମାଳା ॥ ଶୁଣି ବିଦ୍ୟାଧର ବୋଲଇ ମୋର ନୋହେ
ଆସୂତି । ଦଇବ ଯାହା ସେ ଲେଖିଛି ସେ କି ହେବ ବ୍ୟର୍ଥ ।୨୩। ଏମନ୍ତ
ବିଚାରି ମନରେ ବିଭାଘର ସଜିଲେ । ବନ୍ଧୁ ବାନ୍ଧବ ତା ଯେତେକ ନିମନ୍ତ୍ରଣ
ସେ କଲେ ।୨୪। ବିଦ୍ୟାଧର ମାମୁ ଅଇଲା ଧୂମାନ୍ତ ଦେଶ ରାଜା । ମଧୁକର
ବୋଲେ ତାହାର ବାଜେ ତେଲିଙ୍ଗୀ ବାଜା । ୨୫ । ମହା କଉତୁକ ଆନନ୍ଦ
ହେଣେ ଲାଗିଅଛଇ । ବରବେଶ ହୋଇ ବେଦୀରେ ରାଜା ବସିଲା ଯାଇଁ ॥
ହୁଳହୁଳି ଦେଉଅଛନ୍ତି ମିଳି ଯୁବତିମାନ । ବାଜେ ଢୋଲ ଦମା ଝମକ
ଅବର ବତପନ । ୨୭ । ନଟକାସ୍ତି ନୃତ୍ୟ କରନ୍ତି ମନେ ହୋଇ ହରଷ ।
ଏଥୁଅନ୍ତେ ସହଚରୀ ଯେ କନ୍ୟା କରନ୍ତି ବେଶ । ୨୮ । ଅଭ୍ୟଙ୍ଗେ ଜୁଡ଼ା
ବାନ୍ଧିଲେ ଦେଲେ ସିନ୍ଦୁର ବିନ୍ଦୁ । ନୟନେ ଅଞ୍ଜନ ରଞ୍ଜିଲେ ଜାଣେ
କୋଟିଏ ଇନ୍ଦୁ ।୨୯। ରତ୍ନଚୁଡ଼ୀ ଦୁଇ ହସ୍ତରେ ଦିଶେ ଅତ୍ୟନ୍ତ ଶୋଭା

ବେନ୍ଦୀକରେ ଦେଲେ କଙ୍କଣ ମୁଦ୍ରିମାନଙ୍କୁ ଲୋଭା ।୩୦। କଣ୍ଠେ ମଧ୍ୟେ କାପ
ଖଞ୍ଜିଲେ କଣ୍ଠେ ଦେଲେ ଦୋସର । ତହିଁ ମଧ୍ୟେ ସ୍ୱର୍ଣ୍ଣପଦକ ଦିଶେ ଅତି
ମାଧୁରୀ ।୩୧। କଟିତଟେ ଦେଲେ କିଙ୍କିଣୀ ମୁଦ୍ରି ମନ ମୋହିଲା । ସୁଝୀନ
ଶାଢ଼ୀ ପିନ୍ଧାଇଲେ କିବା ଚନ୍ଦ୍ର ଉଇଁଲା । ୩୨ । ପାଦରେ ନୂପୁର ଯୋଡ଼ିଏ
ଝୁଣୁଝୁଣୁ ବାଜଇ । କି ଜାଣି ସିନ୍ଧୁର ଦୁହିତା ଜାତ ହୋଇ ଅଛଇ ॥
ଅରୁଣଅଧରୀ ଅଟେ ସେ ରୂପ କନକ ଗୋରୀ । ସ୍ୱର୍ଗର ନାୟିକାମାନେ ଯେ
ତାକୁ ନୁହନ୍ତି ସରି । ୩୪ । ହସି ଯେତେବେଳେ ଚାହିଁବ ଯୋଗୀ ହେଲେ
ଟଳଇ । ସରୁବେଳେ ତାହା ମୁଖରୁ କିବା ସୁଧା ଗଳଇ ।୩୫। ଲହୁ ବସିଲେ
ତା ଶୋଭାକୁ ପୋଥି ହୋଇବ ଖଣ୍ଡେ । କର୍ଣ୍ଣେ ଶୁଣିବାକୁ ଏମନ୍ତ ଯେବେ
ଦେଖିବ ଦଣ୍ଡେ । ୩୬ । ନାନା ବିଷୟମାନ କଲେ ମନୁ ପାଶୋର ଯିବ ।
ହରି ବପୁ ଆସି ହୃଦରେ ବାସ କରି ରହିବ ॥ ଯୋଗିଜନ ମନମୋହିନୀ ଏ
କି ଜନକସୁତା । କନକ ବେଦିକି ଆଣିଲେ ମନରେ ହରଷିତା ।୩୭। ବେଦ
ଉଚ୍ଚାରଣ କଲେ ସେ ବ୍ରାହ୍ମଣ ଗୋଟା ଚାରି । ହୁଳହୁଳି ଦେଉଅଛନ୍ତି ମିଳି
ସେ ନଗ୍ର ନାରୀ ।୩୮। ଓଷା କଲ୍ପ ନାରୀ ଯେବେ ସେ ଏ ଚରିତ ଶୁଣିବ ।
ମଙ୍ଗଳା ମାତାଙ୍କୁ ସୁମରି ହୁଳହୁଳି ସେ ଦେବ । ୩୯ । ବେଦବାକ୍ୟ ପଢି
ବ୍ରାହ୍ମଣେ ହସ୍ତଗଣ୍ଠି ପକାଇ । ଯେ ବିଧି ବିଧାନ ମତରେ ଯଉତୁକ ସେ
ଦେଇ ॥ ଅର୍ଘ୍ୟ ବନ୍ଦାପନା କରିଣ ବର କନ୍ୟାକୁ ନେଲେ । ବନ୍ଧୁମାନଙ୍କୁ
ବସାଇଣ ଦିବ୍ୟ ଭୋଜନ ଦେଲେ ।୪୨। ଗଲା ଦିନ ଦଶ ପନ୍ଦର ଏଥକୁ
ଆନ ରୀତ । ଯେ ଯାହାକୁ ଦେଲେ ମେଲାଣି ବିଦ୍ୟାଧର ନୃପତି । ୪୩ ।
ବନ୍ଧୁବର୍ଗମାନେ ସମସ୍ତେ ଶ୍ରଦ୍ଧା ହୋଇଣ ଗଲେ । ପୁରକୁ ଯିବି ବୋଲି କରି
ଧନେଶ୍ୱର କହିଲେ ।୪୪। ବିଦ୍ୟାଧର ଦେଲା ମେଲାଣି ତୁମ୍ଭେ ପୁରକୁ ଯିବ ।
ଖୁଲ୍ଲଣା ଦୋଷ ଅରଜିଲେ ତୁମ୍ଭେ କ୍ଷମା କରିବ । ୪୫ । ଦୁଇ ଭଉଣୀ ମୁଁ
ତୁମ୍ଭଙ୍କୁ ବିଭା କରାଇ ଦେଲି । ଆଜଦିନଠାରୁ ଶରଣ ତୁମ୍ଭଠାରେ ପଶିଲି ॥
ଶୁଣି ଧନେଶ୍ୱର ହରଷ କନ୍ୟା ଘେନି ସଙ୍ଗରେ । ପ୍ରବେଶ ହୋଇଲା ଯାଇଣ
ସେହିଦିନ ରାଜ୍ୟର ।୪୬। ଖୁଲ୍ଲଣା ସଙ୍ଗରେ ବିହାର ରାଜା କରଇ ନିତି ।

ଆଜ ରାଣୀ ଯେତେ ଅଛନ୍ତି ନ ଯାଏ କାହା କଥା । ୪୮ । ପାଟରାଣୀ ତାର ନସୂନା ରାଜା ତାଙ୍କୁ ପୂଛିଲା । ଏକାନ୍ତେ ଖୁଲଣା ସଙ୍ଗରେ ରାଜା ଦିନ ବଞ୍ଚିଲା ।୪୯। ମଙ୍ଗଳାଙ୍କ ପଦ୍ମପାଦରେ ରଖିଥାଇ ସେ ଧ୍ୟାନ । ମଙ୍ଗଳା ମାତାଙ୍କ ବାହୁନେ ନ ଜାଣଇ ସେ ଅନ । ଭଣଇ ଧୀବର ଉକାସ୍ତ ମୋତେ ରଖ ମଙ୍ଗଳା । ନ ଅସିଲି ପଦମାନଙ୍କୁ କହ କର ମୋ ଗଳା । ୫୧ ।

---

## ଷଷ୍ଠ ଛାନ୍ଦ

ରାଗ—ଗୁଣ୍ଠ ବୋଲିରେ ଗାଇବ

ଏଥି ଅନନ୍ତରେ ଶୁଣ ସୂଜନେ । ମଙ୍ଗଳମାତାଙ୍କ କଥା ଯତନେ ॥ ଧନେଶ୍ୱର ଥାଇ ଅପଣା ପୁର । ଖୁଲଣା ସଙ୍ଗରେ କରେ ବେହାର ॥ ଏକଦିନେ ରାଜା ପ୍ରଭାତୁ ଉଠି । ହାଡ଼ି ଉପରେ ଯେ ପଡ଼ିଲା ଦୃଷ୍ଟି । ୩ । ବୋଇଲା ଆଜ ଅଛି କେଉଁ ଦୁଃଖ । ପ୍ରଭାତୁ ଦେଖିଲି ହାଡ଼ିର ମୁଖ । ୪ । ତାହା ଶୁଣି ହାଡ଼ି ହେଲା ପ୍ରକୋପ । ତୋତେ ଦେଖିଲାରୁ ଲାଗିଲା ପାପ ॥ ତୁମ୍ଭେ ବଡ଼ଲୋକ ହେଲେ କି ହେବ । ମୋତେ ତ ଆଜ ଅନ୍ନ ନ ମିଳିବ ॥ ତୁ ଯେ ଅପୁତ୍ରିକ ଅଟୁ ଜଗତେ । ତିନିକୋଟି ପାପ ଲାଗିଲା ମୋତେ । ୭ । ମୁଁ ଯେବେ ବଡ଼ଲୋକ ହୋଇଥାନ୍ତି । ଶତେଗୋଟି ଧେନୁ ଦାନ ଦିଅନ୍ତି । ୮ । ତେବେ ସେ ଖଣ୍ଡିବ ହୃଦର ପାପ । ଏହା ଶୁଣି ରାଜା ମନେ ସନ୍ତାପ । ୯ । ବଚୁରିଲେ ଏ କଥା ସତବୋଲି । ଧନବନ୍ତ ପଣେ ତାଙ୍କୁ ବୋଇଲି ।୧୦। ମୁହିଁ ତ ଅପିଣ ହୋଇଲି ବୁଢ଼ା । ତେବେ ନ ଗଲା ଜନ୍ମ ଅଣ୍ଟୁ କ୍ରିଡ଼ା ॥ ଅଦୋଷେ ତାହାଙ୍କୁ ଦେଲି ମୁଁ ଦୋଷ । ପୋଡ଼ଯାଉ ମୋର ହେବା ନରେଶ ॥ ହାଡ଼ିଗୋଠା ଯେବେ ଏହା କହିଲା । ଏଠାରେ କେଉଁ ପ୍ରୟୋଜନ ଭଲା । ୧୩ । ଆଜ ତ ମୁହିଁ ଯିବି ଦେଶାନ୍ତର । କହିଲା ଯାଇଁ ଖୁଲଣା ଆଗର ।୧୪। ବୋଇଲା ଏକାନ୍ତେ ଥାଅ ଗୋ ତୁହ । ଦେଶାନ୍ତରେ ନଷ୍ଟେ ଯିବଇଁ ମୁହିଁ ।୧୫। ଶୁଣି ଖୁଲଣାର ଉଡ଼େ ସାହାସ । କାହିଁ-ପାଇଁ ମନେ ଏଡ଼କ ରୋଷ ॥ କେଉଁକଥା ଉଣା ହେଲା ତୁମ୍ଭଙ୍କୁ । କାହିଁକି

ତୁମ୍ଭେ ଯିବ ପ୍ରବାସକୁ । ୧୭ । ଧନେଶ୍ୱର ବୋଲେ ଶୁଣ ରେ ସହି । ଆଜ ପ୍ରଭାତରୁ ଉଠିଲ ମୁହିଁ ।୧୮। ସିଂହଦ୍ୱାରେ ଦେଖିଣ ବାଞ୍ଝ ମୁଖ । ମୁଁ ବୋଇଲି ଆଜ ପଡ଼ିବ ଦୁଃଖ । ୧୯ । ସେ ବୋଇଲା ମୁହିଁ କ କର୍ମ କଲି । ପ୍ରଭୁଙ୍କୁ ଅପୁତ୍ରି ମୁଖ ଦେଖିଲି । ୨୦ । ଧେନୁ ଶତଗୋଟା ଯେବେ ଦୁଅନ୍ତା । ବିପ୍ରଙ୍କୁ ଦେଲେ ପାପ କ୍ଷୟ ଯାନ୍ତା ।୨୧। ଏହା ଶୁଣି ପ୍ରାଣ ରଖିବା ଧିକ । ମଲେ ଭଲ ଜୀଇଁଥିଲେ କଳଙ୍କ ।୨୨। ଏହା ଶୁଣି ବୋଲେ ଖୁଲଣା ନାରୀ । ହେ ସ୍ୱାମୀ ଗର୍ଭ ହୋଇଛି ମୋହର ॥ କିଛି ଚିନ୍ତା ତୁମ୍ଭେ ନ କର ମନେ । ପୁତ୍ର ଜାତ ହେବ ଅଳପ ଦିନେ ॥ ନୃପତି ବୋଇଲା ହେଲା କ ବାଇ । ଆଉ ଏ ରାଜ୍ୟେ ନ ରହିବ ମୁହିଁ । ୨୩ । ଯାଉଛି ଆନ ଗ୍ରାମରେ ରହିବ । ପୁତ୍ର ଜାତ ହେଲେ ଏଥିଁ ଆସିବ ॥ ଖୁଲଣା ବୋଲେ ଶୁଣ ପ୍ରାଣନାଥ । ତୁମ୍ଭେ ଗଲେ ମୁହିଁ ରହିବ ଏଥ ॥ କାହା ଦେଖି ମୁଁ ଯେ ବଞ୍ଚିବ ଦିନ । କହିବେ ମୋତେ ନାନା ସ୍ଥାନମାନ ॥ କେମନ୍ତେ ସହିବ ତାହାଙ୍କ ଭାଷା । ହେ ନାଥ ମୋର ବୁଡ଼ାଇଲ ଆଶା ।୨୯। ଧନେଶ୍ୱର ବୋଲେ ଶୁଣ ରେ ସହି । ମୋ ସଙ୍ଗେ ଯିବା ଉଚିତ ନୁହଇ । ୩୦ । ଜଗତେ ଶୁଣି କ ବୋଲି କହିବେ । ପରଜାମାନେ ପଛେ ଗାଳି ଦେବେ । ୩୧ । ବୋଲିବେ ଶତ ବଣୀ ଛାଡ଼ି-କରି । ଦେଶିଗଲେ ସେ ଖୁଲଣା ସୁନ୍ଦରୀ । ୩୨ । ତୋର ଅପବାଦ ହୋଇବ ବହୁତ । ଏହା ତୁ ବିଚାର ନ କର ଚିତ୍ତ ।୩୩। ମଙ୍ଗଳାପାଦ ଚିତ୍ତେ ଧ୍ୟାୟି କରି । ଦେଶି ଗଲେ ଯେ ଖୁଲଣା ସୁନ୍ଦରୀ । ୩୪ । ମନ୍ଦିରେ ସୁଖେ ଥାଅ ରେ ସୁନ୍ଦରୀ । ଧ୍ୟାନ ଲଗାଇ ଜାତ୍ୟେ ହରହରି ॥ ମୁହିଁ କେବେହେଁ ନ ରହିବି ଏଥିଁ । ଏମନ୍ତ କହି ଖୁଲଣା ଅଛନ୍ତି ॥ ପୁଣି ବୋଇଲା ଶୁଣ ପ୍ରାଣସହି । ଆହୁର କଥାଏ କହିବ ମୁହିଁ । ୩୬ । ଯେବେ ତୋର ପୁତ୍ର ହେବ ଜନମ । ଶିଶୁଧର ବୋଲି ଦେବୁ ତା ନାମ । ୩୭ । ନୋହିଲେ ଜନ୍ମିବ ଯେବେ ଦୁହିତା । ବହିବୁ ତାର ନାମ ଚନ୍ଦ୍ରକାନ୍ତ । ୩୮ । ଆହୁର କଥାଏ ଶୁଣ ବାଇଲି । ପୁତ୍ର ଜନ୍ମ ହେଲେ ପୁଣି ଆସିବା॥ ଦୁହିତା ଜନମ ଶୁଣିବ ଯେବେ । ପ୍ରବାସରେ ଥାଇ ମରିବ ତେବେ । ୪୦ । ଲକ୍ଷେ ଦୁହିତାରେ ନ ରହିବ

ଶେଷ । ଗୋଟିକ ସୁତରେ କୋଟିଏ ଯଶ । ୪୧ । ଏହା ବାନ୍ଧିବୁ ତୁ ଘେନ ସୁଚିତେ ହି । ରାଜା କହିଲ ଖୁଲଣା ଅଗ୍ରତେ । ୪୨ । ନସୂନା ସୁନ୍ଦରୀ ପାଶକୁ ଯାଇ । ସମର୍ପେ ଖୁଲଣା ହସ୍ତକୁ ନେଇ । ୪୩ । ଏବେ ଖୁଲଣା ଲଗିଲାକ ତୋତେ । ଯେମନ୍ତେ ଦୟା ରଖିଥାଉ ମୋତେ ॥ ସେପରି ଏବେ ଦୟା ରଖ ତାରେ । ଏମନ୍ତ କହିଣ ରାଣୀ ଅଗ୍ରରେ । ୪୫ । ମନୋହର ବୋଲି ଏକ ବୋଇତ । ତକ୍ଷଣେ ସଜ କଲା ନରନାଥ ॥ ଅନେକ ଦ୍ରବ୍ୟ ତା ଭିତରେ ଭରି । ଶୁଣ୍ଠି ପିପ୍‌ଲୀ ଯେ ପାନମଞ୍ଜୁସ ।୪୭। ଗଞ୍ଜାଇ କର୍ପୂର କସ୍ତୁରୀ ଝୁଣା । ଜାଇଫଳ ବଡ଼ଜୀର ଠାଙ୍ଗଣା । ୪୮ । ହିଙ୍ଗୁ ସଉପ ଲବଙ୍ଗ କୁଆଁଣୀ । ଗୁଜୁରାଟି ଅଳାଇଚକୁ ଘେନ ।୪୯। ନୀଳବଡ଼ି ହରିତାଳ ହିଙ୍ଗୁଳ । ମୁଦାର ଶଙ୍ଖ ପୁଣି ମନଃଶୀଳ । ୫୦ । ମେଥି ରସୁଣ ଯେ ଜାଇମରିଚ । କଳାଲୁଣ ଲୋଧ୍ର ଭଲିଆ ବଚ । ୫୧ । ଖଇର ଅପୁ ମେଣ୍ଢାଶିଙ୍ଗ ପାରି । ନାଗେଶ୍ୱର ତେଜପତ୍ର ମଞ୍ଜୁରୀ । ୫୨ । ଅମ୍ବରକୁ ଆଦି ଯେତେକ ଦ୍ରବ୍ୟ । ବୋଇତ ଭିତରେ ରଖିଲେ ସବ ॥. ଶୁଭ ଅନୁକୂଳ ମନେ ବିଚାରି । ସମସ୍ତଙ୍କୁ ପୁଣି କହେ ଡାଆରି । ୫୪ । ନିଜ ମନ୍ଦିରୁ ସେ ବାହାର ହେଲା । ଜଗନ୍ନାଥଙ୍କୁ ସୁମରଣା କଲା ॥ ଜଣ ଆଠଦଶ ସଙ୍ଗରେ ନେଇ । ବୋଇତ ଉପରେ ବସିଲା ଯାଇଁ ॥ ବୋଇଲା ଅହେ ଜଗନ୍ନାଥ ରଖ । ପଥରେ ଯେବେ ପଞ୍ଚୁ-ବଟ ଦୁଃଖ । ୫୭ । ଏମନ୍ତ ପ୍ରକାରେ କହନ୍ତେ ସେହି । ମଙ୍ଗଳା ଡ଼ାକଲେ ଶୂନ୍ୟରେ ଥାଇ ।୫୮। କରେ ଧନେଶ୍ୱର ବାତୁଳ ହେଲୁ । ମୋତେ ଛାଡ଼ି ତ ଆନକୁ ଡ଼ାକିଲୁ ।୫୯। ଦେଖିବା ତୋତେ ରଖିବେ କେମନ୍ତେ । ପଥରେ ବିପତ୍ତି ପଡ଼ିବ ଯେତେ ।୬୦। ସେ କାଳିଆ ଦଉ ଦେଉଛନ୍ତି ବସି । ଭୋଗ ଖାଉଥାଇ ହୋଇଣ ଖୁସି । ୬୧ । କର ଚରଣ ଯେ ନାହିଁ ତାହାର । ସେ କିପରି ଦୁଃଖ ପେଡ଼ିବେ ତୋର ॥ କେତେ କେତେ ଲୋକ ତା ନାମ ଗାଇ । [illegible]ଟି ଭିତରେଣ ପଶିଲେ ଯାଇ ॥ ସେମାନଙ୍କୁ ଯେ ରଖି ନ ପାରିଲା । ଦେଉଳେ ଭଉଣୀ ସଙ୍ଗେ ରହିଲା ॥ ଅତି କଷ୍ଟରେ ସେ ଦିଅଇ ବର । ତୁ କମା ତାକୁ ଡ଼ାକୁ ଧନେଶ୍ୱର ॥ ଏମନ୍ତପ୍ରକାରେ ଶୂନ୍ୟରେ କହି । ଅନ୍ତରହୋଇଲେ ମଙ୍ଗଳା

ମାୟା ॥ ଧନେଶ୍ୱର ଶୁଣି କାତର ହେଲା । ମାୟାବଳେ ସେ ଜାଣି ନ ପାରିଲା ॥
ଚଳିଲା ତହୁଁ ହରଷ ମନର । ପ୍ରବେଶ ଯାଇଁ ଧୂମାନ୍ତ ନଗର ॥ ଅଙ୍ଗ ବଙ୍ଗ
ଆଦି କଳିଙ୍ଗ ଦେଶ । କାହିଁ ନ ଶୁଦ୍ଧଣ ଚଳେ ନରେଶ ॥ ମଞ୍ଜିକା ବେଣୀ
ଛାଡ଼ ନଗ୍ରପୁର । ଯାଇଁ ମିଳିଲା ବାରୁପା ଦେଶର ।୭୦। ମଙ୍ଗଳା ତହିଁ ମାୟା
ଦେଖାଇଲେ । ଦିବ୍ୟ କନ୍ୟାରୂପ ଗୋଟିଏ ଧଇଲେ ॥ ପଦ୍ମ ଫୁଲ ପରେ ବସିଲେ
ଯାଇଁ । ଦେଖି ଧନେଶ୍ୱର ଚକିତ ହୋଇ ।୭୨। ବାତୁରେ ଏ ତ ବିପରୀତ
ହେଲା । ସମୁଦ୍ରକୁ ପଦ୍ମ କାହୁଁ ଆଇଲା ॥ ତହିଁ କି କନ୍ୟା ଏ ଆଇଲା କାହୁଁ ।
ଶବ୍ଦ ଅଛିର ଶୋଭା ଚୁହୁଁ ଚୁହୁଁ ।୭୪। ଏମନ୍ତ ବାଣୁର ମନ ଉଦ୍‌ବେଗେ ।
ବୋଇତ ଉପରୁ ଓହ୍ଲାଇ ବେଗେ ।୭୫। ଯାଇଁ ମିଳିଲା ରାଜାର ନଗରେ ।
ସୁଦର୍ଶନ ରାଜା ଅଛି ଯହିଁରେ । ୭୬ । ତହିଁ ଧନେଶ୍ୱର ମିଳିଲା ଯାଇଁ । ରାଜା
ପାଦରେ ପ୍ରଣମିତ ହୋଇ । ୧୭ । କରଯୋଡ଼ି ବୋଲେ ରାଜା ଅଗ୍ରତେ ।
ବିପରୀତ କଥା ଦେଖିଲି ଏଥେଁ ॥ ସମୁଦ୍ରରେ ପଦ୍ମ ଫୁଲ ଫୁଟିଛି । ତହିଁରେ
ଏକ କନ୍ୟା ବସିଅଛି । ୭୯ । ବାରୁଣି-ଦୁହିତା ସଦୃଶେ ଶୋଭା । ମୁନି
ମନୋହାରୀ ଜଗତ ଲୋଭା ।୮୦। କି କହିବ ମୁହିଁ ତା ରୂପହାଣି । ହରି
ଘରଣୀ ପ୍ରାୟେ ଶୋଭା ଦିଶି ।୮୨। ଶୁଣିକରି ରାଜା ହରଷ ହେଲା । ଆମ୍ଭଙ୍କୁ
ନେଇ ଦେଖାଅ ବୋଇଲା ॥ ଧନେଶ୍ୱର ରାଜା ଚଳିଲା ଆଗେ । ରାଜା
ବିଜେ କଲେ ତା ପଛଭାଗେ ॥ ସମୁଦ୍ରତୀରେ ପ୍ରବେଶ ହୋଇଲେ । ଧନେଶ୍ୱର
ମୁଖ ଚୁହିଁ ବୋଇଲେ ॥ କାହିଁ ଗଲା କନ୍ୟା ଏହି ଠାବରୁ । ଶୁଣିଣ ସାଧୁ
ନ ସ୍ଫୁରେ ମୁଖରୁ ॥ ଚକିତ ହୋଇଣ କହେ ବଚନ । କନ୍ୟାକୁ ଦେଖିଥିଲି
ଏହି ସ୍ଥାନ । ତୁମ୍ଭର ଦେଖନ୍ତେ ଗଲାଣି କେଣେ । ଶୁଣିକରି ରାଜା ପ୍ରକୋପ
ମନେ ॥ ବୋଇଲେ ଆମ୍ଭଙ୍କୁ ଠାଣ୍ଡୁଲି କଲୁ । ମିଛ କଥା କହି ଭଣ୍ଡି ଆଣିଲୁ ॥
ମନ୍ତ୍ରୀଙ୍କି ବୋଇଲା ଏହାକୁ ନିଅ । ବନ୍ଦଶାଳ ଘରେ ବନ୍ଦ ରଖାଅ ॥ ଯେତେ
ଦ୍ରବ୍ୟ ଅଛି ବୋଇତେ ତାର । ନେଇ ଯାଅ ଆମ୍ଭ ଭଣ୍ଡାର ଘର । ୯୦ । ଏ
ବଚନ ଶୁଣି ମନ୍ତ୍ରୀ ଚଳିଲା । ଧନେଶ୍ୱରକୁ ସଙ୍ଗତରେ ନେଲା ।୯୧। ତାହା
ସଙ୍ଗେ ଥିଲେ ଅଠର ଜଣ । ବନ୍ଦଘରେ ନେଇ ରଖିଲେ ପୁଣ । ୯୨ ।

ଧନେଶ୍ୱର ରାଜା ବନ୍ଦୀରେ ଚନ୍ତେ । ଖେଳଣା ମନା କରୁଥିଲୁ ମୋତେ ।୯୩।
ତା ବୋଲ ନ ମାନି ଅଇଲି ଛାଡ଼ି । ଏବେ ତ ରହିଲି ବନ୍ଧରେ ପଡ଼ି ।୯୪।
ଆଜ କି ସତେ ମୁଁ ଘରକୁ ଯିବି । ତୁମ୍ଭ ଦୁହିଁଙ୍କି ନୟନେ ଦେଖିବି ।୯୫।
ଏମନ୍ତେ ବାବୁ ମନରେ ଗୁଣି । ଭାଷା ଗୋଟି ଏକ ଲେଖିଲେ ପୁଣି ॥ ଅତି
ପ୍ରେମରେ ନୟନା ପାଶକୁ । ଲେଖିଲେ ହେଲା ନ କରିବୁ ତାକୁ । ୯୬ ।
ସେ ତୋର ଅଟଇ ସାନ ଭଉଣୀ । ଦୟା ରଖିଥିବୁ ତାଠାରେ ପୁଣି ।୯୭।
ଅଣଆଦର କେବେହେଁ ନ କରିବୁ । ମୋ ପରି ସ୍ନେହ ତାଠାରେ ରଖିବୁ ।୯୮।
ମୁହିଁ ତ ଅଛି ବିର୍ପା ଦେଶରେ । ରଜା ରଖିଲା ମୋତେ ବନ୍ଧଘରେ ।୯୯।
ଆଜ କି ସତେ ଏଥୁଁ ମୁକୁଳିବି । ତୁମ୍ଭ ଦୁହିଁଙ୍କି ନୟନେ ଦେଖିବି । ୧୦୦ ।
ବିଦେଶକୁ ଯେ ମୁହିଁ ଥିଲି ଆସି । ଏଠାରେ ମୋତେ ଏତେ ଦଶା ଅଛି ॥
ପୋଡ଼ଯାଉ ମୋର କରମ କଥା । ତୁମ୍ଭେ ନ କରିବ ମନରେ ଚିନ୍ତା ।୧୦୨।
ବିଧାତା ଯେବେ ପ୍ରାଣ ରଖିଥିବ । ଅବଶ୍ୟ ତୁମ୍ଭ ସଙ୍ଗେ ଦେଖା ହେବ ॥
ଏମନ୍ତ ପ୍ରକାରେ ଚିଠାଉ ଲେଖି । କାକପକ୍ଷୀକି ସେ ଗୋଟାଏ ଡାକି ॥
ବୋଇଲେରେ କାକ ଶୁଣ ମୋ ବାଣୀ । ତୁ ତ ପକ୍ଷୀକୁ କିଛି ନ
ଜାଣି । ୧୦୬ । ମୁଁ ଯାହା କହୁଛି କର୍ଣ୍ଣରେ ଶୁଣ । ଏହି ଭାଷା ଗୋଟି ନାଆ-
ବହନ । ୧୦୭ । ଘାଗରା ବୋଲି ଏକ ଗ୍ରାମ ଅଛି । ତହିଁରେ ଥିଲି ମୋର
ଅଧିପତି । ୧୦୮ । ବିଦେଶକୁ ଆସି ବନ୍ଧ ପଡ଼ିଲି । ଯୁବତୀ ପାଶକୁ ଏ
ଭାଷା ଦେଲି । ୧୦୯ । ମୋର୍ଜି ଠାରେ ଉଚୁଘର ଦେଖିବୁ । ସେହିଠାରେ
ଏ ଭାଷାକୁ ତୁ ଦେବୁ । ୧୧୦ । ଶୁଣି କାକପକ୍ଷୀ ହରଷ ହେଲା । ଭାଷା-
ଗୋଟିକି ହସ୍ତରେ ଧେନିଲା ॥ ଆକାଶ ମାର୍ଗରେ ଯାଉଛି ସେହି । ବିଶ୍ରାମ
କାହିଁ ଦଣ୍ଡେ ନ କରଇ । ୧୧୨ । ନବ ଦିନରେ ସେ ପ୍ରବେଶ ହେଲା ।
ପାଚେରି ଉପରେ ଯାଇଁ ବସିଲା । ୧୧୩ । ରାଉ ରାଉ ବୋଲି ଦେଲାକ
ଡାକ । ତଳେ ବସିଣ ହୋଏ ଝାଙ୍କ ଝାଙ୍କ ।୧୧୪। ନୟନା ବୋଇଲା ବାବୁ
କାହିଁକି । ବିଦେଶରୁ ବା ପତ୍ର ଆସିବେ କି ।୧୧୫। ଯାଅ ଲୋ ଦାସୀ ବେଗ
ବେଗ ହୋଇ । ତଣ୍ଡୁଳ ମୁଠିଏ କୁଢ଼ାଅ ନେଇ ।୧୧୬। ସୁମନା ଦାସୀ ତୁଲିଲା

ଯେ ନେଇଲା । ଭଲ ମନ୍ଦ ଭଜନ ଠାବେ ରଖିଲା ।୧୯। କାକପକ୍ଷୀ ସେ ଆଧାର
ନ ଖାଇ । ଦାସୀ ଆଗେ ଭ୍ରଷ୍ଟା ଦେଲା ପକାଇ ॥ ଭ୍ରଷ୍ଟା ଗୋଟି ଦାସୀ ଧଇଲା
କରେ । ଦେଲା ନେଇ ସେହୁ ନୟୂନା ଠାରେ ॥ ସେ ଭ୍ରଷ୍ଟା ନୟୂନା ବେଗେ
ପଢ଼ିଲା । ଚକିତ ହୋଇଣ ଦଣ୍ଡେ ରହିଲା ।୨୦। ସକଳ ବୃତ୍ତାନ୍ତ ଜାଣିଲା
ସେହୁ । ସୁଜନ ଜନ ମନ ଦିଅ ତହୁଁ ।୨୧। ସୁମନା ଦାସୀ ବୋଇଲା ଗୋ
ରାଣି ! ଚକିତ ହୋଇଲ କପାଇଁ ପୁଣି ॥ ଷଷ୍ଠ ଛାନ୍ଦ ଆସି ଶେଷ ହୋଇଲା ।
ଧୀବର ଭିକାରୀ ଗୀତେ ଗାଇଲା ।୨୩। ଏଣିକି ଏ ଛାନ୍ଦ କହୁଛି ଯାହା ।
ଚଉଦ ଅକ୍ଷରେ ବୋଲିବେ ତାହା । ୨୪ ।

## ସପ୍ତମ ଛାନ୍ଦ

### ରାଗ—ମଙ୍ଗଳ

ଶୁଣ ହେ ସୁଜନ ଜନମାନେ ମନ ଦେଇ । ଏଥୁଅନ୍ତେ କଥା ଯେତେ
ଛନ୍ଦୁଅଛି ମୁହିଁ ।୧। ସୁମନା ଦାସୀକି ରାଣୀ ବୋଲଇ ବଚନ । ଖୁଲଣାକୁ
ମୋ ପାଶକୁ ବେଗେ ଡ଼ାକିଆଣ ॥ ଖୁଲଣାକୁ ଯେ ନୟୂନା ପାଶକୁ ଆଣିଲା ।
ମଧୁର କରିଣ ତାକୁ ବଚନ ବୋଇଲା । ୩ । ସ୍ୱାମୀର ବାରତା ଆସି
ମିଳିଲାକି ଏବେ । ବନ୍ଧରେ ରହିଲେ କାନ୍ତ ଆଣିବ କେ ଏବେ । ୪ ।
କଥା ଏ କହିବି କରି ପାରିବୁ କି ତୁହି । ତୋହର କଥା ଅବସ୍ଥା ଲୋ ଲେଖି-
ଛନ୍ତି ସେହି ॥ ଖୁଲଣା ବୋଲଇ ଆଗୋ ଶୁଣ ପାଟରାଣୀ । ମାତାର ସମାନ
ତୁ ଗୋ ମୋ ବଡ଼ ଭଉଣୀ ।୬। ତୁ ଯାହା କହିବୁ ତାହା କରିବି ଅବଶ୍ୟ ।
ସଂଶୟ ମିଟାଇ ତୁ ଗୋ କହ ମୋର ପାଶ । ୭ । ନୟୂନା ବୋଲେ ଖୁଲଣା
ଶୁଣ ମୋ ଉତ୍ତର । ଆଜହୁଁ ତୁ ଆଜ୍ଞାବର୍ତ୍ତୀ ହୋଇବୁ ମୋହର । ରୋଷେଇ
ଶାଳକୁ ତୁ ଲୋ ନିତ ଦେବୁ ପାଣି । ନୋହିଲେ ତୋହର ଶିର ପକାଇବି
ହାଣି ॥ ସଉତୁଣୀ ପଣ ଯେ ଲୋ ମିଟିଲା ମୋହର । ମନରେ ଏହା ବିଗୁରି
ଡ଼ାକିଲା କୁମ୍ଭାର ॥ ବୋଇଲା ରେ ଚକ୍ରୀସୁତ ମୋର ବୋଲକର । ମାଠିଆ
ଗୋଟାଏ ଆଣ ଆଜ୍ଞାରେ ମୋହର ॥ ଷାଠିଏ ଫଉଟି ପାଣି ଧରିବ ଯହିଁରେ ।

ଏମନ୍ତ ମାଠିଆ ଗୋଟି ଦିଅ ମୋ ହସ୍ତରେ ॥ ତାହା ଶୁଣି ଚନ୍ଦ୍ରସୁତ ହରଷ ହୋଇଲା । ଆଜ୍ଞା ପରମାଣେ ଆଣି ଦେବଇଁ ବୋଇଲା । ଚନ୍ଦ୍ରସୁତ ନାମ ଯେ ଅଟଇ ଶିଖିଧର । ଆପଣା ପୁରକୁ ବେଗେ ଗଲା ତତପର ॥ ଦଶ ପାଞ୍ଚ ଜଣ ବନ୍ଧୁ କୁଟୁମ୍ବ ଡ଼କାଇ । ଏତର ଦିନରେ କୁମ୍ଭ ନିର୍ମାଣିଲା ଧେହ୍ନ ॥ ନୟନା ହସ୍ତରେ ତାହା ନେଇ ଏମର୍ପିଲା । ସୁନାବଳା ଶିବପା ଯେ ଅନେକ ଆଣିଲା ॥ ପାଞ୍ଚ ବର୍ଣ୍ଣେ ଘର ଯେ ଗୋଟିକ ମାଠିଆ । ଦେଖିକରି ନୟନାର ତୋଷ ହେଲା ହିଆ । ଖୁଲ୍ଲଣା ସୁନ୍ଦରୀ କର୍ମ ଗୋଟି ହେଲା ବାମ । ଦେଖି ନଗ ଲୋକେ ସର୍ବେ ହୋଇଗଲେ ଖାମ । ଧୀବରଭକ୍ତାସ୍ତର ଯେ ଜନ୍ମିଲା ସାହସ । ସପ୍ତମ ଛାନ୍ଦକୁ ଏହିଠାରେ କଲି ଶେଷ ॥

---

## ଅଷ୍ଟମ ଛାନ୍ଦ

ରାଗ—ମଙ୍ଗଳ

ଖୁଲ୍ଲଣାକୁ ନୟନା ଯେ ପାଶକୁ ଡାକିଲା । ନିଅ ଲୋ ମାଠିଆ ପାଣି ଆଣ ଲୋ ବୋଇଲା ॥ ଏହି କୁମ୍ଭେ ଯେବେ ତୁ ଲୋ ନ ଦେଉଛୁ ପାଣି । ଖଣ୍ଡଘେ ତୋହର ଶିର ପକାଇବି ହାଣି । ୨ ଦେଖି ଖୁଲ୍ଲଣାସୁନ୍ଦରୀ ଭୂମିରେ ପଡ଼ିଲା । ନିଜ ହସ୍ତ ନେଇ ସେ ଯେ କପୋଳେ ମାଇଲା । ୩ । ପୋଡ଼ୁ ମୋ ଅଭାଗ୍ୟ କର୍ମ କହିବି କାହାକୁ । ଏହା କହି ସୁମରିଲା ମଙ୍ଗଳା ମାଆଙ୍କୁ । ୪ । ଜଗତ ଜନନୀ ତାର ଦୁଃଖ ସେ ଜାଣିଲେ । ଆକାଶ ମାର୍ଗରେ ଥାଇ ତାହାକୁ ବୋଇଲେ । ୫ । କପାଇଁ ଖୁଲ୍ଲଣା ତୁ ତ ହେଉଛୁ ଅରତ । ଏ କୁମ୍ଭରେ ପାଣି ତୁ ଗୋ ଆଣ ତୋଷଚିତ୍ତ । ୬ । ମଲ୍ଲୀଫୁଲ ପରାସ୍ତ ଉଶ୍ୱାସ କରାଇବ । ଯେତେ ଦୁଃଖ ପଡ଼ିଲେ ମୁଁ ତହିଁରୁ ରଖିବି । ୭ । ଏ କଥାକୁ ତୁ ଭାବନା କରୁ କାହିଁ ପାଇଁ । ମୁହିଁ ଥିଲେ ଦୁରିତ ତୋହର କିଛି ନାହିଁ । ୮ । ଏମନ୍ତ ଶୂନ୍ୟରେ କହି ସାହେବର ନନ୍ଦନୀ । ଏତେ ଏତେ କଥା କେହି ନ ଜାଣନ୍ତି ପୁଣି । ୯ । ଅଷ୍ଟବେତାଳଙ୍କୁ ଡାକି ମଙ୍ଗଳା ବୋଲନ୍ତି । ଖୁଲ୍ଲଣା ନିକଟେ କୁମ୍ଭେ ଯାଅରେ ତଡ଼ିତ । ୧୦ । ଦଣ୍ଡ ଦେଉଅଛି ତାକୁ ନୟନାସୁନ୍ଦରୀ ।

କଳଶୀଗୋଟ ଷାଠିଏ ପଡ଼ିଛିରେ ଭରିବ ॥ ତହିଁରେ ପାଣି ପୂରାଇ ଦେବ ସେ ଖଞ୍ଜଣା । ତୁମ୍ଭେମାନେ ଶୂନ୍ୟରେ ଠେକଣ ଥିବ ସିନା । ୧୨ । ଦୁଃଖେ ଯେହ୍ନେ ନ ପାଇବ ଖଞ୍ଜଣାସୁନ୍ଦରୀ । ଉତ୍ତର ନ କର ବେଗେ ଯାଅ ଶୀଘ୍ର କରି । ୧୩ । ମୋହଠାରୁ ଶତେ ଗୁଣେ ସେବା ତାକୁ କର । ଖଞ୍ଜଣାସୁନ୍ଦରୀ ଅଟେ ଦୁହିତା ମୋହର ॥ ତାହା ଶୁଣି ବେତାଳେ ଯେ ହରଷ ହୋଇଲେ । ମାତାଙ୍କୁ ମେଲଣି ମାଗି ବେଗେ ଚଳିଗଲେ ॥ ଅଷ୍ଟମ ଛାନ୍ଦ ଏଠାରୁ ସମ୍ପୂର୍ଣ୍ଣ ହୋଇଲା । ଧୀବର ଭିକାରୀ ଏହା ଗୀତରେ ଗାଇଲା । ୧୬ ।

---

## ନବମ ଛାନ୍ଦ

ରାଗ—ଚୈନ୍ଧି

ଶୁଣ ହେ ସୁଜନଜନ, ଏଥିଅନ୍ତେ କଥାମାନ, ଯେତେକ ହୋଇଲା ମୁଁ କହୁଛି ବୁଝାଇ । ଅଷ୍ଟ ବେତାଳେ ଅଇଲେ ଖଞ୍ଜଣା ଦେହେ ରହିଲେ, ସିହର ପ୍ରାକର୍ମ ପୁଣି ତାହାର ହୋଇ । କ ଜାଣି ସେ କସ କରିବ । ମେରୁକୁ ଉଠାଇ ସେ କ ପକାଇ ଦେବ । ୧ । ଖଞ୍ଜଣାସୁନ୍ଦରୀ ଯାଇ, ନିସୁନା ଅଗ୍ରତେ କହି, ମୋ ଦୁଃଖ ଭଉଣୀ ତୋତେ ନ ଲାଗେ ଆଉ । ଏକେ ଗର୍ଭ ଯେ ମୋହର, ଭରି ଅଛଇ ସୁମର, କେମନ୍ତ ପ୍ରକାରେ ମୋତେ ଏ ଭାଷା କହୁ । ମୁଁ ସାନ ଭଉଣୀ ତୋହର । ତୁ ପରା ବଡ଼ ଭଉଣୀ ଅଟୁ ମୋହର । ୨ । ବାରେ ମୋ ବଚନ ଘେନ, କର ତୁ ମୋର ବଚନ, କେମନ୍ତ ପ୍ରକାରେ ତୋତେ ହୋଇବ ପାର । ମାନବ ହୋଇ କେ ଗୋଟି, ଅଣିବ ଅଶୀଘଡ଼ିଟି, ଏକା କୁମ୍ଭକରେ ଅରେ ପୂରାଇ ନୀର । ବଡ଼ୁରକୁ ଅଣ ଭୁରତେ । ମିଥ୍ୟା ଯେବେ ହେଲା ଦଣ୍ଡ ଦିଅ ତୁ ମୋତେ । ୩ । ଶୁଣି ନିସୁନା ବୋଲଇ, ନିଶ୍ଚେ ତୋତେ ମାରିବଇଁ, ଚିରିବ ଗର୍ଭ ତୋହର ବାଳକ କାଢି । ନ ରଖିବ ଏ ରାଜ୍ୟରେ, ଘଉଡ଼ାଇ ଦେବ ଦୂରେ, ନୋହିଲେ ମୁଁ ପକାଇବ ତୋ ମୁଣ୍ଡ ମୋଡ଼ି । ଢିଙ୍କିରେ ପୂରାଇ କୁଟିବ । ଶିଳରେ ପକାଇ ତୁଳା ପ୍ରାୟେ କାଟିବ । ୪ । ଏ ବଚନ ଶୁଣିକରି, ମୁଖ...

ବାଣୀ ନ ସ୍ମରି, ଧର୍ମକୁ ସେ ସାକ୍ଷ ଦେଇ କୁମ୍ଭ ଧରିଲା । ମଙ୍ଗଳା ନାମ
ସୁମରି, ପଥ ଗୃହଲେ ଅନୁସରି, ଗଣ୍ଡକୀ ନଦୀରେ ଯାଇଁ ପ୍ରବେଶ ହେଲା ।
କୁମ୍ଭକୁ ବୁଡ଼ାଇ ପାଣିରେ । ନେଇକରି ବସାଇଲା କାଖ ଉପରେ ॥ ଯାକୁ
ସାହା ହରନାରୀ, ତାକୁ କାହୁଁ ହେବ ଭାରି, ମଞ୍ଜୀ କୁସୁମ ପରାଏ ଲାଗଇ
ତାକୁ । ଦେଖନ୍ତି ଜନେ ସଂସାର, କରୁଛନ୍ତି ହାହାକାର, ଜଳ
ନେଉଅଛି ସେ ନସୁନା ପାଶକୁ । ଖଣ୍ଡେ ଦୂରେ ଦେଲାକ ରଖି । କର୍ମ
ଏ ମୋହର ବୋଲି ବୋଲେ ସୁମୁଖୀ ।୭। ଖୁଲ୍ଲଣା ବଦନ ଚାହିଁ, ନସୁନା
ସୁନ୍ଦରୀ କହି, ମୋହର ବଚନ ତୁ ଲୋ ଶୁଣ ଭଉଣି । ଏ କୁମ୍ଭ ତିନି
ସାଙ୍ଗରେ ଆଣିଥିଲେ ସେ କୁମ୍ଭାରେ, କେମନ୍ତେ ପାଣି ଆଣିଲୁ ସେଥିରେ
ପୁଣି । ଜାଣିଲି ମୁଁ ତୋହର କଥା । ତୁହି ନଷ୍ଟେ ଜାଣୁ ଲୋ ହୃଦର
ବ୍ୟବସ୍ଥା ॥ ଖୁଲ୍ଲଣା ବୋଲେ ଭଉଣୀ, ମୁଁ ତ ସ୍ୱଭାବେ ଦୁଃଖିନୀ, କାହୁଁ
ହୃଦର ଶିଖିବି ଅବଳା ପୁଣି । ତୁହି ଦେଉ ଏତେ ଦୁଃଖ, ହେଉ ମୋଠାରେ
ବିମୁଖ, ସୁଦୟା ନ କରୁ ଦିନେ ମୋଠାରେ ପୁଣି । ପଞ୍ଚମାସ ମୋହ ଗର୍ଭରେ ।
ଯେ ଦୁଃଖ ଦେଉଛୁ ଦୟା ନାହିଁ ମୋଠାରେ । ୮ । ମୁଁ ତ ଛନ୍ଦ ନ ଜାଣଇ
ମୋତେ ସାହା ମହାମାୟୀ, ତାହାର ବ୍ୟତୀତ ମୁଁ ଯେ ନ ଜାଣେ କିଛି । ତୁ
ଯେତେ ଦେଉ କଷଣ, ତାହା ମୁଁ ସହିଲି ପୁଣି, ଏଥିକୁ ସିନା ମୋହର
ଧରମ ଅଛି । ହେଉ ପଛେ ମୋ ଦେହ ସହୁ ।ବଡ଼ଲୋକ ପଣ ତୋର ସବଦା
ଥାଉ । ୯ । ଏମନ୍ତ ଖୁଲ୍ଲଣା କହି, ଗଲା ଯେ ଅନ୍ତର ହୋଇ, ବେତାଳମାନେ
ତାହାର ହୃଦୟେ ଗଲେ । ପ୍ରବେଶ ମଙ୍ଗଳା ପାଶେ, ଦର୍ଶନ କଲେକ ତୋଷେ,
ସକଳ ବାରତା ଯେ ବୁଝାଇ କହିଲେ । ଯାହୁଁ ଆଜ୍ଞା ଦେଲଠି ତୁମ୍ଭେ ।
ଖୁଲ୍ଲଣା ସୁନ୍ଦରୀ ଦୁଃଖ ଫେଡ଼ିଲୁ ଅମ୍ଭେ ॥ ଶୁଣି ମଙ୍ଗଳା ହରଷ, ନିଶ୍ଚିନ୍ତେ
ରହିଲେ ବାସ, ଏଥୁଅନ୍ତେ କଥା ଯେତେ ଶୁଣ ସୁଜନେ । ନସୁନା ସୁନ୍ଦରୀ
ପୁଣି, କମାରକୁ ଡାକିଆଣି, ମଧୁର କଉଣ କହେ ଧୀର ବଚନେ । ତୁମ୍ଭେଠି
ଏମନ୍ତ କରିବ । ଲୁହାର ଡିଙ୍କି ଗୋଟିଏ ଗଢ଼ିଣ ଦେବ ।୧୧। ଶୁଣି କମାର
ବୋଇଲା, ଏ ତ ବିପରୀତ ହେଲା, କେମନ୍ତେ ଗଢ଼ିବୁ ଆମ୍ଭେ ଡିଙ୍କି ଲୁହାର ।

ଯେଉଁ ରାଜ୍ୟରେ ଅବୁଝା, ଯୁବତୀ ହୋଇଛନ୍ତି ରାଜା, ସେ ରାଜ୍ୟରେ ବିପତ୍ତି ପଡ଼ିବ ନାହିଁକି । ନ ରହିବୁଁ ତୁମ୍ଭ ରାଜ୍ୟରେ । ପଳାଇ ଯାଉଛୁଁ ଅମ୍ଭେ କହୁ ଛାମୁରେ । ୧୨ । ଅନ୍ୟାୟ କଥା ଆଚରି, ଲୁହା ଢିଙ୍କି ଗଢ଼ିକରି, ଖୁଲଣାକୁ କୁଟାଇବ ତହିଁରେ ଧାନ । ଏ କେଉଁ ଦେଶରେ ଅଛି, ମାନବ ଏହା କରୁଛି, ଏ ଅବା କେଉଁ ସାଆନ୍ତପଣ ବିଧାନ । ଧର୍ମ ରକ୍ଷା କଥାକୁ କର । ଏମନ୍ତ ପ୍ରକାରେ ଯେ ବୋଇଲା କମାର । ୧୩ । ଶୁଣି ନୟନା ସୁନ୍ଦରୀ, କୋପେ କହେ ଖର କରି, ସେ ଦୁଃଖ ପାଇଲା ତୁମ୍ଭର ଯେ କି ଗଲା । ତୁମ୍ଭେ ମୋ ବଚନ କର, ଢିଙ୍କିଦିଅ ତତପର, ଆଜ ଆଣିକରି ତୁମ୍ଭେ ଦିଅ ବୋଇଲା । ନୋହିଲେ ତୁମ୍ଭଙ୍କୁ ମାରିବି । ପୁତ୍ର ଦାରା ସହିତେ ଏକାଳ ନାଶିବି । ୧୪ । ଶୁଣି କମାର ବୋଲଇ, ନଷ୍ଟେ ଆଣିଦେବି ମୁହିଁ, ଏଥକୁ କାହିଁକି କୋପ କରୁଛ ତୁମ୍ଭେ । ଅଗତ୍ୟର କଥା ବୋଲି, ସେଥିପାଇଁ ମୁଁ କହିଲି, ତହିଁକି ଆମ୍ଭର ଦୋଷ ହୋଇଲା ଯେବେ । ତୁମ୍ଭ ଇଚ୍ଛା ଯେ ହେଲା କରି । ଆମ୍ଭର କି ଗଲା ଏବେ ସୁଚୀ ମାତର ॥ ତୁମ୍ଭ ଆଜ୍ଞା ଶିରେ ଘେନି, ଢିଙ୍କି ଗୋଟି ଦେବୁ ଆଣି. ଏମନ୍ତ କହିଣ ଯେ କମାର ଚଳିଲା । ସେଠାବୁଁ ଗଲା ଶୀଘ୍ର, ଯାଇଣ ମିଳିଲା ଘରେ, ସାତ ପାଞ୍ଚ କମାରଙ୍କୁ ଡାକି ଆଣିଲା । ଗଢ଼ିଲେ ସେ ଲୁହାର ଢିଙ୍କି । ସତ୍ତରି ମହଣ ଭାର ଅଟେ ସେ ଢିଙ୍କି ॥ ଗୃହ ଯାଗି କରି ନେଇ, ନୟନା ଛାମୁରେ ଦେଇ, ବୋଇଲେ ଗୋ ମାତା ମୋ ଦୋଷ କ୍ଷମା କର । ଢିଙ୍କି ଗୋଟି ଦେଲୁ ଆଣି, ହରଷେ କର ମେଲାଣି, ଦେଖିକରି ହରଷ ନୟନା ସୁନ୍ଦରୀ । ଶାଢ଼ି ଶିରପା ସେ ଦେଲା ଯାହୁଁ । ହରଷ ହୋଇ କମାର ଚଳିଲା ତହୁଁ । ୧୭ । ସେ ଢିଙ୍କି ଦେଖି ହରଷ, ନୟନା ମନରେ ତୋଷ. ଖୁଲଣା ସୁନ୍ଦରୀକି ସେ ପାଶକୁ ହକାଇ । ବୋଇଲା ମୋ ଆଜ୍ଞା ଘେନ, ଏ ଢିଙ୍କିରେ କୁଟ ଧାନ, ନୋହିଲେ ତୋର ପରାଣ ଘେନିବି ମୁହିଁ । ଖୁଲଣା ତା ବଚନ ଶୁଣି । ହେଲା ନେତ୍ରୁ ତାହାର ଯେ ବହୁଛି ପାଣି । ୧୮ । ବୋଲେ ଜ୍ୟେଷ୍ଠ ଭଗ୍ନୀ ମୋର, କଥାକୁ ଯେ ନ୍ୟାୟ କର, କେମନ୍ତେ କୁଟିବି ମୁଁ ଯେ ଏଥିରେ ଧାନ । ଏତା [illegible]ରେ ମୁହିଁ, ଏହାକୁ କି କୁଟିବଇଁ, ଏ କଥକୁ [illegible]ର ତୁ

ନ ଜାଣୁ ମନ । ଏକେ ଗର୍ଭବାସ ମୋହର । ଏ ଦଶା କପାଳେ ଅଛି ହେ
ନରହରି । ୧୯ । ଦାରୁଣ ମନ୍ଦ ଦଇବ, ଏ ଦୁଃଖ କିଏ ସହିବ, ପୋଡ଼ଯାଉ
କିନା ମୋର କପାଳ କଥା । ଏକେ ମୁଁ ରାଜକୁମାରୀ, ଅଳ୍ପ ବୟସ ମୋହର,
ଏକାଳରେ ବିଦେଶରେ ରହିଲେ ଭର୍ତ୍ତା ।। ଲଙ୍ଘଣୀ ଦେଉଛି ଏ ଦୁଃଖ ।
ଭୋଗ କରି ନ ପାରିଲି ମୁଁ ଦିନେ ସୁଖ । ୨୦ । ରାଜଜେମା ହୋଇଥିଲି,
ରାଜାଙ୍କ ବିଭା ହୋଇଲି, ଦରିଦ୍ର ସମାନେ ଦୁଃଖ ପଡ଼ିଲା ମୋତେ । ମୋର
ମରିବାକୁ ଡର, ନାହିଁଟି ହୃଦଭିତର, କେବଳ ବାଳକ ଅଛି ମୋ ଗର୍ଭ-
ଗତେ । ତାକୁ ବାରେ ରଖ ମଙ୍ଗଳା । ମୋହର ପଛାତେ ପ୍ରାଣ ଗଲେହିଁ
ଗଲା । ୨୧ । ଏତେ ଦୁଃଖ ସହି କରି, ପୁତ୍ରକୁ ଗର୍ଭରେ ଧରି, ଯେବେ ନ
ଦେଖିବି ମୁହିଁ ନନ୍ଦନ ମୁଖ । କି ହେବ ଏ ରାଜ୍ୟେ ଥିଲେ, ପଳାଇବା ଅଟେ
ଭଲେ, ପୋଡ଼ଯାଉ କିନା ଏଥି ଏତେକ ସୁଖ । ଖୁଲଣାର ଆରତ ଶୁଣି ।।
ଶୂନ୍ୟରେ ଥାଇ ମଙ୍ଗଳା ବୋଲନ୍ତି ବାଣୀ । ୨୨ । କିମ୍ପା ତୁ ଆରତ ହେଉ,
ମନରେ ହରଷ ନୋହୁ, ସବୁବେଳେ କାନ୍ଦୁଛୁ ବିରସ ବଦନ । ଏ କି ତୋର
ବିପରୀତ, ମୋଠାରେ ଲଗାଅ ଚିତ୍ତ, ମୁଁ ସିନା କରିବି ତୋ ଦୁର୍ଗତି ଦହନ ।
କିଛି ଚିନ୍ତା ନ କର ତୁହି । ସୁଖେ ତୁ ଢିଙ୍କିରେ ଧାନ କୁଟେ ଲୋ ଯାଇ । ୨୩ ।
ଏମନ୍ତ କହିଣ ତାକୁ, ମଙ୍ଗଳା ଗଲେ ପୁରକୁ, ଅଷ୍ଟ ବେତାଳକୁ ଡାକି
ବୋଇଲେ ବାଣୀ । ତୁମ୍ଭେ ଏହିକ୍ଷଣି ଯାଅ, ଖୁଲଣା ନିକଟେ ରହ, ବିପତ୍ତି
ଦେଉଛି ତାକୁ ବଡ଼ ଲଙ୍ଘଣୀ ।। ଲହୁଣା ଢିଙ୍କି ଗଢିଛି ସେହି । ବୋଇଲା
ଏଥିରେ ଧାନ କୁଟେ ଲୋ ଯାଇଁ । ୨୪ । ତୁମ୍ଭେମାନେ ବେଗେ ଯିବ, ଅଦୃଶ୍ୟ
ହୋଇ ରହିବ, ଖୁଲଣା ସଙ୍ଗକୁ ବଳ ହେବ ସମସ୍ତେ । କୁଟି ସାରିଲେ ସେ
ଧାନ, ଆସିବ ମୋ ସନ୍ନିଧାନ, ମଙ୍ଗଳା ଯେହ୍ନେ କହିଲେ ତାଙ୍କ ଅଗ୍ରତେ ।
ବେତାଳ ଯେ ପାଦେ ପଡ଼ିଲେ । ଧାଇଁ ଯାଇଁ ଖୁଲଣାର ପାଶେ ମିଳିଲେ ।।
ତା ଅଙ୍ଗରେ କଲେ ଘର, ଉଚାଟ ମନ ତାହାର, ସଜ ହୋଇଲାକ ତହୁଁ
ଖୁଲଣା ନାରୀ । ସତର ଭରଣ ଧାନ କୁଟିଲାକ ଏକଦିକ, ଢିଙ୍କିରେ ପୂରାଇ
କରି ଖୁଲଣା ନାରୀ । ସେହିଠାରୁ ଚଞ୍ଚଳ ହେଲା । ଧୀବର ଭିକାରୀ ବସି
ପଦ ପୋଡ଼ିଲା । ୨୫ ।

---

## ଦଶମ ଛାନ୍ଦ

### ରାଗ—ଚୋଖି ବାଣୀ

ଖୁଲଣାର ସ୍ୱଭ ଦେଖିଣ ଯୁବତୀ ଅତ୍ୟନ୍ତ କାତର ହେଲା । ହିଅ ଦମ୍ ଦମ୍ ତନୁ ଝମ ଝମ ପ୍ରକୋପରେ ସେ ବୋଇଲା ଲୋ । ତୁ ତ । କହ କହ ମୋର ଆଗେ ସତ୍ୟ । କି ମନ୍ତ୍ର ତୁ ଜାଣୁ ଅବା ତନ୍ତ୍ର ॥ ନୋହିଲେ କି ତୁହି ଏକଗୋଟି ହୋଇ ନାନା ବିଚାର କରୁଛୁ । ସବୁର ମହଣି ଢିଙ୍କି-ଗୋଠା ପୁଣି ଏକା ଜଣକେ ଠେଲୁଛୁ ଲୋ । କହ । ମୋର ମନରୁ ଯାଉ ସନ୍ଦେହ । ଏବେ କେଉଣେ ଯିବୁ ରହ ରହ ଲୋ ॥ ଖୁଲଣା ବୋଲଇ ଶୁଣ ଭଗ୍ନୀ ତୁହି ନ ଜାଣଇ ମୁହିଁ ଛନ୍ଦ । ଅଦୋଷରେ ମୋତେ ଏତେ ଦଣ୍ଡ ଦେଇ ଲଗାଇଛୁ କେତେ ଫାନ୍ଦ ଗୋ । ଯେତେ । ତୁହି କଷଣ ଦେଉଛୁ ମୋତେ । ଚିନ୍ତା ଗର୍ବ ବାଧ ଲାଗି ମୋତେ । ୩ । ତୋତେ କି କହିବି ଅଦୃଷ୍ଟରେ ମୋର ଆଦରଛି ସବୁକଥା । କେ ଆନ କରିବ କପାଳରେ ଯାହା ଲେଖିଛି ମନ୍ଦ ବିଧାତା ସେ । ପୂର୍ବେ । ତାହା କେ ଆନ କରିବ ଏବେ । ତୋର କି ଦୋଷ କରିଛି ଏବେ । ମୋତେ ମଙ୍ଗଳା ମାତା ରଖିବେ । ୪ । ଏ ବଚନ ଶୁଣି ନୟନା ସୁନ୍ଦରୀ କୋପେ ବଚନ ବୋଇଲା । ଆଜହୁଁ ମୋହର ଛେଳି ରଖା ଯାଇଁ ଯଷ୍ଟି ଖଣ୍ଡିଏକ ଦେଲା ସେ । ଆଣି । ତାକୁ ବୋଇଲା ସେ କୋପେ ବାଣୀ । ଯେତେ ଅଳଙ୍କାର ଅଛି ପୁଣି । ମୋତେ କାଢ଼ି ଦିଅ ଏହି-କ୍ଷଣି । ୫ । ତା ଶୁଣି ଖୁଲଣା ମନରେ ଫୁଟୁଣା ତତ୍‌କ୍ଷଣେ ଉଠି ବସିଲା । ଯେତେ ଅଳଙ୍କାର ହୃଦସ୍ଥରେ ଥିଲା ସକଳ ତହୁଁ କାଢ଼ିଲା ସେ । ନାସା । ଗଳାରୁ ଫେଇଲା ଗୁପସର । ମସ୍ତକରୁ କାଢ଼ିଲା ଚଉଁସା । ପୁଣି କାଢ଼ିଣ ଦେଲା ଦୋସର । ୬ । କଟି ତଟରୁ ସେ କିଙ୍କିଣୀ କାଢ଼ିଣ ରତ୍ନ ମୁଦ୍ରିକା କାଢିଲା । ବେନି ହସ୍ତରୁ ସେ ଚୁଡ଼ି କାଢ଼ି ଦେଇ ସୂତା ଖଣ୍ଡିଏ ବାନ୍ଧିଲା ସେ । ସେତେ । ଅଳଙ୍କାର ଦେଲା ତାର ପାଶେ । ରୂପ ତାହାର ଅଶୋକା ଦିଶେ । ୭ । ସେ ଦିବ୍ୟ ଅଳଙ୍କାର ନେଇଣ କନାଖଣ୍ଡେ ଦେଲା ତାର, କହି ବସିଲେ ତା ଅଙ୍ଗ ହୋଇବ ପଡ଼ିଛି ଗଣ୍ଠି ସତର ସେ । କଳା । ତାକୁ ଶୁଙ୍କ

ବସ୍ତ୍ର ନ ମିଳିଲା । କିବା ପଙ୍କରେ ଗୋଳାଇ ଦେଲୁ । ୮ । କି କରିବି ମୁହିଁ ଧର୍ମ ସାକ୍ଷୀ ଦେଇ ଡ଼ାକିଲୁ ମଙ୍ଗଳା ରଖ । ଏ ଯୋଡ଼ା ଲୁଗାଟେ ମୋର ଲେଖା ଥିଲୁ ସହିବାକୁ ଏତେ ଦୁଃଖ ଗୋ । ମଲି । ତୁମ୍ଭେ ନ ରଖିଲେ ଘୁସିଗଲି । ଏବେ ବନସ୍ତେ ଛେଳି ରଖିଲି । ୯ । ଏମନ୍ତ କହିଣ ଖୁଲଣା ସୁନ୍ଦରୀ ଠେଙ୍ଗା ଧେନି ଚାଲିଗଲୁ । ଗହନ କାନନ ଭିତରକୁ ଯାଇ ଛେଳି ସଙ୍ଗରେ ବୁଲିଲା ସେ । ବସି । ଶୋକ ଭାବୁଅଛି ଶୁଭ୍ରକେଶୀ । ଚିନ୍ତେ ମଙ୍ଗଳା ନାମକୁ ଘୋଷି । ୧୦ । ରଖ ରଖ ମୋତେ ମଙ୍ଗଳା ମାଆ ତୁ ଏ ଦୁଃଖରୁ ମୋତେ ରଖ । ତୁମ୍ଭ ପଦ୍ମପାଦ ତଳେ ଆଶ୍ରେ କରି କାଳକ ନ ଗଲୁ ଦୁଃଖ ଗୋ । ମାତା । କେତେ ସହିବି ଭଉଣୀ କଥା । ଏକା ହେଲୁ ମୋତେ ଗର୍ଭଚିନ୍ତା । ଗଲେ ପଛେ ଏ ଜୀବ ଯାଆନ୍ତା । ୧୧ । ଅକାରଣେ ଭାଇ ବାଲ୍ୟ କରି ଦେଲୁ ଭଉଣୀ ଘରକୁ ମୋତେ । ସୁଖ ଭୋଗ୍ୟାକରି ଦୁଃଖ ମୁଁ ପାଇଲି ତୁମ୍ଭଙ୍କୁ କହିବି କେତେ ସେ । ଏହି । ମୋର ଭାଗ୍ୟେ ଲେଖିଥିଲୁ କାହି । ଶେଷ ନୋହିବ ତା କହି କହି । ଜାହି କରି ବାରେ ସାହାହୋଇ ॥ ଏହିକ୍ଷଣି ମୋର ଦୁଃଖ କେଣେ ଯାନ୍ତା ଯେବେ ଯାନ୍ତି ପିତାଘର । ଦୋମ୍ଭୁ-ଳୁଣୀ ବୋଲି ସଂସାରେ କହିବେ ଏହା କେ ସହିବ ମୋର ଗୋ । ଚିନ୍ତାରୁ । ଯେତେ ଦଣ୍ଡ ଦେଲେ ପଛେ ଦେଉ । କର୍ମ ଆଦରିଣ ଦେହ ସହୁ । ୧୩ । ପିତାଘର ଲୋକେ ମୋତେ ବୋଲୁଥିବେ ଗେରସ୍ତ କେଣିକି ଗଲୁ । ଅଭ ଅଲକ୍ଷଣୀ ଦରିଦ୍ରା ହୋଇଣ ଆମ୍ଭ ଘରକୁ ଅଇଲୁ ସେ । ଗାଳି ଦେଲେ ଶରୀର ମୋ ଯିବ ଜଳି । ତେଣୁ ବଦନେ ଲାଗିବ କାଳି । ୧୪ ଏମନ୍ତେ ଯୋହଦ୍ରେ ପଣ୍ଡାତେ ଦଣ୍ଡିଲେ ଦଣ୍ଡ ଦେଉଥାଇ ସେହୁ । ଏ ଅପଦୂଷଣ ଶୁଣି-ବାକୁ ମୋତେ କଦାଚିତେ ମାତା ନୋହୁ ଗୋ । ଏହି । ଭାବି ଭାବି ରୋଦନ କରଇ । ତାହା ଜାଣିଲେ ମଙ୍ଗଳାମାଇ । ୧୫ । ତତ୍କ୍ଷଣେ ଯାଇଁ ପ୍ରବେଶ ହୋଇଣ ଖୁଲଣା ସୁନ୍ଦରୀ କତ । ବୋଇଲେ ତୁ କାହିଁ ରୋଦନ କରୁଛୁ ପଣ୍ଡିତମର ଦୁହିତା ଗୋ । ଏକା । ତୋତେ ଏ ବନେ କେ ଅଛି ସଖା । ସ୍ୱୟଂ ମୁହିଁ ଏବେ ଦେଲି ଦେଖା । ୧୬ । କିମାଇ ଖୁଲଣା ରୋଦନ

କରୁଛୁ ଏହା ତୋ କର୍ମେ ଅଛଇ । ଯେବେ ଆନ କେହ୍ମୁ ଏହା କରିପାରେ ଦୁଃଖ କ ସହନ୍ତୁ ତୁହ ଗୋ । ନାରି । ତୋତେ କରିବ ସଙ୍କଟୁ ପାରି । ଯେତେ ଦୁଃଖ ପାଇଲୁ ସୁନ୍ଦରୀ ।୧୭। ଅଳପ ଦିନରେ ଦୁଃଖ ତୋର ଯିବ ମନରେ ବିରସ ନୁହ । କଷ୍ଟ ନିବାରଣ ତୋହର କରିବା ନଷ୍ଟେ ଜାତ ହେବ ପୁଅ ଗୋ । ସତ । ତୋର ହରିବ କୋଟି ଦୁର୍ଗତ । ସେ ତ ମେଦିନୀ ପାଳିବ ଜତ ।୧୮। ତୋର ଆଗରେ ନୟନା ବଧ ହେବ ଦେଖିବୁ ବେନି ନୟନେ । ପତି ସଙ୍ଗେ ମହାସୁଖ ତୁ କରିବୁ ପୁନ ପାଳିକୁ ଯତନେ । ତା ଶୁଣି । ତୋଷ ହୋଇଲା ତରୁଣୀମଣି । ଭାବି ଧୀବର ଭକାରି ପୁଣି । ଶୂନ୍ୟେ ଚଳିଗଲେ ଠାକୁରାଣୀ । ୧୯ ।

---

## ଏକାଦଶ ଛାନ୍ଦ

### ରାଗ—କଳଶା

ତହୁଁ ସେଠାରୁ ଯେ ମଙ୍ଗଳା ଗଲେ ଚଳି । ଅରଣ୍ୟ ଭିତରୁ ଯେ ବାହାର ହେଲା ବାଳି । ୧ । ଖୁଲଣା ସେ ଛେଳିମାନ ସଙ୍ଗତରେ ଘେନି । ଆପଣା ମନ୍ଦିରେ ଯାଇ ମିଳିଲା କାମିନୀ । ୨ । ଗୁହାଳେ ଛେଳିମାନଙ୍କୁ ପୂରାଇଲା ନେଇ । ଖାଇବା ନିମନ୍ତେ ନୟନାକୁ ମାଗେ ଯାଇଁ ॥ ଆଯ ଆଯ ଭଉଣୀ ଗୋ ଦିଅ ତୁ ଭୋଜନ । କ୍ଷୁଧାରେ ଆରତ ମୋର ହେଉଛି ଜୀବନ ॥ ତାହା ଶୁଣି ନୟନା ଯେ ଗଲାକ ତଡ଼ିତ । ଭାତ ବୋଲି କପାମଞ୍ଜି ଦେଲାକ ଝଟତ ॥ ଡିଅଣ ବୋଲି ସେ ଦେଲା ଜଳ ଖାଲି ଆଣି । ହଳଦି ଗୁଣ୍ଡିଏ ତହିଁ ଗୋଳାଇଛି ପୁଣି ॥ ଲୁଣ ବୋଲିକରି ସେ ପାଉଁଶ ଦେଲା ମଳି । କର୍ମକୁ ଆଦରି ତାହା ନ ଭୁଞ୍ଜଇ ବାଳୀ ॥ ନିରାଶେ ପକାଇ ଦେଲା ବନସ୍ତ ଭିତର । ଛେଳି ରଖିଗଲା ପୁଣି ଖୁଲଣା ସୁନ୍ଦର । ୮ । ଦାରୁଣୀ ଦଇବ ତାକୁ ଯେମନ୍ତ କରିଛି । କର୍ମକୁ ଆଦରି ତାହା ଦୁଃଖ ସହିଅଛି ।୯। ଖୁଲଣାର ଘରେ ଅବା କେତେ ଧନ ନାହିଁ । କର୍ମକୁ ଆଦରି ଛେଳି ଗୁହାଳେ ବଞ୍ଚଇ । ୧୦ । ଦିବସ ଅସ୍ତ ବେଳରେ ଘରକୁ ଆଇଲା । ଅଠାଇ ମଧ୍ୟରେ

ଛେଳି ଘର୍‌ରେ ରଖିଲା । ୧୧ । ଶୀତକାଳେ ବେନିକର ଯାକିଣ ଧାଅଁଇ ।
ନେକଡ଼ା କନା ଖଣ୍ଡିଏ ଦେହରେ ଅଛଇ ॥ ଖାଇବା ନିମନ୍ତେ ଯାଇ ଜଗୁଣୀଙ୍କି
ମାଗିଲା । ଦିଅ ଗୋ • ଭୋଜନ ମୋର ପ୍ରାଣ ଅପି ଗଲା । ୧୩ । ନସୁନା
ବୋଲଇ ତୁ ଲୋ ଭୁଞ୍ଜିବୁ କାହିଁରେ । ପନ ତୋଳି ତଡ଼ପରେ ଅଣି
ଧାଡ଼କାରେ ॥ ତାହାଶୁଣି ଖୁଲ୍ଲଣା ଯେ ପନ ତୋଳି ଗଲା । ଉନ୍ନାଡ଼ ରାନ୍ଧିରେ
ସେ ପତର ତୋଳିଲା । ୧୫ । ବାହୁଣୀ ବୋଲଣି ଭେଳି ନାମଗୋଟି ତାର ।
ତା ବାଡ଼ିକି ଚଳିଯାନ୍ତେ ଖୁଲ୍ଲଣା ସୁନ୍ଦର । ୧୬ । ଏଣେ ନସୁନା ସୁନ୍ଦରୀ
ଧାଇଁକରି ଗଲା । ବାହୁଣୀ ବାହୁଣୀ ଭେଳି ବୋଲି ଡାକ ଦେଲା ॥ ତୋ
ସାନ୍ତି ବାଡ଼ିରେ ଚୋର ପଶିଲା ରେ ପୁଣି । ତୋହର ପୁଅଙ୍କୁ ଡାକଦିଅ
ତତକ୍ଷଣି । ୧୮ । ଅଠରଟା ପୁତ୍ର ତାର ଅଟେ ଏକୁ ଏକ । ଚଉପାଶେ
ବେଢିଗଲେ ସାନ୍ତି ବାଡ଼ିଯାକ । ୧୯ । ଯେଠାବକୁ ଖୁଲ୍ଲଣା ଯେ ବେଗେ
ଚଳିଗଲେ । ପତର ଗୋଟାଏ ସେ ଛିଣ୍ଡାଇ ଅଣିଥିଲେ ॥ ଜ୍ୟେଷ୍ଠପୁତ୍ର ନାମ
ତାର ଅଟେ ଶିଖିଗୋବିନ୍ଦ । ଧାଇଁ ଯାଇଁ ଧଇଲା ସେ ଖୁଲ୍ଲଣାର ହସ୍ତ । ୨୧ ।
ସତର ଭାଇମାନଙ୍କୁ ଡାକିଲା ସେ ପୁଣି । ଧାଇଁଆସ ଚୋରଗୋଟି ଧରିଅଛି
ଜାଣି । ୨୨ । ତତକ୍ଷଣେ ସର୍ବେ ସେ ଯେ ବେଢିଣି ଧଇଲେ । ମନ୍ଦିରରେ
ତାଙ୍କୁ ନେଇ ଯତନେ ରଖିଲେ ॥ ବାହୁଣୀ ବୋଇଲା ଏ ତ ଖୁଲ୍ଲଣା ସୁନ୍ଦର ।
ଅଠରଜଣ ପଡ଼ିଲେ ପାଦତଳେ ତାର । ୨୪ । ବୋଇଲେ ଭେ ମାତ ଅମ୍ଭ
ଦୋଷ କ୍ଷମାକର । ଚିହ୍ନି ନ ପାରିଲୁ ଅମ୍ଭେ ଅଜାର ବାନ୍ଧର । ୨୫ ।
ଧନେଶ୍ୱର ବଜାର ଯେ ମହାଦେଈ ଅଟୁ । ଅମ୍ଭେ ଯେ ପରଜା ତୋର
ପାଦତଳେ ଖଟୁ । ୨୬ । ନସୁନାସୁନ୍ଦରୀ ତୋତେ ଦେଉଅଛି ଦୁଃଖ । ତୁମ୍ଭର
ମନ୍ଦିରେ ଅବା ନାହିଁ କେଉଁ ସୁଖ ॥ ଏଥିକୁ ଅନ୍ଧାର ବନ୍ଦେ ଅଇଲ କାହାଇ ।
ତାହା ଶୁଣିକରି ସେ ଯେ ଖୁଲ୍ଲଣା କହଇ । ୨୮ । କି କରିବ କର୍ମ ମୋର
ବାମ ଅଟେ ଯେଣୁ । ସୁଖେ ଥାନ୍ତି ଡଜଣୀ ଯେ ଦୁଃଖ ଦେଲା ତେଣୁ । ୨୯ ।
ଛେଳିମାନଙ୍କୁ ମୋହର ହାତରେ ରଖାଇ । ଶୀତକାଳେ ବସ୍ତ୍ର ଖଣ୍ଡେ
ପିନ୍ଧିବାକୁ ନାହିଁ । ୩୦ । ଖାଇବା ନିମନ୍ତେ ତାକୁ ମାଗିଲଇଁ ଯହୁଁ । ପତର

ନେବାକୁ ମୋତେ ପେଷିଲୁକ ତହୁଁ ॥ ତେଣୁ ତୁମ୍ଭଠାକୁ ଯେ ନୟନା ଚଳିଗଲା । ଧାଇଁ ଯାଇ ବ୍ଲୈର ବୋଲି ତୁମ୍ଭଙ୍କୁ କହିଲା । ୩୧ । ଜାଣିବାରେ ତୁମ୍ଭର ଅସୂତ୍ର କିଛି ନାହିଁ । କାହିଁ ପାଇଁ ତୁମ୍ଭଦୋଷ ବାଛିବଇଁ ମୁହିଁ । ୩୨ । ଏହା ଶୁଣି ସମସ୍ତେ ଯେ ପାଦରେ ପଡ଼ିଲେ । ଆଳା ନାଥ ମାତ ଅସ୍ମେ ଦେଉଛୁ ବୋଇଲେ । ବସ୍ତ୍ରଖଣ୍ଡିଏକ ଦେଲା ତେଲର କୁମର । ତାହା ଘେନ ଖୁଲଣା ଚଳିଲା ତତପର ॥ ନୟନା ପାଶରେ ଯାଇଁ ପ୍ରବେଶ ହୋଇଲା । ଦିଅ ଗୋ ଭଉଣି କିଛି ଖାଇବି ବୋଇଲା । ସେ ବୋଇଲା ଏ ଆଳାକ ପାଇଲୁ ତୁ କାହିଁ । ବ୍ଲୈବକର କେଉଁଠାରୁ ଅଣିଅଛୁ ତୁହି । ୩୬ । ଖୁଲଣା ବୋଇଲେ ତେଲି ଦେଇଅଛି ମୋତେ । ଖୁଞ୍ଜିକର ସମର୍ପିବ ତାହାର ଅଗ୍ରତେ ॥ ଏଡ଼େ ଅଜ୍ଞାନ ପାମରୀ ଅଟଇ ଯେ ସେହି । ବୋଇଲା ଏ ଆଳା ଲୁଗା ମୋହର ଅଟଇ ॥ ବ୍ଲୈବକର ନେଇ ତୁ ଯେ ଭଣ୍ଡୁଅଛୁ ମୋତେ । ଚୋର ଭଣ୍ଡାଇଲେ ଆଳା ମୁଁ କି ଦେବି ତୋତେ ॥ ଏହା କହି ନୟନା ପୁରକୁ ଚଳିଗଲା । ବିମନା ବୋଲିଣ ରାଣୀ ଅଗରେ କହିଲା । ୪୧ । ଖୁଲଣାସୁନ୍ଦରୀ ସେ ଯେ ମାଗୁଅଛି ଗ୍ରାସ । ଅନ୍ନ ମୁଠା ଏକ ଦିଅ ଗୋଳାଇଣ ବିଷ । ୪୨ । ଏବଚନ ଶୁଣିକରି ଚଳିଣ ସେ ଗଲା । ଅନ୍ନ ମୁଠାଏକ ସେ ଯେ ହସ୍ତରେ ଅଣିଲା । ୪୩ । ସ୍ତମ୍ଭୀଭୂତ ହୋଇଣ ସେ ମନେ ବିଚାରଇ । ଏଥିରେ କେମନ୍ତେ ବିଷ ଗୋଳାଇବି ମୁହିଁ ॥ ପୂର୍ବ ଜନ୍ମରେ କେତେ ମୁଁ ପାପ ଅରଜିଲି । ଏ ଜନ୍ମରେ ରାଜା ଘରେ ଅଣ୍ଟୁକୁଡ଼ା ହେଲି । ୪୫ । ଜାଣୁ ଜାଣୁ ଏହା ନ କରିବି କଦାଚିତେ । ନୟନାସୁନ୍ଦରୀ ପଛେ ମାରୁ କିନା ମୋତେ । ୪୬ । ଏମନ୍ତ ବିଚାରି ସେହି ଅନ୍ନ ଘେନିଗଲା । ନୟନାସୁନ୍ଦରୀ ଅଗେ ନେଇ ଦେଖାଇଲା ॥ ତା ଦେଖି ନୟନା କହେ ବିମନାକୁ ଚାହିଁ । ଏତେ ଗୁଡ଼ା ଅନ୍ନ ତୁ ଅଣିଲୁ କାହିଁ ପାଇଁ । ୪୮ । ଗୋଳାଇଣ ବିଷ ଦିଅ ମୋହର ସମ୍ମୁଖରେ । ଖୁଞ୍ଜିବାକୁ ନେଇ ଦିଅ ଖୁଲଣା ଅଗରେ ॥ ଏ ବଚନ ଶୁଣିକରି ବିମନା ବୋଲଇ । ଅତ ଅନ୍ୟାୟ କଥା ତୁ କରୁ କାହିଁପାଇଁ ॥ ଏକେତ ଗର୍ଭିଣୀ ହୋଇଅଛି ଦଣମାସ । ଏହାକୁ ମାରିଲେ ସେ ହୋଇବ

ପ୍ରାଣେ ନାଶ ।୫୧। ନାନା ତୀର୍ଥ ବ୍ରତ କଲେ ଏ ପାପ ନ ଛାଡ଼େ । ଅନ୍ତଃ-କାଳେ କୁମ୍ଭୀପାକ ନର୍କରେ ସେ ପଡ଼େ । ୫୨ । ତୁମ୍ଭେ ଏମନ୍ତ କଥା କହୁଛ କାହିଁ ପାଇଁ । କନ୍ୟନା ବୋଇଲା ବଡ଼ ଧର୍ମୀ ଅଟୁ ତୁହୁ । ୫୩ । ଏତେ ଧର୍ମ ଅର୍ଜି କେତେ ସମ୍ପଦ ଅର୍ଜିଲୁ । ଏ ଜନ୍ମରେ ରାଜା ଘରେ ଅଣ୍ଟୁକୁଡ଼ୀ ହେଲୁ ॥ ତୁମ୍ଭେ ହେ ରାଜାର ଅଠ ଶତେ ମହାଦେଈ । କାହାର କୋଳରେ ପୁତ୍ର ଜନ୍ମ ହେଲା ନାହିଁ । ୫୫ । ତାହାର ଗର୍ଭରୁ ଯେବେ ପୁତ୍ର ଜାତ ହେବ । ରାଜାର ସୁହାଗୀ ରାଣୀ ସେହୁ ବୋଲାଇବ ।୫୬। ତୁମ୍ଭେ କେ ପାମର ଏହା ନ ଚିନ୍ତ ମନକୁ । ସେଥିପାଇଁ ବିଷ ମୁହିଁ ଦେଉଛି ତାହାକୁ ।୫୭। ଏମନ୍ତ କହିଣ ଅନ୍ନ ଛଡ଼ାଇଣ ନେଲା । ବିଷ ନେଇ ଆପଣା ହସ୍ତରେ ଗୋଳାଇଲା ॥ ଲଉପଦ ଗୋଟିକରେ ସମର୍ପିଲା ନେଇ । ଲୁଣ ସହିତରେ ଯେ ଭଜଣି କିଛି ନାହିଁ ॥ ଖାଇ ବସିଲେ ପାଳକ ପେଟ ନ ପୂରିବ । ଅଦୃଷ୍ଟରେ ଅଛି ସେହୁ ଏବେ କ କରିବ । ୬୦ । ମଙ୍ଗଳାକୁ ଲାଗି ଦେଇ ସୁଖେ ସେ ପାଇଲା । ଉଚ୍ଛିଷ୍ଟ ନାଦାର ଯାଇ ଗୁହାଳେ ଶୋଇଲା । ୬୧ । ଏମନ ସମୟେ ଦେହ ଝିମି ଝିମି ହୋଇ । ବିଚାରିଲା ଏଥର ନିଶ୍ଚୟେ ମରିବଇଁ ॥ ଅନ୍ନରେ ମୋର ଭଜଣୀ ଗୋଳି ଦେଲା ବିଷ । ନ ଜାଣି ଅନ୍ନକୁ ମୁହିଁ କରିଗଲି ଗ୍ରାସ ॥ ମୋର ମରିବାକୁ ଜାଣ ଚିନ୍ତା ନାହିଁ କିଛି । କେବଳ ବାଳକ ମୋର ଗର୍ଭରେଣ ଅଛି । ୬୪ । ଜୟ ଜୟ ଶାରଳା ଗୋ ଅଭୟ ମଙ୍ଗଳା । ଏ ଦୁଃଖରୁ ରଖ ମୋତେ ଏକଇର ବଳା । ୬୫ । ଯେବେ ମୁଁ ବଞ୍ଚିଣ ପୁତ୍ର କୋଳରେ ଧରିବ । ଅଶ୍ୱିନୀ ମଙ୍ଗଳବାର ବ୍ରତ ମୁଁ କରିବି । ୬୬ ।

———o———

## ମଙ୍ଗଳାଙ୍କ ସ୍ତୁତି

ଜୟ ମଙ୍ଗଳା ହରମୋହିନୀ ଗୋ
ମୋତେ ତୁ ରଖ ସିଂହବାହିନୀ ଗୋ । ପଦ ।
ଅଶେଷ ମାୟା ତୋର ବ୍ରହ୍ମାଙ୍କୁ ଅଗୋଚର
ନାମ ଅଭୟବର ଦାୟିନୀ ଗୋ । ୧ ।

ଦୁଃଖକାଳେ ଶ୍ରୀରାମ .. ଧଇଲେ ତୋର ନାମ
କୃପା କଲୁ ଦୁର୍ଗତିନାଶିନୀ ଗୋ । ୨ ।
ସୁର କଷ୍ଟ ନିବାରି ମହିଷାସୁରକୁ ମାରି
ନାମ ବହୁ ମହିଷାମର୍ଦ୍ଦିନୀ ଗୋ । ୩ ।
ସିନ୍ଧୁ ରାଜାର ସୁତା ଜଗତ ଜନ ମାତା ।
ପାଳୁ ଯେ ନବଖଣ୍ଡ ମେଦିନୀ ଗୋ । ୪ ।
ଭଣେ ଦୀନ ଭିକାରୀ ମୋତେ ତୁ କୃପା କର
ନାହିଁ ଟଙ୍କଡ଼ପୁରବାସିନୀ ଗୋ । ୫ ।

---

ଏହା କହୁଁକହୁଁ ଅଚେତନ ହେଲା । ପଞ୍ଚଭୂତ ଆମ୍ଭରେ ତା ଜ୍ଞାନ ନ ରହିଲା । ୬୭ । ଖୁଲ୍ଲଣାର କଷ୍ଟ ସେ ମଙ୍ଗଳା ଜାଣିଲେ । ଦୁଃଖ ପେଡ଼ିବାକୁ ମାଏ ବାହାର ହୋଇଲେ । ୬୮ । ଓଷା କଲା ନାରୀ ଯେବେ ଏମାନ ଶୁଣିବ । ମଙ୍ଗଳାଙ୍କୁ ସ୍ମରଣେ ସେ ହୁଳହୁଳି ଦେବ ॥ ସଭାମଧ୍ୟେ ଯେତେଜନ ଶୁଣିବାକୁ ଥିବ । ଦୁଃଖନିବାରଣୀ ବୋଲି ହରିବୋଲ ଦେବ ॥ ଧୀବର ଭିକାରୀ ନିତ ଭାବଇ ମଙ୍ଗଳା । ସଙ୍କଟ କାଳକୁ ଯାର ନାମ ଅଟେ ଭେଳା । ୭୧ ।

---

## ଦ୍ୱାଦଶ ଛାନ୍ଦ

ରାଗ—ତୋଡ଼ି ଏକତାଳୀ

ଶୁଣ ହେ ସୁଜନ ଜନ । ମଙ୍ଗଳା ଚରିତ ମାନ । ଘୋର ସଙ୍କଟରୁ ଉଦ୍ଧାର କରିବେ ଟୁଲଣାର ଦୁଃଖମାନ । ହେ ସୁଜ୍ଞଜନ ॥ ଶୀଘ୍ରେ ସିନ୍ଧୁର କୁମାରୀ । ଅସେ ବୃଦ୍ଧା ରୂପ ଧରି । ତୁଣ୍ଡ ମଧ୍ୟରେ ଗୋଟିଏ ଦନ୍ତ ନାହିଁ ପକ୍ୱବାଳ କେଶ କେଶ । ସେ ପକ୍ୱଗୋସି । ୨ । ସର୍ବାଙ୍ଗ ଶୁଖି ଗଲାଣି । ଗୃହୁଁ ଗୃହୁଁ ସେ କାମିନୀ । କଷ୍ଟକୁ ଜଣି କରି ସେ ବେନି ନେତ୍ର କପାଳକୁ ଗ୍ରାହିଲାଣି । ଦେହ ଟଳେଣି । ୩ । ଡନି କୁଜ ତା ପିଠିର । ଦୁଇ ଗୋଡ଼ ତା ଗୋଦର । ଅଣ୍ଟିରୁ ପିଈଁଡ଼ା ବହି ପଡ଼ୁଅଛି ତାକୁ ନ ଶୁଭେ

କର୍ଣ୍ଣରେ । ସେ ଅରହର ॥ ପିନ୍ଧିଛନ୍ତି କଳା କନା । ସେ ତ ସାଗର ନନ୍ଦନା । କେଉଁ ଦ୍ରବ୍ୟ ଅବା ଅପୂର୍ବ ହୋଇଛୁ କଉତୁକେ ଭୁଙ୍ଗି ଥିନା । ସେ କୋହେ ମନା । ୫ । ତା ପାଶେ ପ୍ରବେଶ ହେଲେ । ଚେତନା ନାହିଁ ଦେଖିଲେ । ତୋଳି ନେଇ ମାଏ କୋଳେ ବସାଇଲେ ଏମନ୍ତ କମ୍ପ ବୋଇଲେ । ଆସ ହେ ସ୍ଥିରେ । ୬ । କେ ଅବା କହିଲା କଥ । କ ଅବା ତୋର ଢବଷ । କ ଅବା ଗରଳ ଦେଲା ତୋ ଭଉଣୀ ଦେଖିଥିଲେ କହ ପାଶ । ନୃହ ବରଷ । ୭ । ମଙ୍ଗଳା କହନ୍ତି ଏହା । ସେ କାହିଁ ଶୁଣିବ ତାହା । ଗରଳ ଭକ୍ଷି ଯେ ଅଚେତେ ପଡ଼ିଛି ତନୁଯାକ ହୁଏ ଦାହା । ତାହାର କାଯ୍ୟା ।୮। ମଙ୍ଗଳା କୋଳରେ ଧରି । କର୍ଣ୍ଣ ଫୁଙ୍କିଲେ ତାହାରି । ଅମୃତ ଅଷିଣୀ ମୁଖରେ ସିଞ୍ଚିଲେ । ଚେତନା ପାଇଲା ନାରୀ । ଦର୍ଶନ କରି । ୯ । ବୋଇଲା ମାତାଙ୍କୁ ଚାହିଁ । ପ୍ରାଣ ଚେତନା ଥିଲା ନାହିଁ । ତୁମ୍ଭ ଦେହ ଲାଗି ସୁଫଳ ହୋଇଲା କଳୁଷ ଦେଲି ମୁଁ ଦହି । ମା କଲୁ ଚାହି । ୧୦ । ମୋତେ ଯେତେ ଦୁଃଖ ଦେଲା । ତାହା ମୋ ଦେହ ସହିଲା । ଅନ୍ନର ଭିତରେ ଗରଳ ପୂରାଇ ଭୁଞ୍ଜିବାକୁ ସମର୍ପିଲା । ଜଣା ନ ଗଲା । ୧୧ । ହରଷେ କଲି ମୁଁ ପାନ । ହଜିଲା ମୋହର ଜ୍ଞାନ । ଏ ଦୁଃଖୁ ମୋତେ ତୁମ୍ଭେ ନ ରଖିଲେ ଗର୍ଭେ ମରନ୍ତା ନନ୍ଦନ । ସତ୍ୟ ବଚନ । ୧୨ । ଶୁଣି ମଙ୍ଗଳା ହରଷ । ବସାଇ ତାହାଙ୍କୁ ପାଶ । ଲଡ଼ୁ ଦୁଇଗୋଟି ହସ୍ତରେ ସମର୍ପି ମନସୁଖେ କରି ଗ୍ରାସ । ନୃହ ବରଷ ।୧୩। ଭୋକ ହିଁ ତୋର ହରିବ । ଅଜଦିନେ ନ କରିବ । ନସୂନାକୁ ତୁହି ଅନ୍ନ ମାଗିବୁ ସେ କାଳେ ବଷ ଭାଙ୍ଗିବ । କେହୁ ଜାଣିବ ॥ ଏତେ କହନ୍ତେ ଈଶ୍ୱରୀ । ପେଟ ବଥାଏ ତାହାରି । ବୋଇଲା ହେ ମାତ କଷ ମୁଁ କରିବି ପ୍ରାଣ ଛାଡ଼ିଯିବ ଧରି । ହେଳା ନ କରି । ୧୫ । ମଙ୍ଗଳା ଯାଇଁ ଧଇଲେ । କଙ୍କାଳରେ ହାତ ଦେଲେ । ଭଗ୍ନମୂଳ ଅନ୍ତେ ଶ୍ରୀବନ୍ତ କୁମର ଗର୍ଭରୁ ବାହାର ହେଲେ । କ ଶୋଭା ଭଲେ । ୧୬ । ଅବନୀ ମଧ୍ୟରେ ପଡ଼ି । କୁଆଁ କୁଆଁ ରାବ ଛାଡ଼ି । ଖୁଲଣା ସୁନ୍ଦରୀ ଦୁଃଖ ପାଇ ଗଲା ଅଚେତେ ପଡ଼ିଲା ନାରୀ । ସେ ଜାନୁ କରି ।୧୭। କେତେବେଳରେ

ଚେତନା । ପାଇଲା ନୃପନନ୍ଦନା । ଦେଖିଲା ଭୂମିରେ ପୁତ୍ର ପଡ଼ିଅଛି ଅହୋ
ମୋ କାଳିଅସୁନା । ନବ ନବୀନା । ୧୮ । ଅଧ ମୋ ଦୁଃଖୀ ପକ୍ଷୀ ।
ତୁ ମୋର ନେତ୍ରପିତୁଳି । ଏମନ୍ତ କହିଣ ହସ୍ତ ବଢ଼ାଇଣ କୋଳେ ବସା-
ଇଲା ବାଳୀ । ସେ ମନେ ଭାଳି । ୧୯ । ଶ୍ରୀପତି ପାଶୋର ଗଲା । ପଦ୍ମ
ନନ୍ଦନ ପାଇଲା । ମଙ୍ଗଳା ଚରିତ ଛନ୍ଦେ ଛନ୍ଦେ ଲେଖି ଭିକାରୀ ଗୀତେ
ଗାଇଲା । ଶୁଣ ହେ ଭଲା । ୨୦ ।

---

## ତ୍ରୟୋଦଶ ଛାନ୍ଦ

ରାଗ—ସିନ୍ଧୁଡ଼ା

ଶୁଣ ହେ ସୁଜନ ଦେଇ ମନ କର୍ଣ୍ଣ ଏଥି ଉତ୍ତାରେ କାହାଣୀ ।
ପାଇଲା କୁମର ଖୁଲଣାସୁନ୍ଦର ବେନି ନେତ୍ରୁ ବହେ ପାଣି ସେ । କଲା
ଅନେକ ଶୋକ । ଧାତା ଅଟୁ ଏଡ଼େ ଅବିବେକ । ୧ । ଏହି ସମୟରେ କାନ୍ତ
ଯେବେ ଥାନ୍ତେ ଦେଖନ୍ତେ ପୁତ୍ରର ମୁଖ । ଗୁଗୁଡ଼ା ଘରୁ ଜୁର କରୁଥାନ୍ତେ
ହୁଅନ୍ତା ବହୁତ ସୁଖ ସେ । ପ୍ରଜା ସୁଖେ ରହନ୍ତେ । ବିପ୍ରେ ଧନ ରତ୍ନ
ନେଉଥାନ୍ତେ ସେ । ୨ । କାହିଁ ଖଟ ଦୋଳି ବାଜିଅ ପଲଙ୍କ ପଡ଼ିଥାନ୍ତା
ନିରନ୍ତର । ସୁବର୍ଣ୍ଣ ପାତ୍ରରେ ନାଭି କାଟନ୍ତେଣ ଦୋଳାରେ ଥାନ୍ତୁ କୁମର
ସେ । ଏହା ତୋ କର୍ମେ ଥିଲା । ଛେଳି ଗୁହାଳେ ଜନମ ଦେଲା । ୩ । ଏ
ପୁତ୍ର ତୋହର ଦୁଃଖ ନିବାରିବ ଅନେକ ସୁଖ କରିବ । ଅଠର ବରଷେ
ତୋହର ଗେରସ୍ତ ଅଇଲେ ସୁଖ କରିବୁ ସେ । ହେବୁ ସୁଭାଗୀ ରାଣୀ ।
ତୋତେ ଖଟିବେ କେତେ ଖଟଣୀ ସେ । ୪ । ଏମନ୍ତେ ମଙ୍ଗଳା କହନ୍ତେଣ
ଅବା ମନରେ ହରଷ ହେଲା । ଶାମୁକା ଗୋଟିଏ ଘେନିଣ ହସ୍ତରେ ପୁତ୍ରର
ନାଭିକାଟିଲା ସେ । ତାକୁ ଯତନେ ରଖି । ମାତା କରାଇବେ ତାକୁ ସୁଖୀ
ସେ । ୫ । ପଞ୍ଚୁଅତି ବିଧି ଯତନେ କରାଇ ଷଠିଘର ସେ କାଟିଲେ । ମଙ୍ଗଳା
ମାତା ବିଜୟେ କରନ୍ତି ଷଠିଦୁଆରୀ ଯେ ଅଇଲେ ସେ । ମାତା ଆଜ୍ଞା ତୁ
କର । କି ଲେଖିବା ବାଳକ କର୍ମର ସେ । ୬ । ଏ ବଚନ ଶୁଣି କହେ

ଠାକୁରାଣୀ କାପାଇଁ ପଚାରୁଛୁ ମୋତେ । ତୋର ମନେ ଯାହା ଅଛିବ ଲେଖିବୁ
ବାଳକ ଲଲାଟ ପଟେ ସେ । ତୁ ତ ମୋଠାରୁ ବଡ଼ । ଯାହା ଲେଖିବୁ
ସେ ସବୁ ଦୃଢ଼ ସେ । ୭ । ଶୁଣି ଷଷ୍ଠୀଦେବୀ ହରଷ ହୋଇଣ କପାଳେ
ଲେଖନ କଲେ । ଅଢ଼ାଇପଦ ଅକ୍ଷର ଲେଖିଦେଇ ମଙ୍ଗଳା ଆଗେ କହିଲେ
ସେ । ଶୁଣ ତୁମୋର ବଚନ । ଯାହା ବାଳକ କର୍ମ ଲେଖନ ସେ ।୮। ଏମନ୍ତ
ମୁଁ ତାର କର୍ମରେ ଲେଖିଲି ଅନେକ ସୁଖ କରିବ । ଦ୍ୱାଦଶ ବରଷେ
ସୁଦର୍ଶନ ରାଜା ଝିଅକୁ ବିଭା ହୋଇବ ସେ । ଆଉ କଥାଏ ଅଛି । ତୋର
ଆଗେ କହିଦେବା ବାଛୁ ସେ । ୯ । ତା ଶୁଣି ମଙ୍ଗଳା ବୋଇଲେ ବଚନ
କପାଇଁ ତୁ ଭୟ କରୁ । ନିର୍ଭୟ ହୋଇଣ କହ ମୋ ଆଗରେ ମୋ ମନ
ସନ୍ତାପ ସହୁ ସେ । ମୁହିଁ ଯିବଇଁ ପ୍ରତେ । ବାରେ ଶୁଣାଅ ଶ୍ରବଣ ପଥେ
ସେ । ୧୦ । ବେନି କର ଯୋଡ଼ି ମାତ ଷଷ୍ଠୀଦେବୀ ବୋଲେ ମଙ୍ଗଳାଙ୍କ
ଆଗ । ଏକୋଇଶ ଦିନେ ଏହି ବାଳକକୁ ଅଛଇ ମାରକ ଯୋଗ ସେ ।
ନବଗ୍ରହେ ବେଢିବେ । ତାର ପିଣ୍ଡୁ ପ୍ରାଣ କାଢିନେବେ ସେ । ୧୧ । ତା
ଶୁଣି ମଙ୍ଗଳା ବୋଲନ୍ତି ବଚନ କୁହ ଏଥିର ଚରିତ । କେମନ୍ତ ପ୍ରକାରେ
ବାଳକ ବଞ୍ଚିବ ହେଲା ବଡ଼ ବିପରୀତ ସେ । ଏତେ ଦୁଃଖ ସହିଲା । ପୁତ୍ର
ସୁଖଦେଖି ନ ପାରିଲା ସେ ।୧୨। ଷଷ୍ଠୀଦେବୀ ବୋଲେ ମାତାଙ୍କ ଅଗ୍ରତେ
ଶୁଣ ସିନ୍ଧୁର ଦୁହିତା । ତୁମ୍ଭେ ଯେବେ ତାଙ୍କୁ ପ୍ରସନ୍ନ ହୋଇବ କା କରିବେ
ଗ୍ରହପନ୍ତି ସେ । ଏହା କହିଲେ ସ୍ନେହେ । ତାହା ଖୁଲଣା ଜାଣଇ ନାହିଁ ସେ ॥
ମଙ୍ଗଳାଙ୍କ ପାଦେ ପ୍ରଣମିତ କରି ଚଳିଲି ନିଜ ମନ୍ଦିରେ । ଖୁଲଣା ନିକଟେ
ମଙ୍ଗଳା ରହିଲେ ପୁତ୍ରକୁ ଘେନି ଅଙ୍ଗରେ ସେ । ବାର ରାତି ଭିଆଇ । ବିଦାୟ
ମାଗିଲେ ମଙ୍ଗଳାମାଈ ସେ ॥ ବୋଇଲେ ଶୁଣ ଗୋ ପଣ୍ଡୁ ବିମ ସୁତା ଯିବଇ
ମୋର ପୁରକୁ । ଦ୍ୱାଦଶ ଦିବସ ଏଠାରେ ରହିଲି ସମ୍ଭାଳ ତୋର ପୁତ୍ରକୁ
ସେ । ଦୁଃଖ ନ ପଡ଼େ ଯେଣେ । ପୁତ୍ର ଛାଡ଼ି ନ ଯିବୁଟି କେଣେ ସେ ॥
ଏହା ଶୁଣି କରି ଖୁଲଣା ସୁନ୍ଦରୀ ମଙ୍ଗଳାଙ୍କୁ ବୋଲେ ବାଣୀ । ତୁମେ ଯେବେ
ମୋତେ ଛାଡ଼ିକରି ଯିବ କେମନ୍ତେ ବଞ୍ଚିବ ପୁଣି ସେ । ଦିଅ ଗରଳ ବିଷ ।

ପୁତ୍ର ନେଇଯାଅ ତୁମ୍ଭ ପାଶ ଯେ ॥ ଏହା ଶୁଣିକରି ମଙ୍ଗଳା ମାତା ଯେ ସୁଧୀରେ ବୋଲନ୍ତି ବାଣୀ । ତୋହର ବଇରୀ ନୟନା ଅଟଇ ଛାଡ଼ ନ ଯିବୁଟି ପୁଣି ଯେ । ତୋତେ କହୁଛି ମୁହିଁ । କେବେ ଜଷତ ନୋହିବୁ ଭୂହି ଯେ ॥ ଖୁଲଣା ସୁନ୍ଦରୀ ବୋଲଇ ଗୋ ମାତ ତୁମ୍ଭେ ମୋତେ ଛାଡ଼ିଯିବ । ତୁମ୍ଭେ ଏଥୁ ଗଲେ ନୟନା ସୁନ୍ଦରୀ ପୁତ୍ରକୁ ନଷ୍ଟେ ମାରିବ ଯେ । ମୁଁ ଯେ ବଡ଼ଇ ଦୁଃଖୀ । ମୋତେ କରାଇବ କିଏ ସୁଖୀ ଯେ । ୧୮ । ତା ଶୁଣି ମଙ୍ଗଳା ବୋଲନ୍ତି ବଚନ ଏମନ୍ତ କମ୍ପାଇ ହେଉ । ତୋତେ ବିପଦରୁ ଉଦ୍ଧାର କରିବ ପୁତ୍ର ତୋର ସୁବୃଦ୍ଧି ଆଉ ଯେ । ଏତେ କହି ଚଳିଲେ । ନିଜ ଭୁବନେ ଯାଇ ମିଳିଲେ ଯେ । ୧୯ । ଶୁଣ ହେ ସୁଜନେ ଏଥୁ ଅନନ୍ତରେ କଥା ଯେଉଁପରି ହେଲା । ଖୁଲଣା ସୁନ୍ଦରୀ ପୁତ୍ର ପାଳୁଥାଏ ଏକୋଇଶ ଦିନ ହେଲା ଯେ । ସେ ଦିନର ଚରିତ । ଏକ ମନେ ଶୁଣ ହେ ଜଗତ ଯେ । ୨୦ । ସେ ଦିନ ପ୍ରଭାତୁଁ ଉଠିଣ ଖୁଲଣା ପୁତ୍ରକୁ କୋଳେ ଧଇଲା । କୁଙ୍କୁମ ତାହାର ଶରୀରେ ଲେପିଣ ସ୍ନାହାନ କରାଇ ଦେଲା ଯେ । ନେତ୍ରେ ଦେଲା କଜ୍ଜଳ । ଦେହ ଦିଶିଲା ଅତି ଉଜ୍ଜ୍ୱଳ ଯେ । ୨୧ । କ୍ଷୀର ପାନ ତାଙ୍କୁ ଯତନେ କରାଇ ଶୁଆଇ ଶେଯ ଉପରେ । ଖୁଲଣା ସୁନ୍ଦରୀ ସ୍ନାନ କରିଗଲା ପୁତ୍ରକୁ ଶୁଆଇ ଘରେ ଯେ । ଦେଲା କବାଟ କିଳି । ତରତରରେ ତହୁଁ ଗଲା ଚାଲି ଯେ । ୨୨ । ଯହୁଁ ସେ ଖୁଲଣା ସ୍ନାନ କରିଗଲା ସେ କଥା ନୟନା ଜାଣି । ତରତର ହୋଇ କବାଟ ଫିଟାଇ ମନ୍ଦିରେ ପଶିଲା ପୁଣି ଯେ । ପୁତ୍ର ରୂପକୁ ଦେଖି । ହୀନ ଯାଇ ପଡ଼ିଲା ସୁମୁଖୀ ଯେ । ୨୩ । ଦଇବ ଲିଖନ କେ କରିବ ଆନ କପାଳରେ ଯାହା ଅଛି । ଇନ୍ଦ୍ର ହର ବ୍ରହ୍ମା ବିଷ୍ଣୁ ସହିତରେ କେ ତାହା ଆନ କରୁଛି ଯେ । ଏହି ମନରେ ପୁଣି । କେଉଁଠାରେ କିଏ ଅଛି ଶୁଣି ଯେ ॥ ବୋଇଲାରେ ମନ ଦାରୁଣ ଦଇବ ପୋଡ଼େଯାଉ ତୋର ବୁଦ୍ଧି । ଏ ପୁତ୍ରକୁ କଣା କୁଜା ତୁ ନ କଲୁ ଦେହରେ ନ ଦେଲୁ ବ୍ୟାଧି ଯେ । କଲୁ ସୁନ୍ଦର ରୂପ । ଅନ୍ଧାର ଘରେ ଜଳୁଛି ଦୀପ ଯେ । ୨୪ । ଏ ସନକ ରୂପ ମୁଁରେ ଦେଖିଣ କେମନ୍ତେ ଧଇବି ମୁଁ ଘାତ ।

ମାର ପବାଳରେ କଳଙ୍କ ତ ଯିବ କାହିଁ ଏ ଥିବ ଧରଣୀ ଯେ । ପୋଡ଼ି-
ଯାଉ ତୋ ମୁଣ୍ଡ । ଲୁଣ ତେଲ ଦେଲା ତାର ତୁଣ୍ଡେ ଯେ ॥ ଜଙ୍ଗୁଲ ପାହାଙ୍କ
ପାଦତଳୁ ନେଇ ଗଳାରେ ପ୍ରହାର କଲା । କବାଟ କିଳଣୀ ଯନ୍ତ୍ର ହସ୍ତେ
ଦେଇ ପୁରକୁ ଗମନ କଲା ଯେ । ଗଲା ବୋଲି ତା ପ୍ରାଣ । ଏଥୁ ଅନ୍ତେ ଆନ.
ସ୍ଥିତ ଶୁଣ ଯେ ॥ ବାଳକର ପ୍ରାଣ ଯିବାର ସମୟେ ସର୍ବମଙ୍ଗଳା ଜାଣିଲେ ।
ମୃତ୍ୟୁପୁରୁ ଯାଇ ବାଳକ ଜୀବନ ଆପଣେ ମାତା ଆଣିଲେ ଯେ । ରଖି ତାଙ୍କ
ନିକଟ । କଲେ ଖୁଲଣା ମନ ଉଚ୍ଚାଟ ଯେ ।୨୮। ଗଣ୍ଡୁକୀ ନଦୀରେ ଖୁଲଣା
ସୁନ୍ଦରୀ ସ୍ନାହାନ ଯେ କରୁଥିଲା । ଛନ୍ଦ-ଛନ୍ଦ ମନ ହୁଅନ୍ତେ କାତରେ
ହୃଦରେ ବାହୁର କଲା ଯେ । କାହା ବାଳ ତନୟ । କାନ୍ଦୁଥିବ ଶେଯ ପରେ
ଶୋଇ ଯେ ॥ ଏମନ୍ତ ବାହୁର ତତକ୍ଷଣେ ଆସି ମନ୍ଦିରେ ହେଲା ପ୍ରବେଶ ।
ଘୋର ନିଦ୍ରାରେ ବାଳକ ଶୋଇଅଛି ଦେଖି ଖୁଲଣା ହରଷ ଯେ । ଓଦା
ବସ୍ତ୍ର ପାଲଟି । ଲବଣକୁ ପକାଇଲା ପାଟି ଯେ ।୩୦। ପୁତ୍ରକୁ ଯେ ନେଇ
କୋଳରେ ବସାଇ ମୁଖେ ଦେଲା କ୍ଷୀର ପାନ । ତେତେବେଳେ କି ବାଳକ
କ୍ଷୀର ଖାଏ ତାହାର ନାହିଁ ଜୀବନ ଯେ । ବୋଲେ ଘର ବୁଡ଼ିଲା । ମୋର
ପୁତ୍ରକୁ କିଏ ମାରିଲା ଯେ ।୩୧। ଦେଖିଲା ପୁତ୍ରର ବଦନରେ ପୁଣି ଲାଗି-
ଅଛି ଲୁଣ ତେଲ । ବାହୁରିଲା ମୋର ଭଉଣୀ କରିଛି ସାରିଦେଲା ମୋର
ଗେଲ ଯେ । ମୁହିଁ କି କର୍ମ କଲି । କାହିଁପାଇଁ ସ୍ନାହାନକୁ ଗଲି ଯେ ।୩୨।
ଏକଇର ବଳା କେତେ ଦୁଃଖେ ତୋତେ ପାଇଥିଲି ରେ କୁମର । ଆନ୍ଧାର
ଲଉଡ଼ି କେଣେ ଛାଡ଼ିଗଲୁ ମୋତେ ରଖି ଏକାନ୍ତର ଯେ । କପାଁ ଅଛି ମୋ
ପ୍ରାଣ । ତୋର ସଙ୍ଗେ ଯାଉ ନାହିଁ ପୁଣି ଯେ ।୩୩। ବଡ଼ ଭଉଣୀ ଯେ ଜାଣି
ଦୁଃଖ ଦେଲା ତାହା ସହୁଥିଲି ମୁହିଁ । ଗେରସ୍ତ ଚିନ୍ତା ମନରୁ ପାଶୋରିଥିଲି
ତୋହର ମୁଖକୁ ଚାହିଁ ଯେ । ତୁହି ଗଲୁ କେଣିକି । ମୁଁ କି ବୁଦ୍ଧି କରିବି
ଏଣିକି ଯେ ।୩୪। ଦାରୁଣ ବିଧାତା ଏତେ ତୋ ଅହନ୍ତା ଦେଇ ନିଧି
ହରି ନେଲୁ । କ୍ଷୁଧାର୍ତ୍ତୀ ଜନକୁ ଅମୃତ ପରଶି ମୁଣ୍ଡରେ ବଜ୍ର ପିଟିଲୁ ଯେ ।
ତହିଁ ନ ଥିଲା ଚିନ୍ତା । ପ୍ରାଣ ଯାଇଥିଲେ ଯାଇଥାନ୍ତା ଯେ ।୩୫। ଦଇବ

ଲୋକଙ୍କୁ କୋଟି ଧନଦେଇ ପଣ୍ଡାତରେ ନେଲୁ ହର । ନ ଦେଲେ ପୁତ୍ରକୁ ନ ଦେଇ ଆଅନ୍ତୁ ଜାଣନ୍ତି କର୍ମ ମୋହର ଯେ । ଏହା ପୁଣି ମୁଁ ଦେଖି । ମୋର ଫୁଟି ଯାଉନାହିଁ ଆଖି ଯେ । ୩୬ । ଏକଇର ବଳା ପାଇରେ କୁମର ମନରେ ଭାବୁଥିଲି । ବାରବ୍ରତ ମୁଁ ତୋ ଲାଗି କରୁ ଥାଇ ସୁଖେ ଦିନ ଯିବ ବୋଲି ଯେ । ଏହା କରମେ ଥିଲା । ଧାତା ମଝେ କମ୍ପା ଜନ୍ମ ଦେଲା ଯେ । ୩୭ । ରାଜା ଝିଅ ହୋଇ ରାଜା ପୁଅକୁତ ବାନ୍ଧା ହୋଇଥିଲି ମୁହିଁ । ଏହା ମୋ କପାଳେ ଲେଖା ହୋଇଥିଲା ଛେଳି ରଖିବାର ପାଇଁ ଯେ, ତାହା ଦେହ ସହିଲା । ଏତେ ପ୍ରକାରେ ଏ ଦୁଃଖ ଦେଲା ଯେ । ୩୮ । ଏମନ୍ତ ପ୍ରକାରେ ରୋଦନ କରଇ ପରଶୁରାମ ଦୁହିତା । କ୍ଷଣେ କ୍ଷଣକେ ଅବନୀରେ ପଡ଼ିଣ କୋଡ଼ଇ ଆପଣା ମୁଣ୍ଡ ଯେ । କେଣେ ଗଲୁ କହାଇ । ମୋର ଶୋକ ତୋତେ ଶୁଭୁ ନାହିଁ ଯେ । ୩୯ । କେତେ ଦିନ ପାଇଁ ମଝେ ଜନ୍ମ ହେଲୁ ନ ଦେଖିଲୁ ପିତାମୁଖ । ମହୀରେ ଭୋଗ ତୁ କରି ନ ପାରିଲୁ ଥିଲା କରମରେ ଦୁଃଖ ଯେ । ସୁଖ ଭୁଞ୍ଜିବ କିଏ । କେଣେ ଗଲେ ମୋ ମଙ୍ଗଳା ମାଏ ଯେ । ୪୦ । କେତେ ବିପତ୍ତିରୁ ମୋତେ ରଖିଥିଲ ଏବେ ମୋ ଦୁଃଖ ନ ଶୁଣ । ଏ ରତ୍ନ ଭଣ୍ଡାର ମୋତେ କମ୍ପା ଦେଲ ହାରିବି ମୁଁ ଏବେ ପ୍ରାଣ ଗୋ । ତୁନି କରାନ୍ତେ ଦାସୀ । ମଙ୍ଗଳା ମା ପ୍ରବେଶିଲେ ଆସି ଯେ । ୪୧ । ଖୁଲଣା ନିକଟେ ପ୍ରବେଶ ହୋଇଲେ ଶଇଳନନ୍ଦନୀ ଯାଇ । ବୋଇଲେ କମ୍ପାଇ ରୋଦନ କରୁଛୁ ପୁତ୍ରକୁ କୋଳେ ଦିଆଇଣ ଗୋ । ଆଣ ମୋର କୋଳକୁ । ଛଡ଼ାଇଣ ନେଲେ ବାଳକକୁ ଯେ । ୪୨ । ସ୍ୱୟଂ କମଳାମୀ ଜଗତଜନନୀ ପୁତ୍ରକୁ ଜୀବନ ଦେଲେ । ନିଅ ତୋ ପୁତ୍ରକୁ କ୍ଷୀର ପାନ ଦିଅ ଖୁଲଣା କୋଳକୁ ଦେଲେ ଯେ । ହେଲା ମନେ ହରଷ । ଜନେ ମଙ୍ଗଳା ନାମକୁ ଘୋଷ ଯେ । ୪୩ । ଖୁଲଣା ବୋଇଲା ଭୋ ମାତ ମୋହର ଦୋଷ କ୍ଷମାକର ଏତେ । କାଟି ବିଘ୍ନ ବାଳକକୁ ନ ପଡ଼ିବ ସୁଖରେ ଥିବ ଜଗତେ ଯେ । ଏହି ଆଜ୍ଞା ତୁ କର । ଅସ୍ତୁ ବୋଲି କହିଲେ ମୁଖର ଯେ । ୪୪ । ବୋଇଲେ ମଙ୍ଗଳା ଯେଉଁଣ ବାଳକ ଆଅ ତୁ ଏହି ମନ୍ଦିର ।

ଆଜ ତୋ ପୁଅକୁ ଗ୍ରହ ପୀଡ଼ା ଥିଲା ସବୁ ହୋଇଗଲା ଦୂର ଯେ । ଏବେ
ସୁଖରେ ଥିବ । ଆଉ ବନ୍ଧୁ କଷ୍ଟ ନ ପଡ଼ିବ ଯେ । ୪୫ । ଏମନ୍ତ ପ୍ରକାରେ
କହିଣ ମଙ୍ଗଳା ଶୂନ୍ୟରେ ଗମନ କଲେ । ନିଜ ମନ୍ଦିରରେ ଖୁଲ୍ଲଣାସୁନ୍ଦରୀ
ଆନନ୍ଦ ମନେ ରହିଲେ ଯେ । ଯେଉଁଣ ଶିରୀଧର । ଦାନ ଧ୍ୟାନ କରନ୍ତି
ଅପାର ଯେ । ୪୬ । ସେହିଦିନୁ ଆଉ ପୁତ୍ରକୁ ତାହାର ଛାଡ଼ିଣ କେଉଁଣେ ନ
ଯାଏ । ଯେବେ ଯାଏ ଦଣ୍ଡେ ପଦ୍ମଣ୍ଡେ ମଣେଇ ଦାସୀଙ୍କୁ ହକାର କହେ ଯେ ।
ତୁ ଲୋ ତରୁଣୀ ଶୁଣ । ଶ୍ରୀଧରକୁ ଜଗିଥାଅ ପୁଣୋ ଯେ । ୪୭ । ଏମନ୍ତ
ପ୍ରକାରେ କଷ୍ଟ ଦିନ ଯାନ୍ତେ ନବ ମାସ ହୋଇଗଲା । ଶ୍ରୀବନ୍ତ କୁମର ଓଷ୍ଠ
ମଧ୍ୟେ ପୁଣି ଦୁଇ ଦୁଇ ଦନ୍ତ ହେଲା ଯେ । ଗେଲ କେ ପାରେ କହି ।
ସେହି ଭୂମିରେ ପୁଣି ଖେଳଇ ଯେ । ୪୮ । ଓଷ୍ଠ ମଧ୍ୟରୁ ଯେ ନାଲି
ପଡ଼ଯନ୍ତେ ଲାଳ ଗଳୁଥାଇ ତାର । କେତେବେଳେ ତାଳି ବଜାଇ ଖେଳଇ
ଆବର ଗଡ଼େ ଭୂମିର ଯେ । ଖାଏ ମୁଖରେ ମାଟି । ତାହା ମାତା ଯେ
ପକାଏ ଛାଟି ଯେ । ୪୯ । ଏମନ୍ତ ଖୁଲ୍ଲଣା ମନରେ ବାଞ୍ଛିର ପଡ଼ିଲା ମନେ
ତାହାର । ମାଉସୀ ପାଖରେ ତୋତେ ମୁଁ ଦିଅନ୍ତି ଭୋଗ କରନ୍ତୁ ଅପାର
ଯେ । କିମ୍ପା ତାହା କରିବ । ମାତା ପ୍ରସନ୍ନେ ସୁଖ ଭୁଞ୍ଜିବ ଯେ ॥ ମାତାଙ୍କ
ଚରଣେ ଖୁଲ୍ଲଣାସୁନ୍ଦରୀ ହୃଦପଦ୍ମେ ଚିନ୍ତା କଲା । ଦିନୁ ଦିନ ପୁତ୍ର ଅତ୍ୟନ୍ତ
ବଢ଼ନ୍ତେ ଦେଖି ମନେ ବାଞ୍ଛିଲା ଯେ । ଶୁଣ ଶଇଳସୁତା । ବାରେ ରଖ
ମୋତେ ଘୋର ଚିନ୍ତା ଯେ । ୫୧ । ତତକ୍ଷଣେ ଶୂନ୍ୟ ମଙ୍ଗଳା ମାତା ଯେ
ଖୁଲ୍ଲଣା ପୁରକୁ ଗଲେ । କିମ୍ପାଇ ମନରେ ଚିନ୍ତା କରୁଅଛୁ ମୋର ଆଗେ
କହ ବୋଲେ ଯେ । ଶୁଣି ଖୁଲ୍ଲଣାନାରୀ । ପାଦେ ପଡ଼ିଲା ପ୍ରଣାମ କରି
ଯେ । ୫୨ । ବୋଇଲା ହେ ମାତ ମୋ ବଚନ ଶୁଣ ନ ରହିବ ଏହି
ସ୍ଥାନ । ଏହି ସ୍ଥାନରେ ସୁଖ ଭୋଗ ଭୁଞ୍ଜନ୍ତି ମାରିବ ମୋର ନନ୍ଦନ ଯେ ।
କେତେ ଜଗିବି ମୁହିଁ । ପୁତ୍ର ଖେଳୁଥିଲା ହୋଇଲାଣି ଯେ ।୫୩। ବୋଇଲେ
ମଙ୍ଗଳା ମୋର ବୋଲ ଶୁଣ ଏ ସୁଖ ଭୋଗ ଛାଡ଼ିବୁ । କେଉଁ ନଗ୍ରେ ଥିବୁ
ଏ ସୁଖ ପାଇବୁ ବାଳୁତ କୁମର କେବୁ ଯେ । ଏହା ମନେ ବାଞ୍ଛିବ ।

ଘେନି ଚଳିଲେ ଖଲ୍ଲଣା ନାରୀ ସେ । ୫୪ । ସକଳ ଶିଷ୍ୟ ସମ୍ପଦକୁ ଘେନିଣ ସେଠାରୁ ବାହୁଡ଼ି ଗଲା । ସୁକାନ୍ତ ବୋଲିଣ ଗୋଟିଏ ବନସ୍ତ ତହିଁରେ ଯାଇଁ ମିଳିଲା ସେ । ଧାତା କ କ ନ କରେ । ଦୁଃଖ ଦେଉଥାଏ ସୁଖ ପରେ । ୫୫ । ସେ ଗ୍ରାମ ମଧ୍ୟରେ ମଙ୍ଗଳା ମାଆ ଯେ ବୁଲିଲେ ସକଳ ସ୍ଥାନ । ସିନ୍ଦୂର ଦୁହିତା ଖୋଜିଣ ପାଇଲେ ବ୍ରାହ୍ମଣ ଶାସନ ପୁଣ ସେ; ନାମ ଅରତ କର । ଘର କରିଦେଲା ସେଠାବର ସେ । ୫୬ । ସେ ସ୍ଥାନରେ ତାଙ୍କୁ ମଙ୍ଗଳା ରଖିଣ ଆକାଶ ମାର୍ଗେ ଚଳିଲେ । ଖଲ୍ଲଣାସୁନ୍ଦରୀ ନିଶ୍ଚିନ୍ତେ ରହିଲା ମଙ୍ଗଳା ସୁମରି ଭଲେ ସେ । ପୁତ୍ର କାଖରେ ହୋଇ । ମହା ସୁଖରେ ଦିନ ବଞ୍ଚଇ ସେ । ୫୭ । ବେଲ୍ଲ ସୁବେଲ୍ଲ ଯେ ବ୍ରାହ୍ମଣ କୁମର ଦୁଇଗୋଟି ତହିଁ ଥାନ୍ତି । ଖଲ୍ଲଣା ବାଳକ ପୁଣି ତାଙ୍କ ସଙ୍ଗେ ଖେଳୁଥାଏ ନିତ ପ୍ରତି ସେ । ହେଲା ପାଞ୍ଚ ବରଷ । ଦେଖି ଖଲ୍ଲଣା ମନେ ହରଷ ସେ । ୫୮ । ଧ୍ରୁବାନନ୍ଦ ବୋଲି ନାୟକ ଗୋଟିଏ ବିଦ୍ୟା ପଢ଼ାଉଛି ସେହି । ଖଲ୍ଲଣାସୁନ୍ଦରୀ ଧ୍ରୁବାନନ୍ଦ ପାଶେ ପୁତ୍ରକୁ ପାଠ ପଢ଼ାଇ ସେ । କହେ ପାଠ ପଢ଼ାଅ । ମାସି ବରତନ ନେଉଥାଅ ସେ । ୫୯ । ଆବର ଗୋଟା ଦଶ ବାର ପନ୍ଦର ସେଠାରେ ପାଠ ପଢ଼ନ୍ତି, ଖଲ୍ଲଣାର ପୁତ୍ର ତହିଁରେ ପଢ଼ିଲା ତାଙ୍କ ସଙ୍ଗେ ନିତ ପ୍ରତି ସେ । କିବା ମାତା ପ୍ରସନ୍ନ । ବିଦ୍ୟା ପଢ଼େ ଖଲ୍ଲଣା ନନ୍ଦନ ସେ । ୬୦ । କହୁଁ କହୁଁ ସବୁ ବିଦ୍ୟା ସେ ପଢ଼ିଲା ଗୁରୁଠାରୁ ଶତେ ଗୁଣ । ଦେଖିଣ ଶ୍ରୀଗୁରୁ ଆନନ୍ଦ ହୋଇଲେ ବୁଝାଇଲେ ତାଙ୍କୁ ଜ୍ଞାନ ସେ । ରଖିଥାନ୍ତି ନିକଟ । ହେଲା ସର୍ବପରେ ବଡ଼ଗୁଣ । ୬୧ । ଗୁରୁ ଯେତେବେଳେ ମନ୍ଦିରେ ନ ଥାନ୍ତି ସେ ସମସ୍ତଙ୍କୁ ପଢ଼ାଏ । ଏଡ଼େ ଶାନ୍ତମୂର୍ତ୍ତି ଦୟାଳୁ ମହତ୍ତ୍ୱ କାହାକୁ କିଛି ନ କହଇ ସେ । ସେ ତ ମଙ୍ଗଳା ପୁଅ । ତାଙ୍କୁ ମଙ୍ଗଳା ହୁଅନ୍ତି ସାହ୍ୟ ସେ । ୬୨ । ଗୁରୁଙ୍କର ଯେତେ ମାସୀ ବରତନ ଖଲ୍ଲଣା ତାହା ଦିଅନ୍ତି । ସେହି ଅବା ତାହୁଁ କଉଡ଼ି ଅଣନ୍ତା ଠାକୁରାଣୀ ଦେଉଥାନ୍ତି । ସେ ତାର ଏତେକ ବୁଦ୍ଧି । ସେ ତ ଅଟଇ ଖଲ୍ଲଣାନିଧି ସେ । ୬୩ । ଏକ ଦିନେ

ପୁତ୍ର ବାଧ୍ୟା ପଡ଼ିଥିଲା ହସ୍ତରେ ଘେନଣ ଖଡ଼ୀ । ଗେଲେ ଗେଲେ ହସ୍ତ ଛୁଆଁଡ଼ ଦିଅନ୍ତେ ତତକ୍ଷଣେ ଗଲା ଗଡ଼ ସେ । ଥିଲା ସାଧବବଳା । ଡ଼େଇଁ ଯାଇଁ ଖଡ଼ୀକି ଅଣିଲା ସେ । ୬୪ । ସେନାପତି ବୋଲି ନାମ ଭା ଅଛଇ ବୋଇଲା ଖଡ଼ୀ ନ ଦେବ । ଶୀଘ୍ରେ ଅଇଲେ ତାଙ୍କୁ ମୁଁ କହଣ ମାଡ଼ ତୋତେ ·ଖୁଆଇବ ରେ । ଅରେ ଅଣବାବୁଅ । ବାପ ନ ଥାଇ ଏଡ଼େ , ଖେଳୁଅ ରେ । ୬୫ । ବାପ ନ ଥିବାରୁ ଏଡ଼େ ଖେଳୁଅଳା ପଣ ତୋହର ନ ସରେ । ବାପ ଯେବେ ତୋର ଦୁନିଆରେ ଥାନ୍ତା ନ ବୁଲନ୍ତୁ ଅବନୀ-ରେ ସେ । ତୁ ରେ ଏଡ଼େ ଅଜ୍ଞାନ । ମାଅ ତୋର କ୍ଷୁଣ୍ଟିଥିବ ଧାନରେ ॥ ଶୁଣି ଏ ବଚନ ବାଳୁତ ନନ୍ଦନ ପୁରକୁ ଗମନ କଲା । ତତକ୍ଷଣେ ଗୁଅ ଗୋଟିଏ ଅଣିଣ ସାଧବ ପୁଅକୁ ଦେଲା ସେ । ତାହୁଁ ଅଣିଣ ଖଡ଼ୀ । ଘରେ ଶୋଇଲାକ ମୁହଁ ମାଡ଼ି ସେ । ୬୭ । କେତେବେଳେ ମାତା ଘରକୁ ଅସିଣ ଦେଖିଲା ପୁତ୍ର ଶୋଇଛି । ଉଠ ଉଠ ମୋର ଦୁଃଖୀର ଧନ ଘର ଲବଣୀ ରନ୍ଧିଛି ସେ । ବେଗେ କର ଭୋଜନ । ଅଜ କାହିଁକ ବିରସ ମନ ସେ ।୬୮। ଚଟଶାଳୀ ମଧ୍ୟେ ଗୁରୁଦେବ ତୋତେ ମାରିଅଛନ୍ତିକି ଛାଟ । କି ଅବା ତୋତେ ସେ ବାଳକେ ମାଇଲେ କହ ତୁ ମୋର ନିକଟ ସେ । କେବା ଦେଇଛି ଗାଳି । ମୁଣ୍ଡେ ପଡ଼ିଛି ବହୁତ ଧୂଳି ସେ । ୬୯ । ଉଠ ଉଠ ବାବୁ ବାଳୁତ ଶ୍ରୀଧର ଦେଖଇ ତୋହର ଦେହ । ଛାଟ ଚିହ୍ନ ତୋର କେଉଁଅଡ଼େ ଅଛି ଅଖିରୁ ବୋହୁଛି ଲୁହ ରେ । ଏଡ଼େ ଚିନ୍ତା କାହିଁକି । କିବା ପେଟ ପୂରିଲା ନାହିଁକି ରେ ।୭୦। ନ ଛାଡ଼ିବ ତୋତେ ବାଧ୍ୟା ପଢିବାକୁ ଘଣସୁ କହ ତୁ ମୋତେ । ଅଦୋଷରେ ଯେବେ ଗୁରୁ ମାରିଥିବେ ଉଠାଇ ଅଣିବି ତୋତେ ରେ । ଯେବେ ମିଛେ ମାରିଛି । ସେତିକିଲି ତୋତେ ଶିଖାଇବ ରେ ।୭୧। ଏମନ୍ତ ପ୍ରକାରେ କହିଣ ଖୁଲଣା ପୁତ୍ରକୁ କୋଳେ ଧଇଲା । ପାଦଠାରୁ ଶିର ପର୍ଯ୍ୟନ୍ତ ତାହାର ମାଡ଼ ଚିହ୍ନ ନ ଦେଖିଲା ସେ । କିଛି ଦେହରେ ନାହିଁ । ମିଛେ ବୋଧ କରୁ କାହିଁ ପାଇଁ ରେ ।୭୨। ମାତାଙ୍କ ବଚନ ଶୁଣିଣ ଶ୍ରୀଧର ଅଖିରୁ ବୋହିଲା ଲୁହ । ବୋଇଲା କାହିଁକି ମୋତେ ପାରୁଛୁ ପିତା ମୋର କାହିଁ

କହ ଗୋ । ଦଶା ଏତେକ ସିନା । ଆଉ କାହିଁରେ ନାହିଁ ଭାବନା ଗୋ ॥
ମୁହିଁ ତ ଜାଣଇ ମୋହର କପାଳେ ବିଧାତା ଲେଖିଛି ଦୁଃଖ । ତୋତେ ପୁଣି
ମୁହିଁ ତାହା କହୁନାହିଁ ମୋତେ କାହୁଁ ଦେବୁ ସୁଖ ଗୋ । ଅମ୍ଭ କପାଳେ
ଏତେ । ଅଛମ୍ଭ ଭୋଗ କରିବା ତା ସତେ ଗୋ । ୭୪ । ଏମନ୍ତ ବଚନ
କହନ୍ତେ ନନ୍ଦନ ଖଳଣା ଶୁଣି ହରଷ । ଏ ସ୍ତ୍ରୀର କଥାକୁ କୁମର ମନରେ
କରୁଅଛୁ କେତେ ତୋଷ ସେ । ତୋତେ କହୁଛି ମୁହିଁ । ତୋର ପିତା ଅଛି
ଯେଉଁଠାଇଁ ସେ । ୭୫ । ଏହି ରାଜ୍ୟରେ ଯେ ପିତାଙ୍କର ନାମ ଧନେଶ୍ୱର
ବୋଲି ଅଟେ । ଦାସୀ ପରିବାରି ପୋଇଲି ମଞ୍ଜିରୀ ଶୋଇଛନ୍ତି ରତ୍ନ ଖଟେ
ଯେ । ଘରେ ବହୁତ ଧନ । ତାର ଜନ୍ମ ନୋହିଲା ନନ୍ଦନ ସେ । ୭୬
ଶତେ ଦୁଇଗୋଟା ଯୁବତୀ ତାଙ୍କର ନସୃଜନା ଯେ ପାଟରାଣୀ । ଏକା ମାତା
ଗର୍ଭେ ଜନମ ହୋଇଲୁ ସେ ମୋର ବଡ଼ ଭଉଣୀ ସେ । ଦୁଃଖ କହିବି
ଯେବେ । ପୋଥି ଖଣ୍ଡିଏ ହୋଇବ ତେବେ ସେ ।୭୭। ତାଙ୍କୁ ମୋର ଭାଇ
ବାଭା କରାଇଲା ଚଉଧାର ଖୋଲେ ହାର । ତୋହର ପିତା ଯେ ରାଜ୍ୟ ପାଳୁ-
ଥିଲା ପରଜାଙ୍କୁ ଯତ୍ନ କରି ସେ । ଏକ ଦିନେ ପ୍ରଭାତେ । ହାଡ଼ି ଗୋଟାକୁ
ଦେଖିଲା ନେତେ ସେ । ୭୮ । ସେ ହାଡ଼ି ବୋଇଲା ତୋ ପିତାଙ୍କୁ ଦେଖି
କି କର୍ମ କରିଲି ମୁହିଁ । ପ୍ରଭାତୁ ଉଠିଣ ଏଠାକୁ ଆସିଣ ଅପୁତ୍ରିକ ମୁଖ ଚାହିଁ
ସେ । ରାଜା ଏକଥା ଶୁଣି । ତାଙ୍କ ମରମ ହୋଇଲା ହାଣି ଯେ । ୭୯ ।
ବୋଇଲେ ମୁହିଁ ଏ ରାଜ୍ୟରେ ନ ରହି ନଷ୍ଟେ ଯିବି ଦେଶାନ୍ତର । ହାଡ଼ି
ଗୋଟା ଯେବେ ଏହା କହିଲାଣି ଧିକ ତ ଜୀବନ ମୋର ସେ । ସେ ଯେ
ବାହାର ହେଲେ । ମନା କଲି ମୁଁ ସେ ନ ମାନିଲେ ସେ ।୮୦। ସେକାଳେ
କୁମର ଅଢ଼ାଇ ମାସର ମୋର ଗର୍ଭେ ଥିଲୁ ତୁହି । ତେତେବେଳେ ତୋହ
ପିତାଙ୍କୁ କହିଲି ସମ୍ମତ ନ କଲେ ସେହି ସେ । ମୁହିଁ ନଷ୍ଟେ ଯିବି । ପୁତ୍ର
ହେଲେ ତ ନଷ୍ଟେ ଆସିବି ସେ ॥ ଏମନ୍ତ କହିଣ ତୋହର ପିଅର ବିଦେ-
ଶକୁ ଚଳିଗଲେ । ବିରୂପା ଦେଶରେ ସୁଦର୍ଶନ ରାଜା ତାଙ୍କୁ ବନ୍ଦିରେ ରଖିଲେ
ସେ । ଭାଷା ଆସିଣ ମିଳି । ଏହି କଥା ସିନା ଜଣା ଗଲା ସେ ।୮୧। ସନ୍ଧ୍ୟ

ତୋର ପିତା ବିଦେଶକୁ ଗଲେ ଭଗ୍ନୀ ମୋର ପାଟରାଣୀ । ଛନ୍ଦ କରି ମୋତେ
ମାରିବା ନିମନ୍ତେ ବିଷ ସେହୁ ଦେଲା ଆଣି ସେ । ନ ଜାଣି ମୁଁ ଖାଇଲି ।
ମୂର୍ଚ୍ଛା ଯାଇ ଅବନୀ ପଡ଼ିଲି ସେ ।୮୩। ମଙ୍ଗଳା ମାତା ଯେ ତହୁଁ ଉଦ୍ଧାରିଲେ
ତୁ ଥାଉ ଗର୍ଭେ ମୋହର । ଅନ୍ତୁରି ଲୁହାର ଢିଙ୍କି ଆଣି ଦେଲା ଧାନ ତୁ କୁଟି
ଏଥିର ସେ । ଦେଖି କାତର ହେଲି । ଚିତ୍ତେ ମଙ୍ଗଳାଙ୍କୁ ସୁମରିଲି ସେ ।୮୪
ସେ ଦୁଃଖରୁ ମୋତେ ରଖିଲେ ନିଶ୍ଚିନ୍ତେ ଶୈଳସୁତା ସାହା ହୋଇ । ଅଣୀ-
ପଚିଶ କଳଶୀ ଆଣି ଦେଲା ପାଣି ଦିଅ ତୁ ବୁହାଇ ସେ । ସୁମରି ସେ
ମାତାଙ୍କୁ । ପାଣି ଆଣି ନିରେ ଦେଲି ତାଙ୍କୁ ଯେ ।୮୫। ପୁଣି ମୋତେ ନେଇ
ଛେଳି ରଖାଇଲା କପାମଞ୍ଜି ଦେଲା ଭାତ । ତାହା ଖାଇ ମୁଁ ଯେ ଉଦର
ପୋଷିଲି ରଖିଲେ ମଙ୍ଗଳା ମାତ ଯେ । ତୁହି ଜନମ ହେଲୁ । ତୋତେ
ମାଇଲା ତୁହି ଯେ ମଲୁ ରେ ।୮୬। ବହୁତ ରୋଦନ କଲିରେ କୁମର ମଙ୍ଗଳା
ଦେଲେ ବଞ୍ଚାଇ । ଦିନ କେତେ ମୁହିଁ ସେଠାରେ ରହିଲି ଆସିଲେ ମଙ୍ଗଳା-
ମାୟୀ ସେ । ମାତା ପ୍ରସନ୍ନେ ଏତେ । ମୁହିଁ ବିଦ୍ୟା ପଢ଼ାଇଲି ତୋତେ
ରେ ।୮୭। ସେହିଠାରେ ରାଣୀ ସମସ୍ତେ ଅଛନ୍ତି ପୁତ୍ର କାହା କୋଳେ ନାହିଁ!
ପାଞ୍ଚ କରି ପୁତ୍ର ତୋତେ ସେ ମାରିବେ ଆଇଲି ତହୁଁ ପଳାଇ ସେ । ଯାଇ
ଦେଖି ତୁ ଆପେ । ତାଙ୍କ ଘର ଅଛି ସେହିରୂପେ ସେ ।୮୮। ଅନ୍ତୁରି
କଥା ଏ ଶୁଣରେ ନନ୍ଦନ ତୋ ଆଗେ କହୁଛି ମୁହିଁ । କେମନ୍ତେ ଉପାୟ ଦାସୀ
ପରିବାସ ପିତା ଦେଇ ଥିଲେ ଯାଇ ସେ । ତୋର ଜୀବନ ପାଇଁ । ସବୁ ଛାଡ଼ିଣ
ଆଇଲି ମୁହିଁ ସେ ॥ ମାତାଙ୍କ ବଚନ ଶୁଣିଣ ନନ୍ଦନ ମନରେ ହରଷ ହେଲା ।
ଏତେ ଧନ ଦ୍ରବ୍ୟ ଥାଇ ମୋହ ଲାଗି ପିତା ପରବାସ ଗଲା ସେ । ମୁହିଁ ଯିବଇଁ
ଆଣି । ମୋତେ ସୁଖରେ କରି ମେଲାଣି ଗୋ ।୯୦। ଏହା ଶୁଣି କରି
ଖୁଲଣା ସୁନ୍ଦରୀ ବୋଇଲା ଆରେ କୁମର । ଏକଇର ବଳା କେଣେ ଛାଡ଼ି-
ଯିବୁ କରିଣ ମୋତେ ଅନ୍ତର ସେ । ତୁଣ୍ଡେ ନ ବୋଲ ଏହା । ଶୁଣି ତନୁ
ହେଉଅଛି ଦାହା ସେ ।୯୧। କେତେ କେତେ ଦୁଃଖ ପାଇ ରେ କୁମର
ଏବେ ମୁଁ ପାଇଛି ତୋତେ । ତୁ ପୁଣି କେମନ୍ତେ ଏହା କହୁଅଛୁ ସମ୍ଭବ ନ

ଲାଗେ ମୋତେ ରେ । ତୋର ବଚନ ଶୁଣି । ପିଣ୍ଡୁ ପ୍ରାଣ ଛାଡ଼ଯାଏ ପୁଣି
ରେ । ୯୨ । ଏମନ୍ତ କହୁଛୁ ମୁଁ କ ଛାଡ଼ଦେବ ଦେଶ ବିଦେଶ ବୁଲିବୁ ।
ଗଳାର ହାର ମୁଁ କରିଅଛି ତୋତେ ତୁ ପୁଣି କେଣିକି ଯିବୁ ରେ । ଆରେ
କୁଳ ନନ୍ଦନ । କ୍ଷମା କରୁ ଏମନ୍ତ ବଚନ ରେ । ୯୩ । ଶୁଣି ଶିରୀଧର
ବୋଲଇ ବଚନ ଶୁଣସି ଆଗୋ ଜନନୀ । କିଛି ଚିନ୍ତା ତୁହି ମନରେ ନ
କରି ସୁଖରେ ଦିଅ ମେଲାଣି ଗୋ । ପିତା ପାଶକୁ ଯିବି । ବନ୍ଦଘରୁ ମୁକୁଳା
ଅଣିବି ଗୋ । ୯୪ । ପୁତ୍ରର ବଚନ ଶୁଣିଣ ଖୁଲଣା ମନେ ମହାକ୍ରୋଧ
ହେଲା । ଅତିକ ନାଶିନୀ ବେଦନ ଶୁଣିଣ ତକ୍ଷଣେ ଆସି ମିଳିଲା ସେ । ଖୁଲ-
ଣାକୁ ଚାହିଁଣ । କ୍ଷମା କରୁଛୁ ଏତେ ବେଦନ ଲୋ । ୯୫ । ବୋଇଲେ
କ୍ଷମାଇ ବେଦନ କରୁଛୁ ପାଇଅଛୁ କୋଟି ଧନ । ଆଜ କେଉଁ କଥା ଭାବନା
କରୁଛୁ ମନରୁ ଛାଡ଼ ଗୁମାନ ସେ । ମୋତେ କହ ଲୋ ପୁଣି । ପ୍ରତେ ଯିବଇଁ
ତାହା ମୁଁ ଶୁଣି ସେ । ୯୬ । ଖୁଲଣା ସୁନ୍ଦରୀ ବୋଲେ ପ୍ରିୟ କରି କାହିଁରେ
ମୋ ଚିନ୍ତା ନାହିଁ । ଏକଇର ବାଳା କୁମର କହୁଛି ବିଦେଶକୁ ଯିବାପାଇଁ
ସେ । ଶୁଣି ତାର ବଚନ । କେମନ୍ତେ ଧରିବି ମୁହିଁ ଜୀବନ ସେ । ୯୭ । ତା
ଶୁଣି ମଙ୍ଗଳା ବୋଇଲେ ଅବଳା ଏମନ୍ତ କ୍ଷମାଇ ହେଉ । ପୁତ୍ରକୁ ତୋହର
ସୁଖେ ଛାଡ଼ିଦିଅ ପିତାର ନିକଟେ ଯାଉ ସେ । ତାକୁ ଯାହା ହୋଇବ ।
ତାର ପିତାକୁ ମୁଁ କହିଦେବ ସେ । ୯୮ । ଯେତେ ଯେତେ ଦୁଃଖ ପଡ଼ିବ
ତାହାକୁ ତହିଁରୁ ମୁହିଁ ରଖିବ । ଫୁଲୁଣା ହୋଇ ତୁ ମନରେ ରହିବୁ ମୋ
କଥା ହୃଦରେ ଭାବ ସେ । କିଛି ଚିନ୍ତା ନ କର । ବିଦା କର ତୁ ଖୁସି
ମନର ସେ । ୯୯ । ଖୁଲଣା ବୋଲଇ ଶୁଣ ମହାଦେଈ କେମନ୍ତେ ମୋ
ପୁତ୍ର ଯିବ । ବୋଇତକୁ ପିତା ଘେନି ଯାଇଅଛି କାହୁଁ ଆଉ ସେ ପାଇବ
ଗୋ । ମାତା ତାହାକୁ ଦିଅ । ଜାହାଜରେ ଚଢ଼ି ଯିବ ପୁଅ ଗୋ । ୧୦୦ ।
ଖୁଲଣା ବଚନ ଶୁଣିଣ ମଙ୍ଗଳା ଶୂନ୍ୟକୁ ଚାହିଁଣ ଦେଲେ । ଆକାଶମାର୍ଗକୁ
ଚାହିଁଣ ଦିଅନ୍ତେ ବୋଇତ ପୁଣି ଆସିଲେ ସେ । ତାକୁ କୁମର ଦେଖି ।
ମନେ ବହୁତ ହୋଇଲା ସୁଖୀ ସେ । ୧୦୧ । ଖୁଲଣା ସୁନ୍ଦର ଶ୍ରୀମନ୍ତ କୁମର

ତୁହେଁ ହରଷ ହୋଇଲେ । ମଙ୍ଗଳା ମାତା ଯେ ବୋଇତ ଦେଇଣ ନିଜ ମନ୍ଦିରକୁ ଗଲେ ସେ । ତକ୍ଷଣେ ଯେ ବାହାର । ହୁଳହୁଳି ଦିଅ ସବ୍ବ ନାରୀ ସେ । ୧୦୨ । ପ୍ରଥମ ପାଳି ତ୍ରୟୋଦଶ ଛାନ୍ଦରେ ଭିକାରୀ ସମ୍ପୂର୍ଣ୍ଣ କଲା । ଶୁଣିବ ସୁଜନ ଜନମାନେ ସେହୁ ଯେପରି ଦୃଶ୍ୟ ହୋଇଲା ସେ । ତାହ ଲେଖିଲି ମୁହିଁ । ମୋର ଦୋଷ ବାଛିବାକୁ ନାହିଁ ସେ । ୧୦୩ ।

## ଚତୁର୍ଦ୍ଦଶ ଛାନ୍ଦ

ବନ୍ଦଇ ଶ୍ରୀ ଗଣନାଥ ଗଉରୀ ନନ୍ଦନ । ସ୍ଥୂଳ ଉଦର ନାଥ ଇନ୍ଦୁର ବାହନ । ୧ । ଜବା କୁସୁମ ଜିଣିଣ ତୋର ତନୁ ଦିଶେ । ଦ୍ୱିମ ଦ୍ୱିମ ପଦ ଝରୁ ରଜନୀ ଦିବସେ । ୨ । ତିନିପୁରେ ବ୍ରହ୍ମାଣ୍ଡରେ ଅଗେ ତୋତେ ପୂଜା । ଗଙ୍ଗାଧର ତାତ ତୋର ଜନନୀ ଗିରିଜା । ୩ । ଅମୃତ ଲଡ଼ୁରେ ତୁହି ସଦାକାଳେ ତୋଷ । ବ୍ୟାଘ୍ର ଚର୍ମ ପରିଧାନେ ହେଉ ତୁହି ବେଶ ॥ ତୋର ଦୟା ହେଲେ ମୂର୍ଖ ପଣ୍ଡିତ ହୁଅଇ । ତୋର ନାମ ଗୋଟି ବ୍ରହ୍ମା ଅଗେ ଉଚ୍ଚାରଇ । ୫ । ତୁ ଏବେ ମୋହର କଣ୍ଠେ ଅସି ଭଜେକର । କହିବ ମଙ୍ଗଳା କଥା ଦୟା ହେଲେ ତୋର । ୬ । ବନ୍ଦଇ ଅମ୍ବିକା ମାଗୋ ମନ୍ଦର ଅବଳା । ସଙ୍କଟ ତାରଣୀ ମା ଗୋ ଅଭୟା ମଙ୍ଗଳା । ୭ । ଝଙ୍କଡ଼ ପୁରେ ରହିଲୁ ଶାରଳା ତୋ ନାମ । ବିନ୍ଧ୍ୟଗିରି ବାସିନୀ ତୁ ମୋହପାଲୁ ଭାମ । ୮ । ତୁ ଏବେ କରୁଣା ମୋତେ କର କଣ୍ଠରେ । କହିବ ମଙ୍ଗଳା କଥା ସୁଜନ ହିତରେ ।୯। ତୋହର ଚରଣେ କଥା କହିବଇଁ ମୁହିଁ । ମାହାଙ୍କ କଣ୍ଠରେ ମୋର ବସିଥିବୁ ତୁହି । ୧୦ । ସୁଜନ ଜନେ ମୋହର ନ ଘେନିବ ଦୋଷ । ଦୃଶ୍ୟହେଲା କଥାମାନ କରୁଛି ପ୍ରକାଶ । ୧୧ । ଧନେଶ୍ୱର ରାଜା ଯେ ରହିଲା ବନ୍ଦଘରେ । ଶ୍ରୀଧର କେମନ୍ତେ ଯିବ ତାକୁ ଅଣିବାରେ ।୧୨। ତହିଁର ବୃତ୍ତାନ୍ତ ସବୁ କହିବ ବୁଝାଇ । ପଦେ ପଦେ ଶୁଣନ୍ତେ ଅମୃତ ରସ ଏହି । ୧୩ । ମଙ୍ଗଳା ମାତା ଚରଣେ ପଶ ହେ ଶରଣ । ହୁଳହୁଳି ଦିଅ

ମାତ ସିମନ୍ତିନୀଗଣ । ୧୪ । ଶରଣ ପଶେ ଭକ୍ତକାରୀ ପଦ୍ମପାଦ ତଳେ । ଚତୁ-
ର୍ଦ୍ଦଶ ଛନ୍ଦ କରି ଅସିଛୁ ସୁତଳେ । ୧୫ ।

## ଅଧ୍ୟାୟ—୬

ରାଗ—ଆଷାଢ଼ ଶୁକ୍ଳବାଣୀ

ଶୁଣ ସାବଧାନେ ସୁଜନଜନ । ଶ୍ରୀବନ୍ତ କୁମର ବୋଲେ ବଚନ
ଜନନୀ ମେଲାଣି ତୁ ମୋତେ କର । ସୁଖେ ଯାଇ ଆଣିବି ମୁଁ ପିଅର । ପୂରକୁ
ଆସିବି । କମ୍ପାଇ ମନେ ହେଉଅଛୁ ଭାବି । ୧ । ଖୁଲ୍ଲଣା ବୋଲଇ ଯିବୁ
ପ୍ରବାସ । ମାଉସୀଠାରୁ ବିଦା ହୋଇ ଆସ । ସେ ପୁଣି ପଶ୍ଚାତେ କହିବେ
ପରି । ନ କହି ପ୍ରବାସ ଗଲା ପୁତୁରା । ମୋତେ ତ ନ କହିଲା । ପଶ୍ଚାତେ ଦଣ୍ଡ
ପଡ଼ୁଥିବ ପରି ।୨। ସେ ପୁଣି ଅମ୍ଭଙ୍କ କୁଟୁମ୍ବ ଭିନ୍ନ । ଦେଖା କରିବାରେ
ଧର୍ମ ବିଧାନ । ପିଉସୀ ମାଉସୀ କେ କାହା ମାତା । ମାସୀ ଅଚରଣ ସକଳ
କଥା । ହେ ସୁଜନ ଜନେ । ସତ ମିଛ ଏହା ବିଚାର ମନେ ।୩। ତୁ ଯାଅ
ଥରେ ମାଉସୀ ନିକଟ । ନମସ୍କାର କରି ଆସରେ ତୁଠ । କୁମର ବୋଇଲା
ଶୁଣ ଜନନୀ । ମାଉସୀ ଘର କେଉଁଠାରେ ପୁଣି । ନ ଦେଖିଲି ଦିନେ ।
ମାଉସୀ ଅଛନ୍ତି କେଉଁ ବିଧାନେ । ୪ । ତା ଶୁଣି ଖୁଲ୍ଲଣା ମନରେ ଖୁସି ।
ତୋର ସଙ୍ଗେ ଜଣେ ମୁଁ ଦେବି ପେଷି । ସଖୀ ସହୋଦର କେ ମୋର
ନାହିଁ । ସଙ୍ଗାତୁଣୀ ମୋର ଅଛି ଏଠାଇଁ । ମୁଁ ଅଣାଇ ତାକୁ । ଏମନ୍ତ
କହିଲା ନିଜ ପୁତ୍ରକୁ । ୫ । ଆପଣେ ତହୁଁ ବେଗେ ଚଳିଗଲା । ବ୍ରାହ୍ମଣ
ମନ୍ଦିରେ ପ୍ରବେଶ ହେଲା । ତାହା ଘରେ ଥିଲା ଏକଇ ଦାସୀ । ନାମ
ତାହାର ଅଟଇ ସୁକେଶୀ । ବସିଲା ତା ପାଶ । ବୋଲେ ସଙ୍ଗାତୁଣୀ ଏଣିକି
ଆସ ।୬। ସେ ବୋଇଲା କିସ କହ ଗୋ ମୋତେ । ଶୁଣିଲେ ମୋର ମନେ
ଯାଇ ପ୍ରତେ । ଖୁଲ୍ଲଣା ବୋଇଲା ଶୁଣ ସଙ୍ଗାତ । ମାଉସୀ ଘର ଯିବ ମୋର
ସୁତ । ସେ ନା [illegible] ଯେଣୁ । ତୁମ୍ଭେ ନେଇ ଛାଡ଼ି ଆସିବ ତେଣୁ । ୭ ।
ଏହା ଶୁଣି ସେ ଯେ ହରଷ ହେଲା । ଶ୍ରୀଧରକୁ ସଙ୍ଗେ ଘେନି ଚଳିଲା ।
ଯାଇଁ ପ୍ରବେଶି-ଲା ମାଉସୀ ଘର [illegible] ପୂଜା ବସିଛି ପଲଙ୍କ ପର । ଦାସୀ

ହେଲା କହି । ଦେଖରେ ଶ୍ରୀଧର ମାଉସୀ ଏହି ।୮। ଦେଖି କରି ସୁତ ହରଷ
ମନ । ବେନି କର ଯୋଡ଼ି କଲା ଦର୍ଶନ । ଦାସୀ ବୋଇଲା ଶୁଣ ପାଟ-
ରାଣୀ । ପୁତ୍ରର ବର୍ଣ୍ଣନ କରୁଛି ପୁଣି । ଜମୁନା ବୋଇଲା । କେମନ୍ତ ପ୍ରକାର
ପୁତ୍ରର ହେଲା । ୯ । କହ ଲୋ ଦାସୀ ଏ କଥା ଅଛଇ । ଦେଖି ନ ଥିଲି
ଦିନେ ସ୍ୱାମୀ ମୁହିଁ । କେମନ୍ତ ପ୍ରକାରେ ପୁତ୍ରର ମୋର । ନାମ କହ ସେ
ବାହାର କୁମର । ଘର କେଉଁ ଦେଶେ । କାହିଁ ପାଇଁ ମୋର ପୁରକୁ
ଆସେ ।୧୦। ଦାସୀ ବୋଇଲା ଶୁଣ ପାଟରାଣୀ । ଖୁଲ୍ଲଣା ସୁନ୍ଦରୀ ତୁମ୍ଭ ଭଉଣୀ
ତାହାର ପୁତ୍ର ଏ ଅଟେ ଯୁକତେ । ଯାଉଛି ପିତାକୁ ଆଣିବା ଅର୍ଥେ ।
ତେଣୁ ସେ ଏଥକୁ । ଆସିଛି ମେଲାଣି ମାଗି ଯିବାକୁ ॥ ଶୁଣି ଜମୁନା ତରସ୍ତ
ହୋଇଲେ । ଶ୍ରୀଧର ମୁଖକୁ ଚୁମ୍ବି ପାଇଲେ । କି ଖୋଇ ଏତେ ବଢ଼ାଇଛି
ତୋତେ । ମରିବା ପାଇଁ ଏ ଦେହ ଯୁକତେ । ବଢ଼ିଛି ତୋହର । ଯୋଗ୍ନୀ
ମୁଖରେ ତୁ ପଡ଼ କୁମର ।୧୨। ଚଣ୍ଡାଳ ଦଇବ ରଖିଛି ତୋତେ । ଗୋଖର
ସର୍ପ ନ ଖାଇଲା ତୋତେ । ଅକାଳ ଚଢ଼କ କାମ୍ପା ନ ପଡ଼େ । ଦୁଃଖୀ ପୁଅ
ଦେହ ଏମନ୍ତ ବଢ଼େ । ସେ ମନରେ ଭାଳି । ମନେ ମନେ ଏହା ଦେଲାଷ୍ଟି
ଗାଳି ।୧୩। ମୁଖରେ ବୋଇଲା ଅମୃତ ବାଣୀ । ଯେବେ ଯାଉଅଛୁ ପିତାକୁ
ଆଣି । ଫେରିଦେଇ ଘରକୁ ନ ଆସିବୁ । ଜହ୍ନିଫୁଲର ଆୟୁଷ ପାଇବୁ ।
ମୋ କଲ୍ୟାଣ ହେଉ । ଅଗାଧ ସମୁଦ୍ରେ କୁମ୍ଭୀର ଖାଉ । ୧୪ । ଶୁଣିରେ
ନନ୍ଦନ ମୋହର ବାଣୀ । ବୋଇତରେ ଚଢ଼ି ଯିବୁଟି ପୁଣି । ପଚାଶ ଦିନ
ଗୁଳି ଗୁଳି ପଥ । ଏକଇ ହ୍ରଦେ ଲାଗିବ ବୋଇତ । ସେ ଗିଳିବ ତୋତେ ।
କେବା ନ ରଖିବ ନିଜ ଆୟତ୍ତେ ।୧୫। ତହିଁରୁ ଯେବେ ବଞ୍ଚିବୁରେ ଗୁଠ ।
ପୁଣି ନବ ଦିନ ଗୁଳିବୁ ବାଟ । କାଳିନ୍ଦୀହ୍ରଦେ ବୋଇତ ଲାଗିବ । କାଳି
ଆସି କରି ତୋତେ ଗିଳିବ । ତୁ ହୋଇବୁ ନାଶ । ଯାଇଣ ମିଳିବୁ ଶମନ
ପାଶ ॥ ସେଠାରୁ ଯେବେ ବଞ୍ଚିବୁ ନନ୍ଦନ । ପୁଣି ତହୁଁ ଯିବୁ ଚଉଦ ଦିନ ।
ଚଙ୍ଗଡ଼ ହ୍ରଦରେ ଲାଗିବୁ ଯାଇଁ । ଦେଖିଲା ମାତ୍ରକେ ସେ ତୋତେ ଖାଇ ।
ରେ କୁମର ମରି ! ଅଗାଧ ସମୁଦ୍ର ଅଟେ ଯେ ପାଣି ।୧୬। ତହିଁରୁ ଯେବେ

ବନ୍ଦିକୁରେ ସୁଖ । ପୁଣି ପାଞ୍ଚଦିନ ଗୃଲିବୁ ପଥ । ସେଠାରେ କର୍କଟ ଦେଖିବ
ଯେବେ । ଗର୍ଭଗତେ ତୋତେ ଗିଳଣ ଦେବେ । ବାଳକ ତୁ ଶୁଣ ।
ଯେବେ ତୋର ତହିଁ ରହିବ ପ୍ରାଣ ।୧୮। ତେଣିକି ତିନିଦିନ ପଥ ଯିବୁ ।
ସ୍ୱରୂପା ଦେଶେ ଯାଇଣ ମିଳିବୁ । ସେଠାରେ ରାଜା ଅଛି ସୁଦର୍ଶନ ।
ପିତାଙ୍କୁ ତୋର କରିଛି ବନ୍ଧନ । ତୁ ଯାଇଣ ତାହା । ଆଣି ପାରିବୁ କି
କହନ୍ତ ଏହା ।୧୯। ଯହୁଁ ମାଉସୀ ଏମନ୍ତ କହିଲା । ଶୁଣି ଶିଶୁଧର କାତର
ହେଲା । ବୋଇଲା ମାଉସୀ କହିଲ ମୋତେ । ଏତେ ଏତେ ଦୁଃଖ ପଡ଼ିବ
ପଥେ । ମୁଁ କେମନ୍ତେ ଯିବି । ବନ୍ଦଶାଳରୁ ପିତାଙ୍କୁ ଆଣିବି ॥ ଏହି କଥାଟି
ଅସମ୍ଭବ ମୋତେ । ପିତା ମୋହର ଗଲେ କେଉଁମତେ । ଏତେ ଠାବରୁ
କେମନ୍ତେ ବଞ୍ଚିଲେ । ବନ୍ଧଶାଳରେ କେମନ୍ତ ରହିଲେ । ତଥ୍ୟ କରି କହ ।
ଶୁଣି ମୋ ହୃଦରୁ ଯାଉ ସନ୍ଦେହ ।୨୧। ନଯୂନା ବୋଇଲା ଶୁଣ କୁମର ।
ସବୁଦିନ ଯାଏ ଜଳପଥର । ଏକ ଠାବେ ଅଛଇ ଗଣ୍ଡ । ତହିଁରେ ସବୁ
ହୋଇଥାନ୍ତି ଭଣ୍ଡ । ଶୁଣ ବାଳଶିଷ୍ୟ । ଯେବେ ପଚାରିଲୁ ପିତା ସନ୍ଦେଶ ॥
ତୋହର ପିତା କେଉଁରୂପେ ଗଲେ । ତାର ଚରିତ୍ର କହୁଅଛି ବାଳା । ଗଲେଣି
ଯହୁଁ ଦଶ ପାଞ୍ଚ ଥର । ଜାଣିଲେଣି ଯହିଁ ଯେଉଁ ପ୍ରକାର । ରେ ଖୁଲଣା ଗୂଠ ।
ଦେଖି ତହିଁ ଭାଙ୍ଗିଯାଏ ସେ ବାଟ ।୨୩। ତୁହିତ ସ୍ୱଭାବେ ବାଳକ ସିନା ।
କାହୁଁ ତୁ ସେ କଥା ଜାଣିବୁ କିନା । ତେଣୁ କରି ତୋତେ କହିଲି ମୁହିଁ ।
ଯାଅରେ ବାଳକ ମରିବୁ ତୁହି । ଏ କଲ୍ୟାଣ କଲି । କହିଫୁଲର ସେ ଅସୂଷ
ଦେଲି ॥ ପୋଡ଼ିଯାଉ ତୋର ଗରବ ଘଣେ । ପୁତୁରାଙ୍କୁ କଲି ଏହି କଲ୍ୟାଣ
ମେଲଣି ମାଗି ଶ୍ରୀବନ୍ତ କୁମର । ଦାସୀଙ୍କ ଘେନି ଅଇଲେକ ଘର । ଶ୍ରୀବନ୍ତ
କୁମର । ସୁକେଶୀଙ୍କ ତହିଁ ବୋଲେ ଉତ୍ତର ।୨୫। ଶୁଣ ଧର୍ମମାତା
ମୋ ବାଣୀ ଭଲେ । ମାଉସୀ ମୋତେ ଯେ କଲ୍ୟାଣ କଲେ । ମାତାଙ୍କ ଆଗେ
ନ କହିବ ଏତେ । ତାହା ଶୁଣି ଛାଡ଼ି ନ ଦେବେ ମୋତେ । କି ବୁଦ୍ଧି କରିବି ।
ପିତା କେମନ୍ତେ ବନ୍ଦରୁ ଆଣିବି ।୨୬। ଶୁଣି ସୁକେଶୀ ବୋଇଲା ଉତ୍ତର ।
ମୁଁ କିମ୍ପା କହିବି ମାତା ଆଗର । ସେହି କଲ୍ୟାଣ ଯାହା କଲେ ତୋତେ ।

ତା କଥା ତାଙ୍କୁ ହୋଇବ ନାସ୍ତେ । ତୋହର କି ଯିବ । ମନ୍ଦ କର୍ମ
ପ୍ରାଣୀ ନର୍କେ ପଡ଼ିବ ।୨୭। ପରକୁ ମାରିବା ପାଇଁ ଯେ କରେ । ଅବଶ୍ୟ
ଫଳଇ ତାହା କର୍ମରେ । ତୁହି ତାହାର ଦୋଷରେ ଯେ ନାହୁଁ । ତା କଥା
ତୋତେ ହୋଇବଟି କାହୁଁ । କଲେ ତ୍ରିଷ ବାୟୁର । ଏଥୁଁ ଅନନ୍ତରେ ମିଳିଲା
ଘର ॥ ଖୁଲଣା ଚରଣେ ପୁତ୍ର ପଡ଼ିଲା । ଚିରଜୀବୀ ହୁଅ ମାତା ବୋଇଲା ।
କହରେ ବୃତ୍ତାନ୍ତ ବାବୁ ମୋତେ । କି କଲ୍ୟାଣ କଲା ମାଉସୀ ତୋତେ ।
କି ବୋଇଲା ଦେଖି । ମୋତେ ପଚାରୁଥିଲା କି ସୁମୁଖୀ ॥ ଶ୍ରୀଧର ବୋଲଇ
କୋମଳ ବାଣୀ । ସାବଧାନେ ଶୁଣ ମୋର ଜନନୀ । ତୁମ୍ଭଙ୍କୁ ମାଉସୀ
ପଚାରୁଥିଲେ । ମାତା କି କରୁଛି ବୋଲି ବୋଇଲେ । ମୁଁ ତାଙ୍କୁ ବୋଇଲି ।
ସଦନେ ଛନ୍ତି ବୋଲିଣ କହିଲି ।୩୦। ଶୁଣି ସେ ବହୁତ କଲେ କଲ୍ୟାଣ ।
ସୁଖରେ ଦିନ ବଞ୍ଚୁଥାଅ ପୁଣ । ପୁତ୍ର ତାହାର ଚିରଜୀବୀ ହେଉ । ଧନ ଜନ
ଲକ୍ଷ୍ମୀ ପ୍ରାପତ ହେଉ । ଦାସୀମାନେ ଥିଲେ । ତୁମ୍ଭଙ୍କୁ ବହୁତ କଲ୍ୟାଣ କଲେ ॥
ମୋତେ ବୋଇଲେ ତୁ ଯାଅରେ ସୁତ । ତୋତେ ଦେଖି ମୁଁ ପାସୋରିଲି
ଦୁଃଖ । ଜନ୍ମ ଅଣ୍ଟୁକୁଡ଼ୀ ହୋଇଲି ଯହୁଁ । ଭଉଣୀର ପୁତ୍ର ଦେଖିଲି ତହୁଁ ।
ସୁଫଳ ମୋ ଦେହ । ମୋ ଘରେ ଅଜ ଆଠଦିନ ରହ ।୩୨। ମୁଁ ତାଙ୍କ
କହିଲି କାଲି ପ୍ରଭାତେ । ଯିବଇଁ ପିତାଙ୍କୁ ଅଣିବା ଅର୍ଥେ । ଅଜ କି ରୂପେ
ଏଠାରେ ରହିବ । ଯିବା ଅନୁକୂଳ କେହ୍ନେ ଭାଙ୍ଗିବ । ନ ବୋଲ ଏ ବାଣୀ ।
ସୁଖରେ ତୁ ମୋତେ କର ମେଲାଣି ।୩୩। ଏ ବଚନ ଶୁଣି ହରଷ ହେଲା ।
ଭୋଜନ କରୁ ତୁ କର ବୋଇଲା । ଦେଲା ଦୁଧ ସର ଲବଣୀ ଆଣି । ଅଖୁ
କଟିଅଳ ଅଦାକ୍ରା ଘେନ । ଦେଲା ପଞ୍ଚାମୃତ । ଛେନା କାକର ଯେ ପିଠା
ବହୁତ ।୩୪। ବୋଇଲି ଏହା ନ ଭୁଞ୍ଜିବି ମୁହିଁ । ଏହିକ୍ଷଣି ଭୁଞ୍ଜି ଅସିଛୁ
ମୁହିଁ । ସେ ବୋଇଲେ ବଡ଼ଲୋକ କୁମର । କାମ୍ପାଇଁ ଭୁଞ୍ଜିବୁ ଅମ୍ଭର ଘର ।
ମେଲାଣି ମାଗିଲି । ନିଜ ମନ୍ଦିରକୁ ବାହାର ହେଲି ।୩୫। ଏବେ ମୋତେ
ମାତ ମେଲାଣି କର । ସୁଖେ ଯାଇ ଫେରି ଅସିବି ଘର । ତା ଶୁଣି ଖୁଲଣା
ବୋଲଇ ବାଣୀ । ଅନ୍ତୁର କଥା ଏ ଅଛଇ ପୁଣି । ଯାଅ ତୁ ଉଦବେଗି ।

ଗ୍ରାମଦେବତାଙ୍କି ମେଲଣି ମାଗି ।୩୬। ତା ଶୁଣି ଶ୍ରୀଧର ବହନ ଗଲା । ଗ୍ରାମଦେବତା ନିକଟେ ମିଳିଲା । ଏମନ୍ତ ବଦା ସେ କଲେ ତାହାଙ୍କୁ । ଶୁଣ ସୁଜନେ କହୁଛି ତୁମ୍ଭଙ୍କୁ । ଏକ ମନେ ରସ । ମଙ୍ଗଳା ନାମକୁ ହୃଦରେ ଘୋଷ । ୩୭ । ଜଗନ୍ନାଥେ ଯାକୁ ହୋଇବେ ସାହା । ଧୀବର ଭକାରୀ ଲେଖିଲା ତାହା । ମଙ୍ଗଳାମାତାଙ୍କ ଚରଣେ ମତ । ହୁଳହୁଳି ଦିଅ ସବୁ ଯୁବତୀ । ମନବାଞ୍ଛା କଥା । ପୂର୍ଣ୍ଣ କରିବେ ସେ ମଙ୍ଗଳାମାତା । ୩୮ ।

---

# ଷୋଡ଼ଶଛାନ୍ଦ

ରାଗ—ରାମକେରୀ

ଶୁଣ ଶୁଣ ସୁଜ୍ଞଜନେ ହେ ଏଥିଅନ୍ତରେ ରସ । ବିଦାୟ ମାଗିଣ ଚଳିଲ ତହୁଁ ଖୁଲଣା ଶିଷ୍ୟ । ୧ । ଗ୍ରାମଦେବତାଙ୍କ ନିକଟେ ଯାଇଁ ପ୍ରବେଶ ହେଲା । ବେନି କର ଯୋଡ଼ି ସତ୍ୱରେ ତହୁଁ ପାଦେ ପଡ଼ିଲା ।୨। ଉଠି କର ଯୋଡ଼ି ବୋଲଇ ନୁଆଁଇଣ ସେ ମଥା । ବୋଲଇ ମୋତେ ବିଦାକର ଗ୍ରାମଦେବତା ମାତା ।୩। ପିତା ମୋର ଯାଇଁ ପ୍ରବାସେ ମହାକଷ୍ଟେ ରହିଲା । ମୁହିଁ ଯାଇ ତାଙ୍କୁ ଆଣିବି ମୋତେ ମାତା ବୋଇଲା । ୪ । ସ୍ୱେ ନିମନ୍ତେ ତୁମ୍ଭ ଛାମୁକୁ ସିନା ଆଇଲି ଧାଇଁ । ଆନନ୍ଦ ମନେ ବିଦା କର ଚଣ୍ଡୀ ସୁନ୍ଦରୀ ବହି । ୫ । ଏହି ଆଜ୍ଞା ମୋତେ କର ଗୋ ବିଘ୍ନ ନ ପଡ଼ୁ ଆଉ । ସଙ୍କଟ-ଭଞ୍ଜନୀ ତୋ ନାମ ଧରି ମୋ ଦୁଃଖ ଯାଉ । ୬ । ଏହା ଶୁଣି କରି କହନ୍ତି ତାଙ୍କୁ ଗ୍ରାମଦେବତା । ଶୁଣ ଶୁଣ ବାଳସୁତ ରେ ଧନିନଗ୍ଧର ସନ୍ତତ । ୭ । ଏହି ଖଣ୍ଡା ଗୋଟି ଦେଉଛି ନିଅ ସୁଚଞ୍ଚ ମନେ । ଆଉ ତୁ ଜଞ୍ଜାଳ ନ କର ଯାଅ ପିତା ଦର୍ଶନେ ।୮। ପଥେ ଯେତେ ଦୁଃଖ ପଡ଼ିବ କିଛି ବାଧିବ ନାହିଁ । ମୋହର ନାମ ତୁ ଧରିଲେ ଦୁଃଖ ରହିବ ନାହିଁ । ୯ । ଏ ବଚନ ଶୁଣି କୁମର ପଦ୍ମପାଦେ ପଡ଼ିଲା । ମେଲଣି ମାଗିଣ ସତ୍ୱରେ ନିଜ ପୁରେ ଆଇଲା । ୧୦ । ଖଣ୍ଡା ଧରି ତହୁଁ ଶ୍ରୀଧର ପୁରେ ହେଲା ପ୍ରବେଶ । କରଯୋଡ଼ି ମାତା ପାଦରେ ପଡ଼େ ବାଳୁତ ଶିଷ୍ୟ । ୧୧ । ଶରଜୀବୀ

ହୋଇଥାଅ ରେ ମାତା କଲେ କଲ୍ୟାଣ । ସୁଖ ଭୋଗ ମଞ୍ଚେ ପାଅଁରେ ମୋର କୁଳ ନନ୍ଦନ । ୧୨ । ଗ୍ରାମଦେବତା କ କହିଲେ ମୋତେ କହ ବୁଝାଇ । ତୋର ମୁଖୁଁ ଶୁଣି ହରଷ ହେବ ମୋହର ଦେହି । ୧୩ । ମାତା ବୋଲ ଶୁଣି ଶ୍ରୀଧର ହେଲା ବହୁ ସନ୍ତୋଷ । ଶୁଣ ଗୋ ଜନନୀ ବୋଇଲେ ଗ୍ରାମଦେବୀ ସନ୍ଦେଶ ।୧୪। ମେଲଣି ମାଗନ୍ତେ ଏ ଖଣ୍ଡା ଗୋଟି ମୋତେ ସେ ଦେଲେ । ପଥରେ ବନ୍ଧୁ ନ ପଡ଼ିବ ବୋଲି ମୋତେ ବୋଇଲେ । ୧୫ । ତାଙ୍କଠାରୁ ବଡା ହୋଇଲି ଏବେ ତୁ ବଡା କର । ମନ ଉଦ୍‌ବେଗ ହେଉଛି ଅଗୋ ଜନନୀ ମୋର । ୧୬ । ଖୁଲଣା ସୁନ୍ଦରୀ କହଇ ଶୁଣ କୁମରମଣି । ଈଶ୍ୱରଙ୍କ ପାଶେ ଯାଇ ତୁ ବେଗେ ମାଗ ମେଲଣି ।୧୭। ଶ୍ରୀଧର କୁମର ଯାଇଣ ଶିବ ଆଳେ ପ୍ରବେଶ । ବେନି କରଯୋଡ଼ି ବୋଲଇ ବାରେ ଶୁଣ ମହେଶ ।୧୮। ତୁମ୍ଭର ଆଜ୍ଞା ଅଇଲି ମୋତେ କର ମେଲାଣି । ପିତା ଗଲା ମୋର ପ୍ରବାସେ ମୁହିଁ ଯିବଇଁ ଅଣି । ୧୯ । ପଥରେ ବନ୍ଧୁ ନ ପଡ଼ିବ ଏହା କରୁଣା ହେଉ । ତୁମ୍ଭ ନାମ ମୁହିଁ ଧରନ୍ତେ ମୋର ଦୁରିତ ଯାଉ ।୨୦। ଏମନ୍ତ କହିଣ ଶ୍ରୀଧର ପାଏ ପଡ଼ି ଶୋଇଲା । କାକୁସ୍ଥ ହୋଇଣ ମସ୍ତକେ ବେନି କର ଯୋଡ଼ିଲା ।୨୧। ଦେଖି ମହାଦେବ ଉତ୍ତର ଭୂଜେ ତୋଳି ଧଇଲେ । କୋମଳ ବଚଣି ତାହାଙ୍କୁ ସେ ବଚନ ବୋଇଲେ । ୨୨ । ଦେଉଅଛି ତୁହି ନାଅରେ ଏହି ଭଜନ ନାୟକ । ବିପତ୍ତି କାଳରେ ବନ୍ଧବୁ ଅରେ ବାଳ ଉନୂକ । ୨୩। ଏ ବଚନ ଶୁଣି ଶ୍ରୀଧର ମନେ ଆନନ୍ଦ ହେଲା । ମହାଦେବଙ୍କର ହସ୍ତରୁ ଭଜନା ନାହିଁ ନେଲା । ୨୪ । ମନ୍ଦରେ ପ୍ରବେଶ ହୋଇଲା ମାତା ପାଦରେ ପଡ଼ି । ଉଠିଣ ଉଭା ସେ ହୋଇଲା ବେନି କରକୁ ଯୋଡ଼ି ॥ ସକଳ ବୃତ୍ତାନ୍ତ କହିଲା ଦେଖାଇଣ ଶାସ୍ତ୍ରଙ୍କ । ତୋଷ ମନେ କଲେ ମେଲାଣି ମୋତେ ଉମାନାଥଙ୍କ ।୨୬। ତୁହି ଏବେ ବଡାକର ଗୋ ମାତା ଯିବଇଁ ମୁହିଁ । ଉତ୍ତର ନ କର ବୋଲିଣ ଦୀନ ଭିକାରୀ କହି । ୨୭ ।

---

# ସପ୍ତଦଶ ଛାନ୍ଦ

ରାଗ—ରାମକେରୀ ।

ଶୁଣ ଶୁଣ ବାଳ ପୁଅ ରେ ଅଉ କଥାଏ ପୁଣି । ମଙ୍ଗଳା ମାତାଙ୍କୁ
ଯାଇଣ ତୁ ଯେ ମାଗ ମେଲାଣି ।୧। ନ ଗଲେ କି ବୋଲି କହିବେ ଅରେ
କୁଳନନ୍ଦନ । କେତେ ଦୁଃଖରୁ ସେ ରଖିଲେ ଫିଟାଇଣ ବନ୍ଧନ । ୨ । ଏ
ବଚନ ଶୁଣି ଖୁଲଣାସୁତ ଚଳିଲା ବେଗେ । ଯାଇଣ ପ୍ରବେଶ ହୋଇଲା
ମଙ୍ଗଳା ମାତା ଆଗେ । ୩ । ପ୍ରଣମିତ ହୋଇ ମସ୍ତକେ ସେ ଯେ ଯୋଡ଼ିଲା
ପାଣି । ବହୁତ ବିନୟ ହୋଇଣ ସେ ଯେ କହିଲା ବାଣୀ ।୪। ଜୟ ହିମ-
ବନ୍ତ ସୁତା ଗୋ ଜୟ ଜଗତମାତ । ଜୟ ଜୟ ସିଂହବାହିନୀ ମୋର ଫେଡ଼
ଦୁରିତ । ୫ । ଜୟ ତୁ ଅମ୍ବିକା ପାର୍ବତୀ ହେ କଙ୍କାଳୀ ବେତାଳୀ । ଜୟ
ଜୟ ଅଷ୍ଟଚଣ୍ଡୀ ଗୋ ନାମ ତୋ ଭଦ୍ରକାଳୀ । ୬ । ଦୁଃଖ ନିବାରିଣୀ
ମୋ ଦୁଃଖ ବାରେ କର ଦହନ । ତୋହର ବ୍ୟତିତ ମୁହିଁ ଗୋ ଅଉ ନ
ଜାଣେ ଆନ । ୭ । ତୋଷମନେ ବିଦାକର ଗୋ ହିମବନ୍ତ ଦୁଲଣୀ ।
ମୋତେ ସାହାପକ୍ଷ ହୋଇବ ମୁହିଁ କିଛି ନ ଜାଣି । ୮ । ଏମନ୍ତ କହିଣ
ଶ୍ରୀଧର ପଦ୍ମପାଦରେ ପଡ଼ି । ବିନୟ ବଚନ କହିଣ ସେ ଯେ ଭୂମିରେ
ଗଡ଼ି । ୯ । ତାହା ଦେଖି ମଙ୍ଗଳାମାତା ତାଙ୍କୁ ତୋଳି ଧଇଲେ । ପ୍ରବୋଧ
ବଚନ କହିଣ ମୁଖେ ଚୁମ୍ବନ ଦେଲେ । ୧୦ । ଧନ୍ୟ ସେ ଖୁଲଣା ତନୟ
ତାକୁ ସରି କେ ଅଛି । ଯାହାକୁ ଆପଣା ହସ୍ତରେ ଧରି ସଂକଳ ବାନ୍ଧି ।୧୧।
ନାନାଦୋଷ ଥିଲେ ବିନାଶ ଯାଇ ହୁଏ ସୁଫଳ । ଆଉ ଆନ କଥାମାନଙ୍କେ
ତହିଁ ଅଛି କି ଫଳ । ୧୨ । ମଙ୍ଗଳା ବୋଇଲେ ବାଳକ ଶୁଣ ମୋ ବାଣୀ
ତୁହି । ଯେତେ ଯେତେ ଦୁଃଖ ପଡ଼ିବ ତୋତେ ରଖିବି ମୁହିଁ ।୧୩। ଯେଣୁ
ମୋହର ତୁ ଅଟୁ ରେ ଗଳା ମର୍ଚ୍ଛିତ ହୀରା । ଏତେ କହିଣ ତାଙ୍କୁ ଦେଲେ
ସେ ଦୁବ ଧାତ କେରା । ୧୪ । ବୋଇଲେ ଏହାକୁ ନିଅ ରେ ଅନ୍ତର
କୁମରମଣି । ଦୁଃଖ ଯେତେବେଳେ ପଡ଼ିବ ଏହା ଦେଖାଅ ପୁଣି ।୧୫।
ଯାଅ ପିତା ପାଶେ ବହନ ହୋଇ ଆସ ସତ୍ୱରେ । ବିରୂପା ଦେଶର ରାଜା

ସେ ରହିଛି ବନ୍ଧରେ । ୧୬ । ତୁହି ଯାଇ ସେ ରାଜ୍ୟରେ ଯେ ବେଗେ ପ୍ରବେଶ ହେବୁ । ସୁଦର୍ଶନ ରାଜା ହୋଇଥିବୁ ତାକୁ ବନ୍ଧୁ ହୋଇବୁ । ୧୭ । ପିତାକୁ ବନ୍ଦୁଁ ମୁକୁଳା ଘେନିଆସ ଏଠାରେ । ଯାଅ ଯାଅ ତୋତେ ମେଲାଣି ଦେଲି ବାଳ କୁମରେ । ୧୮ । ତକ୍ଷଣେ ଶ୍ରୀଧର ଯାଇଣ ହେଲା ମାତା ପାଶର । ସକଳ ବୃତ୍ତାନ୍ତ କହିଲା ସେ ଯେ ମାତା ଅଗର । ୧୯ । ତା ଶୁଣି ଖୁଲଣାସୁନ୍ଦରୀ ବଡ଼ ହରଷ ହେଲା । ପୁତ୍ରକୁ କୋଳରେ ବସାଇ ନାନା ବାଣୀ କହିଲା । ୨୦ । ଶ୍ରୀଧର ବୋଲଇ ମାତ ଗୋ ଯିବି ପିତା ଅଗ୍ରତେ । ହସି ମୋତେ ବିଦାକର ଗୋ ହୋଇ ଅନନ୍ଦ ଚିତ୍ତେ । ୨୧ । ସପ୍ତଦଶ ଛାନ୍ଦ ସମ୍ପୂର୍ଣ୍ଣ ଜଗନ୍ନାଥ କହିଲେ । ଧୀବର ଭକ୍ତାଗ୍ରି ମନରେ ଏହା ପାଇଁ ଲେଖିଲେ । ୨୨ ।

---

## ଅଷ୍ଟାଦଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

କୋଧଭରେ ହୋଇ କହଇ ସେହୁ ଖୁଲଣା ନାରୀ । ଯତେ ଛାଡ଼ିଯିବୁ ନନ୍ଦନ ମୋତେ ତୁ ଏକା କରି । ୧ । କେମନ୍ତେ ଦେହ ମୁଁ ଧରିବି ବୁଝି କହନ୍ତ ମୋତେ । କାଳକୂଟ ବିଷ ଆଣିଣ ଦିଅ ମୋହର ହସ୍ତେ । ୨ । ଶୁଣି ଶିଶୁଧର ବୋଇଲା ମାତା ନୁହ ଆରତ । ଅଳପ ଦିନରେ ବାହୁଡ଼ି ମୁଁ ଯେ ଆସିବି ଏଥ । ୩ । ପିତାଙ୍କୁ ସଙ୍ଗରେ ଘେନିଣ ମୁଁ ଯେ ପ୍ରବେଶ ହେବି । ସବ ସୁଫଳରେ ଆସିଣ ତୁମ୍ଭ ପାଦେ ସେବିବି । ୪ । ଖୁଲଣା ବୋଲଇ ନନ୍ଦନ ତୁ ମୋ ନେଇ ପିତୁଳା । ଅଗାଧ ସମୁଦ୍ରେ ବୁଡ଼ାଇ ଯାଉଅଛୁ ମୋ ଭେଳା । ୫ । ଯିବା କଥା ଶୁଣି ତୋହର ଦେହ ହେଉଛି କାଠ । ଧିକ ଧିକ ପ୍ରାଣ ଥିବାର ଆଜି ଯାଉଛୁ ଫୁଟି । ୬ । ଶ୍ରୀଧର କୁମର ବୋଲଇ ମାତା ଶୁଣ ମୋ ବାଣୀ । ଦଇବ ଏହା ଭିଆଇଲା କର୍ମେ ଅଛଇ ପୁଣି । ୭ । କେତେ ଧନ ଅବା ନ ଥିଲା ଦୁଃଖ କେତେ ସହିଲି । ରାଜପୁତ୍ର ହୋଇ ଦରିଦ୍ର ସଙ୍ଗେ ଘର ହୋଇଲି । ୮ । ମାତା ବୋଲଇ ଶ୍ରୀଧର ହେ ମୋତେ ସଙ୍ଗରେ

ଯାଅ । ଦୁଃଖ ସହିବା ପାଇଁ ମୋତେ ଏକା କରି ନ ଯାଅ । ୯ । ଏକାକରି ଗଲେ ଏଠାରେ ବର୍ତ୍ତି ପାରିବି ନାହିଁ । ତୋ ଲାଗି ଦୁଃଖ ଯେତେ ମୋର ପାଣୋର ଯିବ କାହିଁ । ୧୦ । ନୟନାସୁନ୍ଦରୀ ଅଯେଣ ନାନା ଅବସ୍ଥା ଦେବି । ତୁହି ଥିଲେ ମୋର ପାଣରେ ସେ କଷ୍ଟ ନ କରିବ ॥ ପୁତ୍ର ବୋଲେ ମାତା ଶୁଣ ଗୋ ସେତ ବିରଞ୍ଚି କଥା । ପୂର୍ବେ ଯାହା ଲେଖା ହୋଇଛି ସେ କି ହେବ ଅନ୍ୟଥା । ୧୨ । ଚଉଦ ବରଷ ବନସ୍ତେ ରଘୁନାଥ ବୁଲିଲେ । ତେବେ ତାଙ୍କ ଦୁଃଖ ନ ଗଲା ଫଳ ମୂଳ ଭୁଞ୍ଜିଲେ । ୧୩ । ଜନନୀ ହୋଇଲେ ଶ୍ରୀଧର ସେତ ଜଗତ ପିତା । ତାଙ୍କ ଦୁଃଖ କେତେ ମାତର କର କୌତୁକ କଥା । ୧୪ । ମୁଁ ଯେତେ କଷଣ ସହିଲି ସେ କି ମନରୁ ଯିବ । ଖୋଜିଲେ ମୋହର ପରାୟେ ଜଗତରେ ନ ଥିବ । ୧୫ । ମାତା ବାଣୀ ଶୁଣି ନନ୍ଦନ ବୋଲୁଅଛି ବଚନ । ଦୁଃଖ ସହୁଥାଅ ଜନନୀ ଆଉ ଅଳପ ଦିନ । ୧୬ । କେତେ ଦୁଃଖ ଲଙ୍କା ନଗରେ ସୀତା ପାଇଲେ ନାହିଁ । ଦେହ ରଖିଥିଲେ ବୋଲିଣ ସୁଖ ପାଇଲେ ସେହି । ୧୭ । ଦୁଃଖରେ ପଡ଼ିଣ ସୁଗ୍ରୀବ ପଛେ ସୁଖ ଲଭିଲା । ଦୁଃଖ ସହିଣ ବିଭୀଷଣ ଲଙ୍କେ ରାଜା ହୋଇଲା । ୧୮ । ଦୁଃଖ ପାଇଥିଲେ ଶ୍ରୀରାମ ସଙ୍ଗେ ଯେଜନ ଯୁବତୀ । ଦୁଃଖ ଦେଲେ କୁରୁପତି ଯେ ସଭାତଳେ ଦ୍ରୌପଦୀ । ୧୯ । ଦୁଃଖ ସହିଥିଲେ ଦେବକୀ ଦୁଃଖ ସହିଛି ନନ୍ଦ । ଦୁଃଖ ସହିଛନ୍ତି ଅମର ସୁର-ଅର୍ଥେ ଗୋବିନ୍ଦ । ୨୦ । ଦୁଃଖ ଅଦର ନଳ ରାଜା ଘୋଡ଼ା ଘାସ କାଟିଲେ । ଦୁଃଖ ପାଇ ପଞ୍ଚ ପାଣ୍ଡବେ ବନବାସ ବୁଲିଲେ । ୨୧ । ଏମନ୍ତ ଏତେ ଦୁଃଖ ପାଇ ପଛେ ଭୁଞ୍ଜିଲେ ସୁଖ । ବିଦ୍ୟାଗୁରୁଠାରୁ ଶୁଣିଛି ମାତ ନୁହ ବିମୁଖ । ୨୨ । କପାଳେ ଯାହା ଲେଖାଅଛି ସେ କି ଆନ ହୋଇବ । କାଲି କର୍ମମାନ ବାପୁର ଦଣ୍ଡ ଦିଏ ଦଇବ । ୨୩ । ଦୁଃଖକୁ ମାତ ସହି ଥାଅ ଭଜ ମଙ୍ଗଳା ପାଦେ । ଦୁଃଖ ବିନାଶିନୀ ରଖିବେ ତୋତେ ଘୋର ପ୍ରମାଦେ । ୨୪ । ମୋତେ ତୁ କହୁଅଛୁ ସଙ୍ଗେ ମୋର ଯିବା ନିମନ୍ତେ । ଶୁଣିଲେ ପଣ୍ଡିତେ ଜଗତେ କିବା ବୋଲିବେ ମୋତେ । ୨୫ । ଏ କଥାମାନ

ତୁ ଉପେକ୍ଷି ଦୁଃଖ ସହଣ ଥାଅ । ମଙ୍ଗଳା ମାତାଙ୍କ ଚରଣେ ମନ ସଦା
ଦିଅ । ୨୬ । ଅଷ୍ଟାଦଶ ଛାନ୍ଦ ଏଠାରେ ଅସି ହେଲା ସମ୍ପୂର୍ଣ୍ଣ । ଯାହା ଯାହା
ଦୃଶ୍ୟ ହୋଇଲା ମୋର ବେନି ନୟନ । ୨୭ । ଊନବିଂଶ ଛାନ୍ଦ କରିବ
ରସକୋଇଲି ରାଗେ । ସୁଜ୍ଞଜନେ କର ଗାୟନ ଏହା ସୁମଧୁର ବେଗେ ।୨୮।
କହଇ ଧୀବର ଭିକାରି ଜଗନ୍ନାଥଙ୍କ ବାଣୀ । ରସକୋଇଲିର ରାଗରେ
କର ଗାୟନ ପୁଣି । ୨୯ ।



## ଊନବିଂଶ ଛାନ୍ଦ

ରାଗ—ରସକୋଇଲି

ପୁତ୍ର ବାଣୀ ଶୁଣି ଖୁଲ୍ଲଣା ନାରୀ । କହଇ ଅତକ୍ରୋଧେ ଗୃହୂଙ୍କର ।
ତୁହିରେ ବାଳକ ସପ୍ତ ବୟସ । କେଉଁଅଡ଼େ ତୁହି ଦେଖିଛୁ ଦେଶ ସେ ।
ଏହା ତୋ କର୍ମରେ ଥିଲା ଯେ । ରାଜାର କୁମର . ହୋଇଣ ଶ୍ରୀଧର ତେବେ
ତୋ ଦୁଃଖ ନ ଗଲା ରେ । ୧ । କେଉଁ ରାଜ୍ୟକୁ ତୁ ଯିବୁରେ ସୁତ ।
କେଉଁ ରାଜ୍ୟ ବାଟ ଦେଖିଛୁ ବାପ । କେଉଣସି ରାଜ୍ୟ ଦେଖି ତ ନାହୁଁ ।
କେଉଁ ରାଜ୍ୟରେ ତୁ ରହିବୁ ଆଜ ରେ । ଧାତା ବଡ଼ ଅବିବେକ ଯେ । ଏ
ଯୋଡ଼ା ଲଲାଟେ ଲେଖିଅଛି ଯାହା ବାଳକ ପାଇଲ ଦୁଃଖ ଯେ । ୨ । ତାହା
ଶୁଣି ବୋଲେ ବାଳ କୁମର । କର୍ମରେ ଲେଖା ହୋଇଅଛି ମୋର । ଅକିଲା
କଥା ମୁଁ କାହାକୁ ଦେବ । କର୍ମେ ଯାହା ଅଛି ତାହା ଭୁଞ୍ଜିବ ସେ । ଭେ
ଅବା କରିବ ଅନ୍ନ ଯେ । କର୍ମେ ଯେବେ ଅଛି ଭୋଗ କରିବାକୁ ଆଉ
ପଛେ କୋଟି ଧନ ଯେ । ୩ । ଶ୍ରୀଧର ଯହୁଁ ଏମନ୍ତ କହିଲା । ଶୁଣିଣ
ଖୁଲ୍ଲଣା ତୋଷ ହୋଇଲା । ବୋଇଲା କ୍ଷଣେରେ ବାଳୁତ ବସ୍ତ୍ର । ମନ
କଥାମାନ ତୋତେ କହୁଛି ସେ । ପ୍ରବାସକୁ ତୁ ତ ଯିବୁରେ । ଉତ୍ତମ ସ୍ତ୍ରୀ ସ
ତୁ ନୟନେ ଦେଖିଲେ ମାତା 'ପରାଯେ' ମଣିବୁ ରେ । ୪ । ଠାଇ ତାପରା
କଥା ହୋଇ ଯେତେ । ମୁଖରେ ନ କହିବୁ କଦାଚିତେ । ପୁରୁଷଙ୍କୁ ଦେଖି
ପିତାର ମତ । ଭ୍ରାତେ ମଣିଥିବୁ ବାଳକ ବସ୍ତ୍ରି ସେ । ଲୋକେ ନ ଯିବୁ

ବିଶ୍ୱାସ ଯେ । ଗ୍ରାମ ବାହାରେ ଏକା ପୁନ୍ଃ ରହିବୁ ନ କରିବୁ କାହିଁ ଗ୍ରାସ
ଯେ । ୫ ଦୀନହୀନ ଲୋକ ଦେଖିବୁ ଯେବେ । ବିନସ୍ତ୍ର ଭୁଷା କୁହୁଥିବୁ
ତେବେ । ଯେ ଯାହା ମାଗିବ ତାହାକୁ ଦେବୁ । କାରଣ ବାଣୀ କେବେଁ ନ
କହିବୁ ସେ । କାଲେ କହୁଥିବୁ କୋପ ଯେ । ରେ ବାଳକ ବସ୍ତ୍ରି ନ ଜାଣୁ
ତୁ କଷ୍ଟ ଏହା ମଣିଥାଅ ସତ ଯେ । ୬ । ଧର୍ମରେ ଥିଲେ ଧର୍ମେ ପାର
ହୋଇ । ଅଧର୍ମେ ଗଲେ ବାଟ ଅଛି କାହିଁ । ସବୁକଥାମାନ ଛାଡ଼ ନନ୍ଦନ ।
ମଙ୍ଗଳାପାଦେ କରିଥିବୁ ଧ୍ୟାନ ସେ । କରିବେ ସଙ୍କଟୁ ପାର ରେ । ତାଙ୍କ
ବିନୁ କେହି ରଖିବାକୁ ନାହିଁ ସାହାପକ୍ଷ ତନ ପୁରରେ । ୭ । ପିତା ନିକଟେ
କେବେହେଁ ହେବୁ ଭେଟ । ଦିନେହେଁ ନେନେ ଦେଖି ନାହୁଁ ଗୃହେ । କେମନ୍ତେ
ଚିହ୍ନିବୁ ମୋ ପିତା ବୋଲି । କାହାକୁ ପଚାରିବୁ ତୁ କା ବୋଲି ଯେ । କେ
ତେ ସଙ୍ଗତରେ ଯିବ ଯେ । ଅବୁଦ୍ଧି ବାଳକ ବୁଦ୍ଧି ନ ଆସିଲେ କାଏ
ତୋତେ ଶିଖାଇବ ରେ । ୮ । ଶ୍ରୀଧର ବୋଲଇ ଶୁଣ ଜନନୀ । ସବୁ କଥାକୁ
ଛନ୍ତି ଠାକୁରାଣୀ । ତାଙ୍କ ବିହୀନେ ମୁଁ ନ ଜାଣେ ଆନ । ତୁ କିମ୍ପାଇଁ ଚିନ୍ତା
କରୁଛୁ ମନ ସେ । ସୁଖରେ ଯାଇଁ ଆସିବ ଯେ । ଏହି ଦେହରେ ମୁଁ ପିତାଙ୍କୁ
ଆଣିଣ ତୁମ୍ଭ ଛାମୁରେ ଭେଟିବି ଯେ । ୯ । ତା ଶୁଣି ଖଳଣା ବୋଲେ
ବଚନ । ଏଗ୍ରାମ ମଧ୍ୟରୁ କାହାକୁ ଆଣ । ବିଶ୍ୱାସୀ ଜନ ଯାହାକୁ ଦେଖିବୁ ।
ତା ପାଶେ ସକଳ କଥା କହିବୁ ସେ । ବୋଲିବୁ ଯିବା ପ୍ରବାସ ଯେ । ଆନନ୍ଦ
ମନରେ ମୋହ ସଙ୍ଗେ ଗୃଳ୍ ହୋଇଣ ମନେ ହରଷ ଯେ । ୧୦ । ଶ୍ରୀଧର
କୁମର ତହୁଁ ଚଳିଲା । ସେ ଗ୍ରାମ ମଧ୍ୟରେ ଯାଇଁ ପଶିଲା । ସେ ଗ୍ରାମରେ
ଥିଲା ଗ୍ରାମ ପାଳକ । ନାମ ତାର ଅଟେ ଚନ୍ଦ୍ରଚୂଳକ ସେ । ତାହାକୁ ଯାଇଁ
ପଚାରେ ଯେ । ମୁହିଁ ଯିବି ପିତା ଆଣିବା ନିମନ୍ତେ ତୁତ ଯିବୁ ମୋ ସଙ୍ଗରେ
ଯେ । ୧୧ । ସେ ବୋଇଲା ଅରେ ଶୁଣ ଶ୍ରୀଧର । ଯାଇ ନ ପାରିବି ସଙ୍ଗତେ
ତୋର । କନିଷ୍ଠ ଭାଇ ଅଛଇ ମୋହର । ନାମ ତାର ସୋମନାଥ ଡ଼ଗର
ସେ । ତାକୁ ଯେବେ ସଙ୍ଗେ ନେବୁ ରେ । ସୁଖରେ ଯାଇଣ ଦେଶେ ଦେଶେ
ବୁଲି ସବୁ ସଣସ୍ତ ନାଶିବୁରେ । ୧୨ । ଶୁଣି ଶ୍ରୀଧର ସନମତ କଲା ।

ସୋମନାଥଙ୍କୁ ସେ ସଙ୍ଗତେ ନେଲେ । ମାତା ନିକଟରେ ହେଲା ପ୍ରବେଶ । ବୋଇଲା ଏବେ ମୁଁ ଯିବି ପ୍ରବାସ ସେ । ମନରେ ଚିନ୍ତା ନ କର ଗୋ ଜାଣିଥାଅ ଅଳ୍ପ ଦିନରୁ ଏଥର ଅଛି ମୁଁ ଆପଣା ଘର ଗୋ ।୧୩। ସୋମନାଥ ବୋଲେ ନୁହ ବିମୁଖ । ବାଟରେ ଆମ୍ଭଙ୍କୁ ପଡ଼ିବ ଦୁଃଖ । ସୁଚିତ୍ତ ମନରେ ମେଲାଣି କର । ବନ୍ଧୁ ନ ପଡେ ଯେମନ୍ତ ପଥର ସେ । ପୁତ୍ରଙ୍କ ବଚନ ଶୁଣେ ଯେ । ମୋହ ପୁତ୍ରଙ୍କୁ ତୋ ପୁତ୍ର ପରି ଜାଣି ରକ୍ଷା କରିବୁ ବହନ ଯେ ॥ ମୁହିଁ ନେଇଯିବି ତୋହ ପୁତ୍ରଙ୍କୁ । ଦେଖା କରାଇବି ତାହା ପିତାଙ୍କୁ । ପିତା ପୁତ୍ର ଦୁହେଁ ହୋଇ ହରଷ । ଯେ କାଳେ ପ୍ରବେଶ ହୋଇବେ ପାଶ ସେ । ମୋତେ ତୁ ବିଦା କରିବୁ ଯେ । ତେତେବେଳେ ମୋତେ ଯାହା ତୁହି ଦେବୁ ମନେ ସଂଶୟ ପାଇବୁ ଯେ । ୧୫ । ଶୁଣ ହେ ସୁଜନ ହୋଇ ପ୍ରମୋଦ । ଛାନ୍ଦ ଶେଷ ହେଲା ଯେ ଷୋଳ ପଦ । ଏଣିକି ଛାନ୍ଦ ମୁଁ କହୁଛି ଯାହା । ଚଉଦ ଅକ୍ଷରେ ବୋଲିବ ତାହା ସେ । ଜଗନ୍ନାଥଙ୍କର ବାଣୀ ଯେ । ମନରେ ଭକ୍ତି କରି କହଇ ବିପ୍ରର ଛାନ୍ଦ ଛାନ୍ଦକରେ ପୁଣି ଯେ । ୧୬ ।



## ଷୋଡ଼ଶ ଛାନ୍ଦ

ରାଗ—ମଙ୍ଗଳ

ଶୁଣ ହେ ସୁଜନ ଜନେ ହୋଇ ଏକମନ । ପୁତ୍ର ପ୍ରବାସରେ ଯିବ ଯେଉଁ କଥାମାନ । ୧ । ସୋମନାଥ ଢ଼ଗରକୁ ଖଲଣା କହଇ । ମୋହର ନନ୍ଦନ ତୋତେ ଅଜଣ୍ଟୁ ଲାଗଇ । ୨ । ନାହିଁ ତାର ବୁଦ୍ଧି ଏ ଯେ ବାଳକ ନନ୍ଦନ । ତାର ପିତା କେଉଁଠାରେ ଅଛଇ ବନ୍ଧନ । ୩ । ଜାଣି ଶୁଣି କରି ତୁମ୍ଭେ କାର୍ଯ୍ୟହିଁ କରିବ । ଯେଉଁ ରୂପେ ତାହାଙ୍କୁ ପ୍ରମାଦ ନ ପଡ଼ିବ । ୪ ଏ ବଚନ ଶୁଣିଣ ବୋଲଇ ସୋମନାଥ । ସବୁ କଥାରେ ମୁଁ ତାଙ୍କୁ ହେବି ସାହାପକ୍ଷ ।୫। ମନରେ କିଛି ଭାବନା ନ କର ଗୋ ମାତ । ଅଳପଦିନରେ ଆମ୍ଭେ ବାହୁଡ଼ିବୁ ଏଥ । ୬ । ତୁମ୍ଭେ କାହିଁ ପାଇଁ ମନେ କରୁଛ ଭାବନା । ଅଳପ ଦିନରେ ଆମ୍ଭେ ବାହୁଡ଼ିବା ସିନା । ୭ । ଗୃହକ ଭରସା ଯେବେ

ଜଳକୁ ପାଇବ । ଉଦର ପୂରିଲେ ସେ ଯେଙ୍କାମାଇ ରହିବ ॥ ଆମ୍ଭେ ଯେବେ ନୃପତର ଦେଖାହିଁ ପାଇବୁ । ରାଜ୍ୟ ଛାଡ଼ି ପରରାଜ୍ୟେ କମାଇ ରହିବୁ ।୯। ସୁଫଳ ହୋଇଲେ କାର୍ଯ୍ୟ ଆସିବୁଁ ବାହୁଡ଼ି । ବାନ୍ଧିବ କି ରହିଇ ନିର୍ମଳ ଜଳ ଛାଡ଼ି ॥ ଏମନ୍ତ ପ୍ରକାରେ ତାକୁ ପ୍ରବୋଧ କରାଇ । ବୋଇତ ଉପରେ ଦୁହେଁ ବସିଲେକ ଯାଇଁ ॥ ଅର୍ଘ୍ୟ ବନ୍ଦାପନା କଲେ ଖୁଲଣା ସୁନ୍ଦରୀ । ହରଷରେ ଆଗରେ କୁମର ଯାଏ ଫେରି ।୧୨। ଖୁଲଣା ସୁନ୍ଦରୀ ଯେ ମଙ୍ଗଳା ମହାମାୟୀ ନିଶ୍ଚିନ୍ତେ ରହିଲେ ପୁତ୍ରକୁ ମେଲଣି ଦେଇ । ୧୩ । ମଙ୍ଗଳାଙ୍କୁ ଧ୍ୟାନ କରି ଶ୍ରୀବନ୍ତ କୁମର । ବୋଇତ ଛାଡ଼ଣି ଦେଲେ ଦରିଆ ଭିତର ।୧୪। ସୋମନାଥ ଭଗରଥ ସଙ୍ଗରେ ଅଛଇ । ମହା ସୁଖେ ଗମନ ଯେ ଶ୍ରୀବନ୍ତ କରଇ ॥ ପୂର୍ବ ମୁଖେ ଆସନ କରିଣ ଶିରୀଧର । ସୋମନାଥ ମୁଖ ଚାହିଁ ବୋଲଇ ଉତ୍ତର ।୧୫। ଦେଖ ସୋମନାଥ ଦଶଦିଶେ ଦୃଷ୍ଟି ଦେଇ । ସପତ ସାଗର ଏଥି ଅଳକୂଳ ନାହିଁ ।୧୬। ଗ୍ରାମ ନ ଦିଶଇ ସବୁ କୁହୁଙ୍କର ମତ । ସପତସିନ୍ଧୁ ମଧ୍ୟେ ଦାରୁଣ ଅଟେ ନାଥ ।୧୮। ମତ୍ସ୍ୟ କୂର୍ମମାନେ ଯେ ବହୁତ ଛନ୍ତି ରହି । ଅସଂଖ୍ୟ ଜୀବ ଅଛନ୍ତି କେ ପାରିବ କହି । ୧୯ । ସପ୍ତଦ୍ୱୀପ ପୃଥ୍ୱୀ ଏ ଜଳରେ ଭାସୁଅଛି । ଏମନ୍ତ ମାୟା ଜଗତେ ଜାଲ ବେଢ଼ାଇଛି ।୨୦। ସୋମନାଥ ବୋଇଲା ତୁ ଶୁଣ ଶିରୀଧର । କଥା ଏ ପୁଛଇ ତୋତେ କହ ମୋ ଆଗର ।୨୧। ତୁହି ତ ବାଳକ ତୋର ବୁଦ୍ଧି ଅଛି ଯେତେ । ଅଜ୍ଞାନ ମୂର୍ଖ କାହିଁ ଅବ ହେବ ତୋତେ । ୨୨ । ମୋହଠାରୁ କନିଷ୍ଠ ତୁ ହୋଇଲେ କି ହେବ । ତୋହର ବୁଦ୍ଧିକି ମୋର ବୁଦ୍ଧି ନ ପଢ଼ିବ ।୨୩। ପାଠପଢ଼ି ସକଳ ଶାସ୍ତ୍ରରେ ଜ୍ଞାତା ତୁହି । ତେଣୁ କରି କଥା ଏ ଯେ ପଚାରଇ ମୁହିଁ ।୨୪। ଏବେ ସେହି କଥା ବାବୁ ସବୁ ତୁ ପ୍ରକାଶ । ଏଣୁ କରି ଏମାନ କହୁଛି ତୋର ପାଶ ।୨୫। ଶ୍ରୀଧର ବୋଇଲା କାହିଁ ପଚାରିବୁ ତୁହି । ଗୋଚର ଥିଲେ ସେ କଥା କହିବି ନା ମୁହିଁ ।୨୪। ସୋମନାଥ ବୋଲେ ସନମତ କର ଯେବେ । ଅଗୋଚର କଥା ମୁହିଁ ପଚାରୁଛି ଏବେ । ୨୫ । ଏ କଥା ବୁଝାଇ ମୋତେ କହ କିନା ବଳା । ଏ ଯେଉଁ ସପ୍ତସାଗର ଅଟେ କାହା ଖେଳା ।୨୭। ଶ୍ରୀଧର

ବୋଇଲା ତୋର ମୁଣ୍ଡ ଯୋଡ଼ୁନାହିଁ । ଏତେ ଅଜ୍ଞାନୀରେ ଭୁଲି ହେଲୁ
କାହିଁପାଇଁ ।୨୭। ସପତ ସମୁଦ୍ର ଭେଦ ଦେବେ ଅଗୋଚର । ଏହା କହି-
ବାକୁ ସକ୍ଷ ଅଛଇ କାହାର । ୨୮ । ଅଳ କୂଳ ନାହିଁ ଯାହାପରେ ପୃଥ୍ୱୀ
ଭାସେ । ତାକୁ କେ ଖୋଜିଲା ବୋଲ୍ ତୋ ମନକୁ ଆସେ । ୩୧ । ଆଦ୍ୟ
ପ୍ରାନ୍ତ କଥା ଯେ ବୁଝାଇ ଦ୍ୟନ୍ତ ମୁହିଁ । ସ୍ୱଭାବେ ମୁଁ କିଛି ତୋତେ କହି ନ
ଯୋଗାଇ ।୩୨। ନୁହଇ ଖୋଜିବା ନୁହେଁ ବ୍ରହ୍ମାଙ୍କ ସର୍ଜନା । ଦେବଙ୍କର
ଦେବ ଯେ ଅଛନ୍ତି ବଳୁସେହ୍ନା ।। ଅନାଦି ଅଚ୍ୟୁତ ଯେ ଅନନ୍ତ ନାମ ତାର ।
ଅଲେଖ ନିର୍ଲେପ ରୂପ କେ କରେ ଗୋଚର ।୩୩। ଅନ୍ତ ଯାର ନ ପାଇଲେ
ହରହର ବ୍ରହ୍ମା । ଷୋଳ ଦଳେ କ୍ରୀଡ଼ା କଲେ ସଙ୍ଗେ ଧେନୁ ରମା । ୩୪ ।
ସହସ୍ର କାମିନୀ ସଙ୍ଗେ ହୋଇ ମଦମତ୍ତ । ରାତି ଦିବା ପଡ଼ଣ ତାହାଙ୍କ ସଙ୍ଗେ
ରତ । ୩୬ । ଅନନ୍ତ ଅଚ୍ୟୁତ ନାମ ବୋଲାଇଛୁ ସେହି । ଆପଣା
ଦେହଥିବାର ତାକୁ ଜଣା ନାହିଁ । ୩୭ । ନାହିଁ ତାର ରୂପ ରେଖ ନାହିଁ
ତାର ଛାୟା । କେଉଁ ଠାରେ ପୂରିଛି ସେ କାହିଁଅଛି କାୟା ।୩୮।
କୀଟ ଯେ ପତଙ୍ଗ ତୃଣ ଆଦି କରି । ସକଳ ଘଟରେ ଯେ
ଆପଣେ ଛନ୍ତି ପୂରି ।୩୯। ଲାଗିକରି ଅଲଗା ଯେ ଥାଇଣ ନ ଥାନ୍ତି । ନୁହଇ
ସେ ବାଳକ୍ରୀଡ଼ା ନୁହଇ ଯୁବତୀ ।। ତାହାର ଭିଆଣ ଅଟେ ସପତ ସାଗର ।
ସେହି ସ୍ଥାପନା କରିଛି ସ୍ୱର୍ଗେ ପୁରନ୍ଦର ।୪୧। ସେ ସିନା ବ୍ରହ୍ମାଙ୍କୁ ବ୍ରହ୍ମଜ୍ଞାନ
ଦେଇଅଛି । ତେଣୁ ପିତାମହ ପୃଥ୍ୱୀ ସର୍ଜନା କରିଛି ।। ଏମନ୍ତ ଶ୍ରୀଧର ସୋମ-
ନାଥକୁ ବୋଇଲା । ତାହା ଶୁଣି ସୋମନାଥ ହରଷ ହୋଇଲା ।୪୩। ଏପରି
ସେ ବେନି ଜନେ କୁହାକୁହି ହୋଇ । ରଜନୀ ଦିବସେ ପଥ ଯାଉଛନ୍ତି
ବହି ।୪୪। ପଞ୍ଚଦିନ ସେପାଞ୍ଚ ପଥ ବହିଗଲେ । ବୋଇତ ଲାଗିଲା ଯାଇଁ
ଯୋକର ହ୍ରଦରେ ।୪୫। ଯୋକମାନଙ୍କ ପ୍ରତିଜ୍ଞା କି କହିବି ମୁହିଁ । ବାଶଗଣେ
ଲମ୍ବ ଅଟେ ତାହାଙ୍କର ଦେହୀ ।୪୬। ଭକ୍ଷିଲେଖା କଲେ ସେ ଛଦିଣ ହାତ
ହେବ । ଏକ ଏକ ଗୋଟି ଯେ ବୋଇତ ଗିଳିଦେବ । ୪୭ । ବେଢ଼ିଲେ
ସାତଶ ଯୋକ ବୋଇତ ପାଶର । ତାହା ଦେଖି ଶ୍ରୀଧର ଯେ ହେଲା ଚମ-

ଉଙ୍କାର ।୪୮। ଏହି ଯୋଦ୍ଧଙ୍କ ମୁଖରୁ କେମନ୍ତେ ବଞ୍ଚିବୁ । ମନେ ବିଚାରିଲା
ଏଥି ନିମନ୍ତେ ନାଶ ଯିବୁ ।୪୯। ଆସିଲାବେଳେ ମାଉସୀ ବୋଲିଥିଲା ଯାହା ।
ପ୍ରତ୍ୟକ୍ଷେ ସେ କଥା ଏବେ ଦେଖାଗଲା ତାହା ।୫୦। ପିତାର ନିକଟେ ଆଉ
ଯାଇ ନ ପାରଇ । ଏହାଙ୍କ ମୁଖରୁ ଯେ କେମନ୍ତେ ପ୍ରାଣ ପାଇ ।୫୧। ବିକଳ
ମନରେ ତହୁଁ ଶ୍ରୀଚନ୍ଦ୍ର କୁମର । ସୋମନାଥ ମୁଖ ଚାହିଁ ବୋଲଇ ଉତ୍ତର ॥
କି କରିବା ସୋମନାଥ ବୁଦ୍ଧି କହ ମୋତେ । ଯୋଦ୍ଧମାନଙ୍କ ମୁଖରୁ ବଞ୍ଚିବା
କେମନ୍ତେ ।୫୩। ସୋମନାଥ ବୋଲଇ ଶୁଣିମା ଶଶିଧର । ଅଗାଧ ସମୁଦ୍ରେ
ହେଲା ମରଣ ଆମ୍ଭର ।୫୪। ଏତେବେଳେ ଆମ୍ଭଙ୍କୁ କେ ରକ୍ଷା କରିପାରେ ।
ସେହି ବା ମଙ୍ଗଳାମାତା ଆମ୍ଭଙ୍କୁ ଉଦ୍ଧାରେ ।୫୫। ସେ ମଙ୍ଗଳା ଏ ଦୁଃଖରୁ
ରଖିଲେ ରଖିବେ । ତାହାଙ୍କର ବିନୁ କେହି ରଖି ନ ପାରିବେ । ୫୬ ।
ହୃଦରେ ବାଳକ ମଙ୍ଗଳାଙ୍କୁ ଧ୍ୟାନ କର । ସ୍ତୁତିବେ ଯେ ଅଟୁ ତୁହି ତାହାଙ୍କ
କୁମର । ୫୭ । ସେ ତୋହର ଦୁରିତ ଫେଡ଼ିବେ ଏହିକ୍ଷଣି । ମନେ ଚିନ୍ତା
କର ତାଙ୍କୁ ତୁ କୁମରମଣି ॥ ଏମନ୍ତ ପ୍ରକାରେ ସୋମନାଥ ଯେ ବୋଇଲା ।
ବିଂଶ ଛାନ୍ଦ ଏହିଠାରେ ସମ୍ପୂର୍ଣ୍ଣ ହୋଇଲା ।୫୯।



## ଏକବିଂଶ ଛାନ୍ଦ

ରାଗ—ରାମକେରୀ ।

ଯହୁଁ ଯୋଦ୍ଧମାନେ ବେଢ଼ିଲେ ତହୁଁ ସୁତ କାତର । ବିଚାରିଲେ
ସେ ଦୁଇ ଜଣ ନ ବଞ୍ଚିବା ଏଥର ।୧। ରଖ ରଖ ସର୍ବ ମଙ୍ଗଳା ଆନ
ରଖିବ କେହୁ । ତୋ ନାମ ଧରିଣ ଏଠାରେ ଆସି ଜୀବନ ଯାଉ ॥ ଏମନ୍ତ
ମନରେ ପଡ଼ିଲା ଦୁବ ଦେବାର କଥା । ତୋଷମନେ ପୁଣି ଛାଡ଼ିଲା ମନେ
ଥିଲା ଯେ ଚିନ୍ତା । ୩ । ବିଚାରିଲା ମୋତେ ମଙ୍ଗଳା ଦୁବ ଦେଇ ଅଛନ୍ତି ।
ଆଉ କେଉଁ କଥା ନିମନ୍ତେ ମୋର ମନରେ ଭ୍ରାନ୍ତି ।୪। ପାଗ ଦେହରୁ ସେ
ଦୁବକୁ ଫିଟାଇଲା କୁମର । ଦେଖିଲା ସେ ଦୁବ ହୋଇଛି ଯେ କଞ୍ଚା ଜର
ଜର । ୫ । ମଙ୍ଗଳା ମହିମା ଏମନ୍ତ ଦୁବ ନ ଶୁଖେ ଯେଣୁ । ବିପତ୍ତି ହରିବ

ବୋଲଣ ପୁଣି ଜାଣିଲ ତେଣୁ । ୬ । ସେ ଦୁବ ସାତକେର୍ ନେଇ ଯତ୍ନେ ଦେଖାଇ ଦେଲା । ଯୋକମାନେ ଝଞ୍ଜ ପଡ଼ିଲେ ତାଙ୍କ ଦର୍ପ ହରିଲା । ୭ । ଯାହାକୁ ମଙ୍ଗଳା ରଖିବେ ଯୋକ କଣ ଗରିବେ । ସୁଜନଜନମାନେ ଭାବ ମାତା ରଖିବେ ଏବେ । ୮ । ଏ କଥା ଶୁଣି ନାରୀମାନେ ହୁଳହୁଳି ଯେ ଦେଲେ । ସଭାରେ ଯେତେ ଜନ ଥିଲେ ହରି ହରି ବୋଇଲେ ।୯। ଏଣିକି ଏ ଛାନ୍ଦ କହୁଛି ଏହି ରାଗେ ଗାଇବ । ଧୀବର ଉକାରୀ ଉପରେ ଦୟା ରଖିଣ ଥିବା । ୧୦ ।

---

## ଦ୍ୱାଦଶ ଛାନ୍ଦ

ରାଗ—ରାମକେରୀ ।

ଶୁଣ ଶୁଣ ସଭାଜନେ ହେ ଏଥିଉତ୍ତାରେ ବାଣୀ । ତୋଷମନ ହୋଇ ଚଳିଲ ତହୁଁ କୁମରମଣି । ୧ । ସୋମନାଥ ଶିରୀଧର ସେ ଏକଠାବରେ ବସି । ବଣିକ ପଣ୍ଡିବା କଥାକୁ ସୁଖ ଦୁଃଖେ ସେ ଭାଷି ।୨। ପଥରେ ବାଘଣି ପଡ଼ିଲ ରକ୍ଷାକଲେ ମଙ୍ଗଳା । ନୋହିଲେ ଆମ୍ଭର ସେଠାରେ ବୁଡ଼ିଥାନ୍ତା ଭେଳା । ୩ । ଆସିବା ବେଳରେ ମାଉସୀ କହିଥିଲେ ଏମନ୍ତ । ଯାଯାତେ ଦେଖିଲୁ ଏଠାରେ ରକ୍ଷା କଲେତ ମାତ ।୪। କେତେଦିନେ ଅମ୍ଭେ ଯାଇଣ ପିତା ଭେଟ ପାଇବା । କେଉଁ ଠାବରେ ସେ ଅଛନ୍ତି କାହାକୁ ପଚାରିବା ॥ ଆସିବା ଦିନରୁ ଏଠିତ ହେଲା ଦିନ ପଚାଶ । କି କରୁଥିବ ମୋ ଜନନୀ ବସିଥିବ କା ପ୍ରାଣ । ୬ । ମୋର କଥାମାନ ସୁମରି ଚିନ୍ତା କରୁଣ ଥିବ । ପିତା ବନ୍ଧେଦରୁ ଏକାନ୍ତେ ସେ ଯେ ସରଣ ଯିବ । ୭ । ବଡ଼ ଉଉଣୀ ଯେ ତାଙ୍କର ତାଙ୍କୁ ନ ପାରେ ଦେଖି । ଭୋ ଦେବ ଧରମଦେବତା ତୁମ୍ଭେ ଥିବ ତ ସାକ୍ଷୀ ।୮। ଆମ୍ଭେ ତନଜଣ ଘିତରେ ବଡ଼ ଦୁଃଖୀ ହୋଇଲୁଁ । ଅନେକ ସୁଖ କରିଥାଇ ଦୁଃଖରେ ଦିନ ନେଲୁଁ । ୯ । ଏହା କି ଆମ୍ଭର କପାଳେ ପୂର୍ବରୁ ଲେଖା ଥିଲା । ମାତା ମୋର ଭିକ୍ଷା ମାଗଇ ପିତା ବନ୍ଦ ହୋଇଲା ॥ ମୁହିଁ ଦେଶାନ୍ତର ହୋଇଲି ସୁଖ ହେଲେ କି ହେବ । ବାହୁଡ଼ାଇ ଅମ୍ଭ-

ରାଜ୍ୟକୁ ଧାତା ସତେକି ନେବ ।୧୧। ଉଗର ଆଗରେ ବହର ପୁତ୍ର ଏମନ୍ତ
ବସି । ମୁହୂର୍ତ୍ତ ମାତ୍ରକ ନ ରହି ଯାନ୍ତି ଦିବସ ଜାଣି । ୧୨ । ନବ ଦିନ ପଥ
ଗଲେ ସେ କାଳନ୍ଦୀରେ ପ୍ରବେଶ । ଦେଖି କାଳୀ କୋପ ହୋଇଲା ଯେହ୍ନେ
ସିଂହ ସଦୃଶ ।୧୩। ଏକ ହସ୍ତେ ଅଛି ଖଡ଼ଗ ଏକ ହସ୍ତରେ ଖଣ୍ଡା । ଧାଇଁଛି
ପବନ୍ନ ପ୍ରଖର ଘୋର କୋପ ପ୍ରଚଣ୍ଡା । ୧୪ । ଗର୍ଜ୍ଜନ ଘାତେ ବସୁନ୍ଧରା
ଥରହର କମ୍ପଇ । ତାହା ଶୁଣି କାହା ଶ୍ରବଣ ବଧିର ବା ନ ହୋଇ ।୧୫।
ଦେଖି ସୋମନାଥ ଶ୍ରୀଧର ଦୁହେଁ ଚକିତ ହେଲେ । ଦୁଃଖନାଶ ଗ୍ରାମ ଦେବୀଙ୍କି
ସୁମରଣା ସେ କଲେ । ୧୬ । ରଖ ରଖ ଗ୍ରାମଦେବୀ ଗୋ ଏହି ଦୁଃଖରୁ
ରଖ । ତୁମ୍ଭେ ନ ରଖିଲେ ମାତା ଗୋ ଅମ୍ଭେ ହେଲୁଁ ନିରେଖ ।୧୭। ମାତା
ପିତାଙ୍କର ବଦନ ଦେଖି ପାରିଲୁ ନାହିଁ । ବୃଥା ମୋ ପ୍ରାଣ ଯାଉଛି ରଖ
ମଙ୍ଗଳା ତୁହି । ୧୮ । ବାଳକର ମନ ଜାଣିଲେ ଗ୍ରାମଦେବତୀ ମାଏ । ଚିନ୍ତି-
ଥିଲେ ଦୁଃଖେ ପଡ଼ିଛି ମୋର ବାଳ ତନୟେ । ୧୯ । ତତକ୍ଷଣେ ଗ୍ରାମଦେ-
ବତୀ ପ୍ରବେଶିଲେକ ଯାଇ । ବାଳକ ଶିରରେ ପଣନ୍ତ ମାଏ ଦେଲେ
ଘୋଡ଼ାଇ ।୨୦। ବୋଇଲେ ତୁ ଚିନ୍ତା ନ କର ଅରେ ବାଳକମଣି । ଯେ
ଖଣ୍ଡା ମୁଁ ତୋତେ ଦେଇଛି ଦୁଃଖ ହରିବ ପୁଣି । ୨୧ । ସେ ଖଣ୍ଡାକୁ କାଳୀ
ଦେଖିଲେ ତାର ଦର୍ପ ହରିବ । ଶତେ ସିଂହର ପରାକ୍ରମ ଥିଲେ ଶୃଗାଳ
ହେବ । ୨୨ । ଏହା ମୋତେ କହି ଅଛନ୍ତି ପୂର୍ବେ ରୁଦ୍ରଦୁଲାଳ । ଏହିକଥା
ସେହି ଜାଣନ୍ତି ଅରେ ଖୁଲଣାବାଳ । ୨୩ । ଖଣ୍ଡାକୁ ତୁ ନେଇ ଦେଖାଅ
କାଳୀ ଯାଉ ପଳାଇ । ଭୟ ମନୁ ଛାଡ଼ି ଦିଅ ରେ ମୋର ବାଳ ତନୟି ॥
ଏତେ କହି ଗ୍ରାମଦେବତୀ ଶୂନ୍ୟମାର୍ଗରେ ଗଲେ । ସେ କଥା ଶୁଣି ବେନି-
ଜନେ ମନେ ହରଷ ହେଲେ ॥ ଖଣ୍ଡାକୁ ନେଇ ଦେଖାଇଲେ କାଳୀ ନିକଟେ
ଶିଷ୍ୟ । ଶତେ ସିଂହର ପରାକ୍ରମ ବେଗେ ହୋଇଲା ନାଶ । ୨୬ । ସ୍ତମ୍ଭୀଭୂତ
ହୋଇ ରହିଲା ଜମ୍ଭ ପରାୟେ କାଳୀ । ତେଜ ତାର କେଣେ ଲୁଚିଲା ଯେହ୍ନେ
ଅଙ୍ଗାର କାଳୀ । ୨୭ । ପକ୍ଷୀଙ୍କର ଡେଣା ଭାଙ୍ଗିଲେ ଯେଉଁରୂପେ ପଡ଼ନ୍ତି ।
ବନ୍ଦୀଜନ ମାନେ ବନ୍ଦରେ ଯେଉଁ ଦୁଃଖ ସହନ୍ତି । ୨୮ । କି ଅବା ଗରୁଡ଼

ଲୋପରେ ସର୍ପ ହୋଇଲା ଭେକ୍ କୁ ଅବା ଇନ୍ଦୁର ଟେକିଲା ମଞ୍ଜାରର ନିକଟ ॥
କି ଅବା ସିଂହକୁ ଦେଖିଲେ ହସ୍ତୀ ଛାଡ଼ି ପଳାଇ । ସମୀର ଘାତରେ
ଯେସନେ ରମ୍ଭା ବନ ଭାଙ୍ଗଇ । ୩୦ । ତେମନ୍ତ ପ୍ରକାରେ କାଳୀର ବୁଦ୍ଧି
ହୋଇଲା ବଣା । ପଦ୍ମନାଭ ଯେବେ ନ ଥାଇ.ଅଛି ଥାଇଛି କଣା ।୩୧। ତା
ଦେଖି ଖୁଲ୍ଲଣା ତନୟ ସାଗରକୁ ଡେଇଁଲା । ବାମହସ୍ତେ ଯାଇଁ ତ୍ୱରିତେ
କାଳୀ କେଶ ଧଇଲା ।୩୨। କୃତକେଶୀକ ଯେଉଁରୂପେ କୃଷ୍ଣ ଧରିଣଥିଲେ ।
ସେହି ପ୍ରକାରେଣ ଶ୍ରୀଧର ତାକୁ ଯାଇ ଧଇଲେ । ୩୩ । ବୋଇତ ଉପରେ
ତାହାକୁ ବେଗେ ଥୋଇଲା ଆଣି । ଶାନ୍ତମୂର୍ତ୍ତି ହୋଇ ବାଳକ ଧୀରେକହଇ
ବାଣୀ । ୩୪ । କହ.କେଉଁଠାରୁ ଅଇଲୁ କାହିଁ ବିଶ୍ରାମ ତୋର । ଦକ୍ଷିଣ
ଭୁଜେ ଧରୁ ଖଣ୍ଡା ବାମ ହସ୍ତେ ଖପର । ୩୫ । ପିଙ୍ଗଳ ବର୍ଣ୍ଣ କେଶ ତୋର
ଭୟଙ୍କର ମୂରତ । ସତ୍ୟକରି କହ ମୋ ଆଗେ ତୋର କେ ଅଟେ ପିତ ॥
ଏ ବଚନ ଶୁଣି କାଳିକା କହୁଛନ୍ତି ଉତ୍ତର । ତଥ୍ୟ କଥା ଶୁଣ କହୁଛି ଖୁଲ୍ଲ-
ଣାର କୁମର । ୩୭ । ପୂର୍ବେ ଥିଲା ମୋର ଆଶ୍ରମ ଯାଇ ପାତାଳ ପୁରେ ।
ଚରଣେ ମୋର ଖଟିଆନ୍ତି ସର୍ବେ ସୁର ଅସୁରେ । ୩୮ । ତ୍ରେତୟା ଯୁଗରେ
ଶ୍ରୀରାମ ଦଶରଥଙ୍କ ପୁଅ । ତାହାଙ୍କ ଯୁବତୀ ଅଟନ୍ତି ଜନକ ରାଜା ଝିଅ ।୩୯।
ପିତା ସତ୍ୟ ପାଳି ଶ୍ରୀରାମ ବନବାସକୁ ଗଲେ । ଭାଇ ଭାରିଯା ଏ ବେନିଙ୍କି
ସଙ୍ଗତରେ ସେ ନେଲେ । ୪୦ । ଏଥୁ କିଛିଦିନ ଅନ୍ତରେ ସୀତା ରାବଣ
ନେଲା । ଋଷ୍ୟମୂକେ ସୁଗ୍ରୀବରକୁ ରାମ ଭେଟ ପାଇଲା ।୪୧। ତା ସଙ୍ଗେମଇତ୍ର
ହୋଇଣ ବାଳି ପ୍ରାଣକୁ ନେଲେ । କଷ୍କିନ୍ଧ୍ୟା ରାଜ୍ୟରେ ସୁଗ୍ରୀବ ତହିଁ ରାଜା
କରିଲେ । ୪୨ । ତାର ସୈନ୍ୟବଳ ଘେନଣି ରାମ ଗଲେ ଲଙ୍କାକୁ । ଯୁଦ୍ଧ
ଆରମ୍ଭିଣ ମାଇଲେ ସେ ଯେ କୁମ୍ଭକର୍ଣ୍ଣକୁ । ୪୩ । ଇନ୍ଦ୍ରଜିତ ପ୍ରାଣ ଘେନିଣ
ବୀରବାହୁ କୁମର । ରାବଣର ବଂଶ ନାଶିଲେ ମାଇଲେ ଦଶଶିର । ୪୪ ।
ମହୀରାବଣ ବୋଲିକରି ଥିଲା ତାର କୁମର । ସେ ଆସି ମହାଯୁଦ୍ଧ କଲା ଶ୍ରୀରା-
ମଙ୍କ ସଙ୍ଗର ।୪୫। ଯୁଦ୍ଧରେ ରାମଙ୍କୁ ନ ପାରି ମାୟା ପୁଣି ସେ କଲା । ବିଭୀ-
ଷଣ ରୂପ ଧରିଣ ରାମଙ୍କୁ ହରିନେଲା । ୪୬ । ପାତାଳ ଭୁବନେ ରଖିଲା

ରଘୁନାଥଙ୍କୁ ନେଇ । ମୋର ଆଗେ ବଳି ଦେବାକୁ ମହୀରାବଣ କହି ।୪୭।
ଦେଖେ ହନୁ ଗ୍ରାମ ନଗରେ ରାମ ନାହାନ୍ତି ଯେଣୁ । ବ୍ରାହ୍ମଣ ସ୍ୱରୂପ
ହୋଇଣ ହନୁ ଲୋଡ଼ନ୍ତି ତେଣୁ । ୪୮ । ପାତାଳ ପୁରରେ ମିଳିଲା ରଘୁନାଥ
ଅଗ୍ରତେ । ବୋଇଲା ହେ ଦେବ ଶ୍ରୀରାମ ଏଥୁ ଯିବା କେମନ୍ତେ ।୪୯। ଶ୍ରୀରାମ
ବୋଇଲେ ଏଠାରୁ ଆଉ ଯାଇ ନ ପାର । ଧ୍ୟାନ ଶେଷ ହେଲେ ଏଇଠି
ଦେବ ସେ ମୋତେ ମାର । ୫୦ । ଇନ୍ଦ୍ରଜିତଠାରୁ ଅଧିକ ମାୟା ଜାଣେ
ପାପିଷ୍ଠ । କି ବୁଦ୍ଧି କରିବା ଏଥର ଅରେ ପବନ ସୁତ ।୫୧। ଶୁଣି ହନୁମନ୍ତ
ଚଳିଲା ରାମଚନ୍ଦ୍ର ପାଶକୁ । ମୁହିଁ ନ ଜାଣଇ ମାଗୁଛି ମୁଁ ଯେ ତୁମ୍ଭ କୃପାକୁ ॥
ହନୁମନ୍ତଙ୍କୁ ମୁଁ ପୁଚ୍ଛନ୍ତେ ସେ ଯେ ମୋତେ କହିଲା । ଶ୍ରୀରାମଙ୍କୁ ପାପି ଦଇତ
ଏଥି ଘେନି ଅଇଲା । ୫୩। ତୋର ସନମୁଖେ ସେ ବଳି ଦେବା ପାଇଁ ଟି
ଅଣି। ରଘୁନାଥ ବସ୍ତୁ ଅଛନ୍ତି ଛାଡ଼ି ଦିଅ ତୁ ପୁଣି । ୫୪ । ଏହା ଶୁଣିକରି
ହନୁଙ୍କୁ ମୁଁ ବୋଇଲି ଉତ୍ତର । କାଲି ଯେତେବେଳେ ମୋ ପାଶେ ବଳିଦେବ
ଅସୁର । ୫୫ । ରାମଙ୍କୁ ସୁବେଶ କରିଣ ଦୈତ୍ୟ କହିବ ବାଣୀ । ଦରଶନ
କର କାଳୀକି ଅହେ କୋଦଣ୍ଡପାଣି ।୫୬। ଯେତେବେଳେ ତାଙ୍କୁ ବୋଲିବେ
ସେହି ଜାନକୀନାହା । କେମନ୍ତ ଦର୍ଶନ କରନ୍ତି ଅମ୍ଭେ ନ ଜାଣୁ ତାହା ॥
ତୁମ୍ଭେ ଆଗେ କଲେ ଦର୍ଶନ ଅମ୍ଭେ ପଛେ କରିବୁଁ । ଶିକ୍ଷା ପାଇଲେଣ
ଓଳଗି ଅମ୍ଭେ ତାଙ୍କୁ ହୋଇବୁଁ । ୫୮ । ଶୁଣ ଶୁଣ ହନୁମନ୍ତ ହେ କହୁଅଛୁଁ
ବଚନ । ଦୈତ୍ୟ ଯେତେବେଳେ ଓଳଗି ହୋଇ ଥିବଟି ପୁଣ ।୫୯। ସେହି
ସମୟେ ହନୁମନ୍ତ ଖଣ୍ଡା ବଢ଼ାଇ ଦେବୁ । ଦୈତ୍ୟ ମୁଣ୍ଡ କାଟି ରାମଙ୍କୁ ନେଇକି
ଘେନିଣ ଯିବୁ । ୬୦ । ଯାଅ ତୁ ରାମଙ୍କୁ କହିବୁ ଏସନକ ବିଧାନ । ଏହା
ଶୁଣିକରି ଚଳିଲା ପବନର ନନ୍ଦନ ।୬୧। ରଘୁନାଥଙ୍କୁ ସେ କହିଲେ ବୃତ୍ତା-
ନ୍ତଣ ସକଳ । ତାହା ଶୁଣିକରି ହରଷ ଦଶରଥଙ୍କ ବାଳ ।୬୨। ଶ୍ୱେତ ମାଛି-
ରୂପ ହୋଇଣ ହନୁ ମୋ ପାଶେ ଥାଇ । ଏଥୁ ଅନନ୍ତରେ ରଜନୀ ବେଗେ
ଗଲାକ ପାହି ।୬୩। ରାମଙ୍କୁ ସ୍ନାହାନ କରାଇ ଦୈତ୍ୟ ଘେନି ଅଇଲା । ଦର-
ଶନ କର ବୋଲିଣ ନିଶାଚର ବୋଇଲା ।୬୪। ଶ୍ରୀରାମ ବୋଇଲେ କେମନ୍ତେ

ଦରଶନ କରନ୍ତ । ଅମ୍ଭେ ରାଜପୁତ୍ର ବୋଲାଉ ଅମ୍ଭେ ନ ଜାଣୁ କିଛି ।୬୫।
ତୁମ୍ଭେ ଆଗେ କଲେ ଦର୍ଶନ ଅମ୍ଭେ ପଛେ କରିବୁଁ । କେମନ୍ତ ଓଳଗି ହୁଅନ୍ତି
ତୁମ୍ଭଠାରୁ ଶିଖିବୁଁ ॥ ଏ ବଚନ ଶୁଣି ଦଇତ ଓଳଗିଣ ହୋଇଲା । ଖଣ୍ଡା
ଦୋଳି ହନୁ ହସ୍ତରେ ସେ ଯେ ତାକୁ ମାଇଲା ।୬୭। ସେ କାଳେ ତାହାଙ୍କ
ବୋଇଲ ହେ ଦଶରଥ ଶିଷ୍ୟ । ନାନାପ୍ରତ ବର୍ନା ଦଇତ ଦେଇଥିଲା ମୋ
ପାଶ ॥ ତୁମ୍ଭର ନିମନ୍ତେ ତାହାର ପ୍ରାଣ ଦଳିଲି ମୁହିଁ । ଏବେ ମୋହ
ପାଖେ ଅସିଣ ବଳି ଦେବଟି କେହ୍ନ ॥ ଏହା ଶୁଣିକରି ଶ୍ରୀରାମ ମନେ
ହରଷ ହେଲେ । ମହିପୁରକୁ ତୋତେ ନେବି ଯୁଦ୍ଧ ଶେଷ ହୋଇଲେ । ୭୦ ।
ସୀତାଙ୍କୁ ଘେନି ଶ୍ରୀରାମ ଆଇଲେକ ଲଙ୍କାରୁ । ହନୁ ଯାଇ ମୋତେ ଅଣିଲା
ଧରି ପାତାଳପୁରୁ ।୭୧। ବଙ୍ଗ ଦେଶେ ମୋତେ ଛାଡ଼ିଲା ତହିଁ ରହିଲି ମୁହିଁ ।
ନାନା ବଳିଭୋଜୀ ମୋ ପାଶେ ନରେ ଦିଅନ୍ତି ନେଇ ॥ କିଛିଦିନ ଅନ୍ତେ
ତ୍ରେତୟା ଯୁଗ ଶେଷ ହୋଇଲା । ଦ୍ୱାପର ଯୁଗ ଶେଷ ହୋଇ କଳି ପ୍ରବେଶ
ହେଲା ॥ ଛତ୍ରିଶକୋଟି ଜନ ପୃଥ୍ୱୀରେ ନର ଥିଲେ ଯେତେକ । ତାଙ୍କ ମୁଣ୍ଡ-
କାଟି ରୁଧିର ପାନ କଲି ତେତେକ ॥ ପ୍ରତିଜ୍ଞା ଦେଖାଇ ହସ୍ତରେ ଘେନି
ଖପର ଖଣ୍ଡା । ନରବର୍ନା ରକ୍ତ ଖାଇବି ପୃଥ୍ୱୀ କରିବି ଲଣ୍ଡା । ୭୫ । ତୁ ପୁଣି
ଏଥିକୁ ଅଇଲୁ ତୋତେ ଗ୍ରାସ କରନ୍ତି । ଅଧର୍ମ ହୋଇବ ତୁ ପୁଣି ମୋହର
ଅଣନାତି ।୭୬। ଶୁଣି ଶିରୀଧର ବୋଇଲା କାଳିକାଙ୍କ ଅଗ୍ରତେ । ସ୍ୱରୂପ
କରି ମୋତେ କହ ଅଣନାତି କେମନ୍ତେ ॥ କାଳିକା ବୋଇଲେ ଶୁଣରେ
ଧନେଶ୍ୱରର ସୁତ । ଅନନ୍ତେଶ୍ୱର ବୋଲି କହ ସେ ତୋ ପିତାର ତାତ ॥
ବେପାର କରିବା ନିମନ୍ତେ ବୋଇତରେ ସେ ଗଲା । ବୈଶାଖମାସ ଶୁକ୍ଳ-
ପକ୍ଷ ଦ୍ୱାଦଶୀ ହୋଇଥିଲା ॥ ବଙ୍ଗ ଦେଶରେ ସେ ମିଳିଲା ଯାଇଁ ସନ୍ନିଧ୍ୟେ
ମୋର । ମାରିବାକୁ ମୁଁ ଯେ ଧାଇଁଲି ଘେନି ଖଣ୍ଡା ଖପର । ୮୦ । ମୋର
କୋପମୂର୍ତ୍ତି ଦେଖିଣ ସେ ଶରଣ ପଶିଲା । ଜଗନ୍ନାଥଙ୍କର କୈବଲ୍ୟ ମୋର
ହସ୍ତରେ ଦେଲା ।୮୧। ବାନସ୍ୱେ ବଚନ କହିଲା ତୁ ଯେ ମାତା ମୋହର ।
ଶରଣ ଆଜହୁଁ ପଶିଲି ମୁଁ ଯେ ପୁତ୍ର ତୋହର । ୮୨ । ମୋହର ବଂଶରେ

ଯେତେକ ତାଙ୍କୁ ଘୁଞ୍ଚିବୁ ତୁହି । ତେଣୁକର ତୋର ହସ୍ତରେ ଦେଲି କୈବଲ୍ୟ ନେଇ ।୮୩। ତାହାର ପୁତ୍ର ଅସୁଅଛି ଧନେଶ୍ୱର ତା ନାମ । ରାଜଧାନୀପଣ ଅଛଇ ଘାଗରା ଦେଶ ଗ୍ରାମ ।୮୪। ବେପାର କରିବା ନିମନ୍ତେ ଏଠାକୁ ସେ ଆସଇ । ଦଶପାଞ୍ଚ ଥର ତାହାକୁ ଦେଖି ଅଛଇ ମୁହିଁ ।୮୫। ମୁଁ ପୁଣି ତାକୁ ପଚାରନ୍ତେ କହିଲା ମୋ ଆଗର । ଶତେ ବେନି ରାଣୀ ଅଛନ୍ତି ପୁତ୍ର ନାହିଁ କା କୋଳ ॥ ଆଜହୁଁ ଅଷ୍ଟ ବର୍ଷ ହେଲା ଯାଉଛି ସେ ଏଣିକ । ତୁ ପୁଣି ତା ପୁତ୍ର କେମନ୍ତେ ଯାଉଅଛୁ କେଣିକ ॥ ମୁଁ ପୁଣି କେମନ୍ତେ ଜାଣନ୍ତି ଲାଗିଲାକ ସନ୍ଦେହ । ଖଣ୍ଡା ଦେଖି ବଚାରିଲି ମୁଁ ତୁ ଧନେଶ୍ୱର ପୁଅ ।୮୮। ପୂର୍ବେ ତୋହର ପିତା ଯେହୁ ବିଦେଶକୁ ଚଳଇ । ପଚାରନ୍ତେ ମୋତେ କହିଲା ମୋର ନନ୍ଦନ ନାହିଁ ।୮୯। ନାରଦ ଆସିଣ ମୋ ପାଶେ ଦିନେ ପ୍ରବେଶ ହେଲେ । ଧନେଶ୍ୱର ରାଜା ମନ୍ଦିରେ ପୁତ୍ର ନୋହିଲା ଭଲେ ।୯୦। ପଶ୍ଚାତେ କୁଳରେ ନନ୍ଦନ ଜାତ ହେବଟି ପୁଣ । ନ ଜାଣିବାପଣେ ତୋ ଶିର ନ କଲିଟି ଛେଦନ ।୯୧। ଏହା ଦେଖି କରି ସପ୍ରତେ ଗଲା ମୋର ମନକୁ । ଆଦ୍ୟ ଖଣ୍ଡା ଏହି ମୋହର ଦେଲି ଗଜାନନକୁ । ୯୨ । ବୋଇଲି ଧନେଶ୍ୱର ବଂଶେ ଯେବେ କେହି ଆସିବ । ଏ ଖଣ୍ଡା ତୁମ୍ଭେ ତାଙ୍କୁ ଦେବ ସଙ୍ଗରେ ଘେନିଥିବ ॥ ମୋର ହସ୍ତୁ ଖଣ୍ଡା ଘେନିଣ ଗଲେ ରୁଦ୍ରଙ୍କ ଶିଷ୍ୟ । ସେ ପୁଣି ନେଇ ସମର୍ପିଲେ ଗ୍ରାମଦେବତା ପାଶ ॥ ଖଣ୍ଡା ଦେଖିଣ ବଚାରିଲି ଧନେଶ୍ୱର ସନ୍ତତ । ଧର୍ମରେ ତୁ ପରା ହୋଇବୁ ମୋହର ଅଣନାତି ।୯୩। ପିତା ତୋର ଅଛି ବନ୍ଦରେ ତାର ପାଶକୁ ଯାଅ । ଏହା ଶୁଣି କରି ବୋଲଇ ସେ ଧନେଶ୍ୱର ପୁଅ ॥ ତୁ ଯେବେ ମୋତେ ଦୟାକଲୁ ମାଗୁଅଛି କଥା ଏ । ଦେଇ ପାରିବୁ କି କହିବ ଅଗୋ କାଳିକା ମାଏ ॥ ସେ ବୋଇଲେ କାଏ ମାଗିବୁ ମୋତେ ମାଗ ଶ୍ରୀଧର ବୋଇଲେ ମୋ ମାତ ତୁମ୍ଭେ ତ ଏବେ ନିୟମ କର ॥ ଏହା ଶୁଣିକରି କାଳିକା ବେଗେ ନିୟମ କଲେ । ତୁହି ଯାହା ମୋତେ ମାଗିବୁ ନଶ୍ଚେ ଦେବି ବୋଇଲେ ।୯୯। ତିବାର ସତ୍ୟ ସତ୍ୟ କରି ଘେନି ଜଳ ହସ୍ତରେ । ବୋଇଲେ କାଏ ତୁ ମାଗୁଛୁ କହ ମୋହ ଆଗରେ ।୧୦୦।

ଏହା ଶୁଣିକର ବୋଇଲା ଧନେଶ୍ୱରର ପୁଅ । ଏବେ ତୁ ଏଣିକି ଗୋଡ଼ାଇ
ନରବଳି ନ ଖାଅ ।୧୦୧। ତୁ ଯେବେ ଏମନ୍ତ କରିବୁ ସବୁ ହୋଇବେ
ସତ୍ୟେ । ଚରଣେ ତୋର ପୂଜିବାକୁ ଅଭ ରହିବେ କିଏ ।୧୦୨। ପଣ୍ଡିତ
ସୁଜନ ମୁଖ୍ୟ ବିପ୍ରେ ଶ୍ରୀଆଦି ରାଜା । ତୋର ପ୍ରତିମୂର୍ତ୍ତି ମଣ୍ଡପରେ କାହିଁ-
ପାଇବେ ପୂଜା ।୧୦୩। କାଳିକା କହିଲେ ଶ୍ରୀଧର ସତ କହିଲୁ ତୁହି ।
ଆଜହୁଁ ନରବଳି ନିଷ୍ଟେ ନ ଖାଇବି ତ ମୁହିଁ ।୧୦୪। ଏମନ୍ତ ପ୍ରକାରେ
କାଳିକା ତାଙ୍କୁ କହନ୍ତି ବାଣୀ । ତିନିଦିନ ପଥ ଯେଠାରୁ ଚଳି ଗଲାକ ପୁଣି।।
କଳାପ ବୋଲି ଏକଗ୍ରାମ ତହିଁ ହେଲେ ପ୍ରବେଶ । କାର୍ତ୍ତିକେଶ୍ୱର ବୋଲି
ତହିଁ ଅଛି ଏକ ନରେଶ ।୧୦୫। ତାହାର ଦ୍ୱାଦଶ ନନ୍ଦନ ରାଜା ଧାର୍ମିକ
ଅଟେ । ନିତିଦିବସ ସେ ଦେବତା ବିପ୍ର ପାଦରେ ଖଟେ ।୧୦୬। ସେ
ଦେଶକୁ ଗଲା ଶ୍ରୀଧର ତହିଁ ହେଲା ପ୍ରବେଶ । ଦେଖିଲା ଦରଶନ କରି ଶୁଣ
ହେ ନରଈଶ ।୧୦୭। କୋମଳ ବଚନ କହଇ ସେ ଯେ ରାଜା ଅଗ୍ରତେ ।
ଏ କାଳିକା ରଖିଥାଅ ହେ ତୁମ୍ଭପୁରେ ନିଶ୍ଚିନ୍ତେ ।୧୦୮। ବିରୂପା ଦେଶ
ମୁଁ ଯାଉଛି ତହୁଁ ଅଇଲେ ଫେରି । କାଳୀକି ପୁଣି ମୁଁ ନେବଇଁ ଶୁଣ ହେ
ଦଣ୍ଡଧାରି ।୧୧୦। ଏ ବଚନ ପୁଣି ନୃପତି ବୋଲୁ ଅଛନ୍ତି ତାକୁ । କେ
ତୁମ୍ଭର ଅଟେ ପିଅର ତୁମ୍ଭେ କହ ଆମ୍ଭଙ୍କୁ ।୧୧୨। ତୁମ୍ଭ ନାମ କିସ ଅଟଇ
କେଉଁ ଦେଶରେ ଗ୍ରାମ । କିମ୍ପାଇ ଏଥକୁ ଅଇଲ କହ ମାତାର ନାମ ।୧୧୩
ଶ୍ରୀଧର କୁମର ବୋଲଇ ଶୁଣ ହେ ନରନାଥ । ଘାଗରା ଦେଶ ଘର ମୋର
ଧନେଶ୍ୱରଙ୍କ ସୁତ ।୧୧୩। ଖୁଲଣା ବୋଲିଣ ଅଟଇ ମାତାନାମ ମୋହର ।
ବୁଢ଼ାବାପ ନାମ ଅଟଇ ରାଜା ଅନନ୍ତେଶ୍ୱର ।୧୧୪। ମୋ ନାମ ଅଟଇ
ଶ୍ରୀଧର ମୁଁ ଯେ ଖୁଲଣା ନିଧି । ଛୟାନବେ ପୁଣ ଅମ୍ଭର ଅଟେ ଗ୍ରାମର ଅଧି।।
ବହୁତ ବରଷ ହୋଇଅଛି ପୁତ୍ର ନୋହିଲେ ଜାତ । ସେ ନିମନ୍ତେ ଚିନ୍ତା
କରଇ ନିତି ପ୍ରତି ମୋ ତାତ ।୧୧୬। ଶତେ ବେଳା ଗୋଟି ଯୁବତୀ ପୁତ୍ର
ହୋଇଲା ନାହିଁ । ତେଣୁ କରି ପିତା ମୋହର ବିପ୍ର ପାଦେ ସେବଇ ।୧୧୭।
ଏକଦିନେ ପିତା ଉଠିଣ ଗୃହିଁ ଦେଲା ପ୍ରଭାତେ । ସିଂହଦ୍ୱାରେ ହାଡ଼

ଗୋଟାଏ ପୁଣି ଦେଖିଲୁ ନେନେ । ୧୧୮ । ଯେ ହାଡ଼ ବୋଇଲୁ କାହିଁକି ଏଥକୁ ମୁଁ ଅଇଲ । କେଉଁ ଦୁଃଖ ଆଜ ପଡ଼ବ ଅପୂର୍ବିକେ ଗୃହିଁଲ ।୧୧୯। ଏ ବଚନ ଶୁଣି ମୋ ପିତା ମନେ ତ୍ରେଷ ହୋଇଲୁ । ଆଜହୁଁ ଏ ରାଜ୍ୟ ତେଜିବ ନ ରହିବ ବୋଇଲୁ । ୧୨୦ । କନିଷ୍ଠ ରାଣୀ ଯେ ଖୁଲଣା ମାତା ମୋର ଯେ ଅଟେ । ଗର୍ଭବାସ ହୋଇ ଅଛଇ କହେ ପିତା ନିକଟେ ।୧୨୧। ମୋ ପିତା ବୋଇଲୁ ଯେବେ ଗୋ ଗର୍ଭବାସ ତୋହର । ପୁତ୍ର ଜନମିଲେ ଆସିବ ଫେର ଆପଣା ଘର । ୧୨୨ । ଏମନ୍ତ ବୋଲିଣ ମୋ ପିତା ରାଜ୍ୟ ଛାଡ଼ି ଅଇଲେ । ସୁଦର୍ଶନ ରାଜା ବନ୍ଦରେ ନେଇ ତାଙ୍କୁ ରଖିଲେ । ୧୨୩ । ଲେଖାରେ ଆଜକୁ ହେଲଣି ଆଠ ବରଷ ଯେଣୁ । ପିତାକୁ ଅଣିବା ନିମନ୍ତେ ମୁଁ ଯେ ଅଇଲି ତେଣୁ ।୧୨୪। ବାହୁଡ଼ି ଅଇଲେ କାଳିକା ଘେନି ଯିବ ପୁରକୁ । ଏ ବଚନ ଶୁଣି ନୃପତି ତୋଷ କଲୁ ମନକୁ ।୧୨୫। ଦ୍ୱାବିଂଶ ଛାନ୍ଦକୁ ପାଠରେ ଆଣି କଲି ସମ୍ପୂର୍ଣ୍ଣ । ଚଉଦ ଅକ୍ଷରେ ଏଣିକି ଛାନ୍ଦକହେ ସୁଜନ ।୧୨୬। କହଇ ଧୀବର ଭକାରୀ ମୋତେ ରଖ ମଙ୍ଗଳା । ନ ଆସିଲୁ ପଦମାନଙ୍କୁ କହି ଦିଅ ମୋ ଗଳା । ୧୨୭ ।

---

## ତ୍ରୟୋବିଂଶ ଛାନ୍ଦ

ରାଗ—ପଞ୍ଚମବରାଡ଼ି—କଳଶାବାଣୀ ।

କାଳିକା ଦେଇ କୁମର ବାହୁଡ଼ି ଅଇଲୁ । ରାଜା ମଧୁବନରେ ଯେ ପ୍ରବେଶ ହୋଇଲୁ । ୧ । ଦେଖିଲୁ ଯେ ନନ୍ଦନ ବନସ୍ତ ମନ କାଣି । ଫଳ ପୁଷ୍ପ ଭରେ ନୁଏ ଲୋଟନ୍ତି ଧରଣୀ । ୨ । ଆମ୍ବ ପଣସ ନାରଙ୍ଗ ନଡ଼ିଆ ଅଛଇ । କଇଁଥ କଦଳୀ କରମଙ୍ଗା ଅଛି ତହିଁ । ୩ । ଦମ୍ଭଣା ତୁଳସୀଦଳ ପଦ୍ମ ପନ୍ତ ପନ୍ତ । ଅଳାଇଚ ବୃକ୍ଷ ଘେନି ଅଁଳା ଅଛନ୍ତି ॥ ନାଗେଶ୍ୱର ବେଲପତ୍ରୀ ଲବଙ୍ଗ ତାମ୍ବୂଳ । ତାଳ ଖଜୁରୀ ଯେ ପାଚି ପଡ଼ିଅଛି ତଳ । ୫ । ଜେଉଟ ହରଡ଼ା ସଙ୍ଗେ ପୁନ୍ନାଙ୍ଗ ବଉଳ । କୁସୁଅନା ମାଳତୀ ଆବର ବଙ୍ଗହୁଳ । ୬ । କନ୍ଦାଖାଇ ଡିମ୍ବିର ଯେ ବାଉଁଶ ବନ୍ଧୁଣୀ । ଡ଼ାଳଚିନି ଲବଙ୍ଗ

ଦାକ୍ଷା ସହିତେଣ ।୭। ଲଙ୍କାସିଝୁ ନାମ୍ବ ବୃକ୍ଷ ବେଲ ବରକୋଳି ।
ପାଳଧୁଆ ଜାମୁ ବୃକ୍ଷ ଅବର ଶିମିଳୀ ॥ କଲୁତରୁ କୋଚିଲା କଦମ୍ବ
କନିଅର । ଡାଳିମ୍ବ ସାହାଡ଼ା ଯେ ପିପ୍ପଳୀ ଡୁମ୍ବୁର ।୯। ଦେବଦାରୁ
ଅଶୋକ ଯେ ମାଳତୀ ପର୍ଯ୍ୟନ୍ତେ । ଅବର ସେ ମଧୁବନେ ବୃକ୍ଷ ଛନ୍ତି
ଯେତେ ।୧୦। ଏକ ଏକ ନାମ ଗୋ କହିଲେ ନ ସରଇ । କି ଜାଣି
ନନ୍ଦନବନ ଅଟଇ ଯେ ସେହି ।୧୧। ନାନାଜାତି ପକ୍ଷୀମାନେ ହୁଅନ୍ତି ଯେ
ମେଳ । ପାଣିକୁଆ ସଙ୍ଗରେ ଯେ ଅଛଇ କୁହାଳୀ ।୧୨। କପୋତ
ପାଣିକୁଆ ଚୂଳଆ ସାରୀ ପିକ । କୁକୁଡ଼ା କୋଚିଲଖାଇ ବାଦୁଡ଼ି ଯେ
କାକ ।୧୩। ହଂସ ସାରସ ଉଲ୍ଲୁକ ଛଞ୍ଚାଣ ପାରୁଆ । କାଜରଙ୍ଗ ଥେଣ୍ଟ
ପକ୍ଷୀ ସଙ୍ଗେ ପାଣିକୁଆ ॥ ସମକିକା ଅମକିକା ପରଖୋଲ ବଣୀ । ଶୁକ ସାରୀ
ନାନା ପକ୍ଷୀ ଅବର ଯେ ମଣି ।୧୫। ସେ ବନରେ ବ୍ୟାଘ୍ର ଭାଲୁ ମଇଁଷି
ଅଛନ୍ତି । ନେଉଳ ଶାଳିଆପତ୍ରୀ ବଣଗୋରୁ ଆନ୍ତି ।୧୬। ଗଣ୍ଡାଗୟଳ
ମୃଗୁଣୀ ଆନ୍ତି ଏକ ସଙ୍ଗେ । ନାକାଅଞ୍ଚ ବନ ଦେଖୁଛନ୍ତି ନାନା
ରଙ୍ଗେ ।୧୭। ପୁଷ୍କରିଣୀ ଗୃହ ପାଶ ସ୍ଫଟିକ ପାବଛୁ । ଦେଖିଣ ଆନନ୍ଦ
ହେଲା ଧନେଶ୍ୱର ବହୁ ॥ ବାଣୁବଲା ବଡ଼ ଧନବନ୍ତ ରାଜା ଏହି । ନଇଲେ
କି ଏତେ ଏତେ ଚିଜ ସମ୍ପାଦଇ ।୧୯। ଏମନ୍ତ ବାଣୁବ ମନେ ଗୁଲୁଣାର
ବଳା । ରାଜା ମଧୁବନରେ ସେ ଯାଇଣ ମିଳିଲା ।୨୦। ଉତ୍ତମ ସୁସ୍ୱାଦୁ
ଫଳ କଲୁକ ଭୋଜନ । ନାଗେଶ୍ୱର ପୁଷ୍ପ କଛି ନେଲା ଛିଣ୍ଡାଇଣ ।୨୧।
ସୋମନାଥ ପାଶେ ଯାଇଁ ପ୍ରବେଶ ହୋଇଲା । ସକଳ ବୃତ୍ତାନ୍ତ ତାକୁ
ବୁଝାଇ କହିଲା ।୨୨। ସେଠାରୁ ଏଗାର ଦିନ ପଥ ଚଳିଗଲେ । ଚନ୍ଦ୍ରକୁଣ୍ଡ
ହ୍ରଦରେ ଯାଇଁ ପ୍ରବେଶ ହୋଇଲେ ।୨୩। ଲକ୍ଷେ ଲକ୍ଷେ କୋଟି କୋଟି
ବେଢିଲେ ଚନ୍ଦ୍ରକୁଣ୍ଡ । ଦେଖି ବାଳକର ଯେ ଚେତନା ଗଲା ବୁଡ଼ି ।୨୪।
ବାଣୁବଲା ଏହିଠାରେ ନିଶ୍ଚେ ହେବ ନାଶ । ଯାଇ ନ ପାରିବ ଅଜ
ପିତାଙ୍କର ପାଶ ।୨୫। ଆସିବାବେଳେ ମାଉସୀ କହିଥିଲା ଯାହା । ଏବେ
ଏଠାରେ ପ୍ରତ୍ୟକ୍ଷେ ଦେଖିଲଇଁ ତାହା ।୨୬। ମାତାର ନିକଟେ ଆଜ ଯାଇ

ନ ପାରବ । ପରମାୟୁ ପୂରିଲା ଏହିଠାରେ ମରିବ । ୨୭ । କହ ସୋମନାଥ
ଏବେ ଏଥିର ଚରିତ । କିଷ୍ଟେ ଏବେ ଏଥିର ହୋଇଲା ପ୍ରାଣହତ । ୨୮ ।
ସୋମନାଥ ବୋଲେ ଏବେ ମୋତେ କି ପଚାର । ଗ୍ରାମଦେବତା ଏଠାକୁ
କରିବେ ନିସ୍ତାର । ୨୯ । ଯେଉଁ ଖଣ୍ଡା ମାତା ତୋର ଦେଇଥିଲେ ହସ୍ତେ ।
ସେ ଖଣ୍ଡାକୁ ବାଳକ ଦେଖାଅ ତାଙ୍କ ନେତ୍ରେ । ୩୦ । ତାହା ଶୁଣି ଶ୍ରୀଧର
ଯେ ହରଷ ହୋଇଲା । ଗ୍ରାମଦେବତାଙ୍କ ଖଣ୍ଡା ତାଙ୍କୁ ଦେଖାଇଲା । ୩୧ ।
ଖସିଲେ ଚୁଙ୍ଗୁଡ଼ିମାନେ ପଡ଼ିଲେ ଜଳରେ । ହରଷ ହୋଇ କୁମର ବୋଇତ
ଉପରେ । ୩୨ । ବାଟେ କଥାମାନ ସବୁ କୁହାକୁହି ହୋନ୍ତି । କେତେ
କେତେ ନ ପଡ଼ିଲା ଆମ୍ଭଙ୍କୁ ବିପତ୍ତି । ୩୩ । ଏତେ ବିପତ୍ତିରୁ ମୋତେ
ରଖିଲେ ମଙ୍ଗଳା । ନଇଲେ ସେଠାରେ ଆମ୍ଭ ବୁଡ଼ିଥାନ୍ତା ଭେଳା । ୩୪ ।
ଦ୍ୱିତୀୟ ତୃତୀୟେ ରକ୍ଷା କଲେ ଗ୍ରାମଦେବୀ । ଧନ୍ୟ ତାଙ୍କର ମହିମା ପରମ
ସାଧବୀ । ୩୫ । ଏମନ୍ତ କହନ୍ତି ବସି ବୋଇତ ଉପରେ । ସେଠାବରୁ
ପାଞ୍ଚଦିନ ଗଲେ ପଥ ଖରେ । ୩୬ । କଙ୍କଡ଼ା ହ୍ରଦରେ ଯାଇଁ ହୋଇଲେ
ପ୍ରବେଶ । ସେଠାବରେ କଙ୍କଡ଼ା ଯେ ହେଲେ ତାଙ୍କ ପାଶ । ୩୭ । ସେତେ-
ବେଳେ ଶିରୀଧର ମନରେ ବିଚାରେ । ମହାଦେବଙ୍କ ନାରାଚ ଅଛି ମୋ
ପାଶରେ । ୩୮ । ସେ ନାରାଚ ବିନ୍ଧିଲେ କର୍କଟ ଯିବ ମରି । ଏମନ୍ତ
ବୋଲିଣ ଏକ ନାରାଚକୁ ଧରି ॥ କର୍କଟକୁ ବିନ୍ଧନ୍ତେ ସେ ପ୍ରାଣେ ଗଲେ
ନାଶ । ଦେଖିକରି ଦୁଇ ଜଣ ହୋଇଲେ ହରଷ । ୪୦ । ହୁଳହୁଳି ଦିଅ
ସବୁ ସୁଲକ୍ଷଣୀମାନେ । ହରି ହରି ନାମକୁ ଯେ ଭଜ ସୁଜ୍ଞଜନେ । ୪୧ ।
ତ୍ରୟୋବିଂଶ ଛାନ୍ଦ ମୁଁ ଯେ କଲି ଏହିଠାବେ । ଏଣିକ ଚଉତିଶ ଭାଷା
ରାଗରେ ବୋଲିବେ । ୪୨ । ଶୁଣିବାକୁ ଅମୃତ ପ୍ରାୟେକ ରସ ଏହି ।
ଧୀବର ଭିକାରୀ ଭଣେ ମଙ୍ଗଳାଙ୍କୁ ଧ୍ୟାଇ । ୪୩ । —o—

## ଚତୁର୍ବିଂଶ ଛାନ୍ଦ

ରାଗ—ପୂରବୀ

ଶୁଣ ସୁଜ୍ଞଜନ ଏଥୁ ଅନନ୍ତରେ ଅପୂର୍ବ ରସ ଅଟଇ । ଠିକ ଠିକ
କରି ତୁମ୍ଭଙ୍କୁ କହୁଛି ଯେଉଁ କଥା ଯେଉଁଠାଇଁ ସେ । ହେଲା । କେତେ

ଦୁଃଖେ ଶ୍ରୀଧର ବହିଲା । ତହିଁ ଛଅ ଦିନ ପଥ ଗଲା । ୧ । ଯାଇଣ ବିରୂପା
ଦେଶରେ ମିଳିଲା ପିତା ଅଛି ଯେଉଁ ଠାଇଁ । ସେ ଦେଶରେ ରାଜା
ସୁଦର୍ଶନ ନାମ ବୋଇତ ଲାଗିଲା ତହିଁ ସେ । ଜାଣ । ଯେତେ ଯେତେ କଥା
ହେଲା ପୁଣ । କହୁଅଛି ମୁହିଁ ବୁଝାଇଣ । ୨ । ସେହି ରାଜ୍ୟେ ରାଜା ନାମ
କଟୁଆଳ ହୋଇଲା ଆସି ପ୍ରବେଶ । ଦେଖିଲା ବାଳକ ରଙ୍ଗେ ବସିଅଛି
ହୋଇଲା ତାହାର ପାଶ ସେ । ଧୀରେ । ତୁମ୍ଭ ଘର ଅଟେ କେଉଁ ଠାରେ ।
କମ୍ପା ଅଇଲ ଆମ୍ଭ ରାଜ୍ୟରେ । ୩ । ପ୍ରହରେ ହେଲଣି ଏଠାରେ ରହିଛ
ଦେଖା ନ କଲ ରାଜାଙ୍କୁ । କଥା ଯୁକତେ ଅସିଦ୍ଧ ହେଉଅଛି କ ଆସେ
ତୁମ୍ଭ ମନକୁ ସେ । ଘେନ । ରକ୍ଷୀବଂଶ ଏ ସୁଦର୍ଶନ । ତୁମ୍ଭେ ପାଶୋରିଲ
ବୁଦ୍ଧିମାନ । ୪ । ଏ ବଚନ ଶୁଣି ବାଳୁତ ତନୟ କହଇ ବଚନ ବେଗେ ।
ଅମ୍ଭେ ଏହିଠାରେ ପ୍ରବେଶ ହେଲୁଣି ତୁମ୍ଭର ରାଜା ନ ଆସେ ସେ । ଯାଅ ।
ତୁମ୍ଭ ରାଜାର ଆଗରେ କହ । ଦେଖା କରିଅ ଯେଉଁ ସନ୍ଦେହ । ୫ । ଏମନ୍ତ
ଯାଇଣ ରାଜାଙ୍କୁ କହିବ ଶିରୀଧର ଆସିଛନ୍ତି । ଦନ୍ତରେ ତରଣ ଗଳାରେ
ଦଉଡ଼ି ଦର୍ଶନ କରୁ ନୃପତ ସେ । ଆଗେ । ନୋହିଲେ ଶର ଛେଦିବ
ବେଗେ । କହେ ହୋଇଣ ମନ ସରାଗେ । ୬ । ଏ କଥା ଶୁଣିଣ ନାମ
କଟୁଆଳ ଦଣ୍ଡେ ସ୍ତମ୍ଭୀଭୂତ ହେଲା । ମୁଖରୁ ତାହାର ନ ସ୍ଫୁରେ ବଚନ
ରାଜା ସନ୍ନିଧ୍ୟକୁ ଗଲା ସେ । ଧାଇଁ । ତାହା ମନରେ ବିରସ ହୋଇ ।
କହିଲା ନୃପତ ଆଗେ ଯାଇଁ । ୭ ବୋଇଲା ଶୋ ଦେବ କଥା ଏ କହିବ
ଶୁଣିବାକୁ ବିପରୀତ । କେଉଁ ଦେଶୁଁ ଏକ ବାଳୁତ ଆସିଣ ବସିଅଛି ତା
ବୋଇତ ତା । ରୂପ । ନାହେ କୋଟିଏ କାଞ୍ଚନ ଧାପ । ଦୁର୍ବାଦଳ କାଣି
ତନୁ ଯାକ । ୮ । ମୁଁ ବୋଇଲି ପୁଣି କେଉଁ ରାଜ୍ୟୁ ଆସି ତୁମ୍ଭେ ଏଠାରେ
ରହିଲ । ରାଜାଙ୍କଠାରେ ଦର୍ଶନ ନ କରଣ ଏଠାରେ କମ୍ପା ବସିଲ ହେ ।
ଶିଷ୍ୟ । ଦେଖା ନ କଲ ରାଜାଙ୍କ ପାଶ । ମୋର ସଙ୍ଗତରେ ତୁମ୍ଭେ ଆସ ।୯।
ସେ ବୋଇଲା ଅରେ ମୂଢ଼ କଟୁଆଳ ତୁମ୍ଭ ରାଜାଙ୍କୁ କହିବ । ଛପ୍ପାଲୋଇ
ଜଣ ପୃଥିବୀରେ ରାଜା ମୋତେ ଦର୍ଶନ କରିବ ସେ । ହେଲେ । ନଇଲେ

ମୁଁ ମାରିବ ସକଳେ । କିଛି ନ ରଖିବ ମହୀତଳେ । ୧୦ । ପାଞ୍ଚ ସାତ ବର୍ଷ
ହୋଇବ ତାହାକୁ ଏତେ ଦମ୍ଭପଣେ ଅଛି । ରାଜା ଅଟେ ମୋତେ ଦରଶନ
କରୁ ଏମନ୍ତ ବୋଇଲା ବସି ତା । ଶୁଣି । ରାଜା ସନ୍ତମ ହୋଇଲା ହାଣି ।
ରସେ ଧୀବର ଭିକାରୀ ଭଣି । ୧୧ ।

---

## ପଞ୍ଚବିଂଶ ଛାନ୍ଦ

ରାଗ—କେଦାର ଚକ୍ରକେଳି—ପ୍ରସ୍ତାବ ସିନ୍ଧୁ ।

ଶୁଣ ସୁଜନେ ଏଥୁ ଅନନ୍ତରେ । ରାଜା କହିଲେ ବରଷ ମନରୋଷେ ।
ବୋଇଲେ କେବଣ ଦେଶେ ତା ଘର । ନାମ କହ ଯେ କାହାର କୁମର ॥
ତାହା ଶୁଣି କଟୁଆଳ ବୋଇଲା । ପଚାରିଲୁ ସେ କିଛି ନ କହିଲା । ୩ ।
ବୋଇଲା ଅମ୍ଭ ଘର ଯହିଁ ଅଛେ । କିମ୍ପା ତା କହିବା ତୋର ନିକଟେ ।୪।
ଏମନ୍ତ ପ୍ରକାରେ କହିଲା ସେହି । ନାମ ତାର ଶଶଧର ଅଟଇ । ୫ । ରାଜା
ବୋଇଲା ତାକୁ ଧରିଆଣ । ମୋହର ଛାମୁରେ ଖଡ଼ଗେ ହାଣ । ୬ । ଶୁଣି
କଟୁଆଳ ତୋଷ ହୋଇଲା । ଅନେକ ସୈନ୍ୟ ସେ ସଙ୍ଗରେ ନେଲା । ୭ ।
ଗଲେ ସାତ ଆଠ ଶର ପଦାତି । ସଜ ହୋଇଲା ଏକସ୍ତରି ହାତୀ । ୮ ।
ବେଳଣତ ଘୋଡ଼ା ପରେ ସୁଆର । ବଣାଶଏ ମାଲ ସେ ପରକାର । ୯ ।
ହସ୍ତୀଙ୍କ ଗର୍ଜନ ଘୋଡ଼ାଙ୍କ ରବେ । କି ଜାଣି ପୃଥ୍ୱୀ ଉଛୁଳିଲା ଏବେ ॥ ଏକୁ
ଏକ ଠାଣି କରଣ ଯାନ୍ତି । କେ ଅବା ନାଶ ମୋଡ଼ି ଦେଉଥାନ୍ତି ।୧୧। କେ
ବୋଲନ୍ତି ଭାଇ ବହନ ଚାଲ । କେ ବୋଲଇ ମୁହିଁ ଅଟଇ ମାଲ ।୧୨। କେ
ବୋଇଲ ଆଜ ଭଲ ଦିନରେ । କାହୁଁ ଯୋଦ୍ଧାଏ ମିଳିଲେ ଏଠାରେ ।୧୩।
ଅମ୍ଭ ସଙ୍ଗରେ କି ସର ହୋଇବ । ଏହିକ୍ଷଣି ସେ ମୃତ୍ୟୁପୁର ଯିବ । ୧୪ ।
ଏମନ୍ତ ଠାଣି ସେ କରଣ ଯାନ୍ତି । ଦୂରନ୍ତୁ ଦେଖି ଧନେଶ୍ୱର ନାତି ।୧୫ ।
ବୋଲେ ସୋମନାଥ ମୂର୍ଖଙ୍କୁ ଚାହିଁ । ଆଜ ମରଣ ହେଲାଟି ରେ ଭାଇ ।୧୬
ପାପିଷ୍ଟ ଜନ ମୁଁ କି ବୁଦ୍ଧି କଲି । ରାଜାଙ୍କୁ ଆସି ଧିକ୍କାର ବୋଇଲି ।୧୭।
ତେଣୁ ସୈନ୍ୟ ଆସୁଛନ୍ତି ବହୁତ । ତାଙ୍କର ପ୍ରତିଜ୍ଞା କେହୁ କହୁତ । ୧୮ ।

ଜାଣେ ଏଥର ପଡ଼ିବ ପ୍ରମାଦ । ମୋତେ ରାଜା ନେଇ କରିବ ଛେଦ ।୧୯
ଏତେ ଦୁଃଖକୁ ବଞ୍ଚିଥିଲି ମୁହିଁ । ଏଠାରେ ପ୍ରାଣ ନଷ୍ଟହୁ ଯିବଇଁ । ୨୦ ।
ମଙ୍ଗଳା ମାତା ତୁ ନ ରଖୁ ଯେବେ । ସୁଦର୍ଶନ ରାଜା ମାରିଲା ତେବେ ॥
ପିତାଙ୍କୁ ଦେଖା ନ ପାରିଲି କରି । ବିଧାତା ବାମ ହୋଇଲା ମୋହରି ।୨୨।
ମାତାଙ୍କୁ ଅଉ ଦେଖି ନ ପାରିବି । ପ୍ରବାସକୁ ଆସି ଏଥି ମରିବି ॥ ପୋଢ଼-
ଯାଉ ମୋର କରମ ଦୋଷ । ମୁହିଁ ଚନ୍ଦ୍ରା କନ୍ୟା ଅଛି ବିଶେଷ ।୨୪। ମଙ୍ଗଳା
ମାତା ଯେ ସେ କଥା ଶୁଣି । ଆକାଶେ ଡାକ ଦେଲେ ଠାକୁରାଣୀ । ୨୫ ।
ବୋଇଲେ ବାଳକ ଅରତ ନୁହ । ଯେତେ ଦଣ୍ଡ ଦେବ ତାହା ତୁ ସହ ॥
ସବୁ କଥାକୁ ମୁଁ ହୋଇବି ସାକ୍ଷୀ । ତୁ କାହିଁ ମନରେ ହେଉଛୁ ଦୁଃଖୀ ॥
ଏମନ୍ତେ ମଙ୍ଗଳା ଶୂନ୍ୟରେ କହି । ଏ କଥା ଅଉ ନ ଜାଣନ୍ତି କେହି ॥ ଏକା
ଜାଣନ୍ତି ଶ୍ରୀବନ୍ତକୁମର । ତା ଠାରେ ଦୟା ଯେ ମଙ୍ଗଳାଙ୍କର ।୨୯। ଭିକାରି-
ଠାରେ ଏହି କୃପା ହେଉ । ତୋର ପାଦଠାରେ ମୋ ମନ ଥାଉ । ୩୦ ।
ପଞ୍ଚବିଂଶ ଛାନ୍ଦ କରଇ ଯାହା । ଦ୍ଵିତୀୟ ପାଳିରେ ବୋଲିବ ତାହା । ୩୧ ।
ଧୂପ ଦୀପ ନୈବେଦ୍ୟ ଉହିଁ କରି । ଆନନ୍ଦ ମନେ ଭଜ ପ୍ରେମେଶ୍ଵରୀ ।୩୨।
ସେ ଯାହାକୁ ଦୟା କରିବେ ଚଣ୍ଡୀ । ଧନ ଧାନ୍ୟ ପୁତ୍ର ସମ୍ପତ୍ତି କେତେ ॥
ମନବାଞ୍ଛା କଥା ସିଦ୍ଧି ହୁଅଇ । ଦୁଃଖ ନିବାରିଣୀ ବୋଲନ୍ତି ସେହି । ୩୪ ।
ଦ୍ଵିତୀୟ ପାଳି ଛାନ୍ଦ ହେଲା ଶେଷ । ଭିକାରି କରଛି ସର୍ବଦା ଆଶ । ୩୫ ।

---

## ଷଡବିଂଶଛାନ୍ଦ

ରାଗ—କଳସା ।

ବନ୍ଦଇ ଶାରଳା ମା ଗୋ ତୁ ସିଂହବାହିନୀ । ଶ୍ରୀହରି ବଲ୍ଲଭୀ ମା ଗୋ
ସମ୍ପଦଦା ସ୍ଵାମିନୀ । ୧ । ତୁ ଯେ ଅଷ୍ଟଚଣ୍ଡୀ ମା ଗୋ ମଙ୍ଗଳା ବୋଲାଉ ।
ତୁ ଯେ ଆଦିଶକ୍ତି ମା ଗୋ ସର୍ବଠାରେ ଥାଉ । ୨ । ତୁହି ସେ ମଙ୍ଗଳା ମା
ଗୋ ସିନ୍ଦୂର ଭୂଷିତା । ତୁହି ଶାକମ୍ଭରୀ ମା ଗୋ ଗଙ୍ଗାଧର ପତ୍ନୀ । ୩ ।
ଦୁଃଖ ନିବାରିଣୀ ମା ଗୋ ମହିଷମର୍ଦ୍ଦିନୀ । କଙ୍କାଳୀ ବେତାଳୀ ମା ଗୋ ତୁହି

ସେ କାନ୍ତାମା ।୪। ତୋର ମାୟା କଳି ନ ପାରନ୍ତି ବେଦପଢ଼ । ତ୍ରୈଲୋକ୍ୟ-ଠାକୁର ଯେ ଅଟନ୍ତି ବେଦପଢ଼ । ୫ । ଦୁଃଖୀଜନମାନଙ୍କୁ ତୁ ସୁଖ ଦେଇ-ପାରୁ । ମହାପାପୀମାନେ ମୁକ୍ତ ହୋନ୍ତି ତୋ କୃପାରୁ । ୬ । ମୁହିଁ ଏବେ ତୋହ ପାଦେ କରୁଅଛି ଭରଷା । ଧୀବର ଭକାସ୍ୱର ପୂରୁଅ ମନବାଞ୍ଛା ।୭। ବରୁପା ଦେଶରେ ଅଛି ଖଣ୍ଡଣାର ସୁତ । କହିବଇଁ ଏଣିକି ହୋଇବ ଯେଉଁ କୃତ୍ୟ । ୮ । ପିତା ପୁତ୍ରଙ୍କର ଦେଖା ହୋଇଲା କି ନାହିଁ । ସୈନ୍ୟମାନେ ଆସିଥିଲେ ତାଙ୍କୁ ନେବା ପାଇଁ ।୯। ଏଣିକି କେବଣ କୃତ୍ୟ ହେଲା ସେଠା-ବରେ । ମାନବ ହୋଇଣ କେ ଗୋଚର କରିପାରେ । ୧୦ । ତୁ ଯେବେ କରୁଣା ମୋତେ କରିବୁ ଭବେ ମାତ । ତେବେ ସିନା କହିବ ମୁଁ ସକଳ ଚରିତ ।। ଦୁଇପାଳି କଥା ଶେଷ ହୋଇଲାକ ସହୁଁ । ତିନିପାଳି କଥାକୁ ଶରଧା ମୋର ତହୁଁ । ୧୨ । କର ଅନୁଗ୍ରହ ମୋତେ ଶଇଳ ଦୁହିତା । ସୁଜନ ହିତେ କହିବି ଶିସ୍ୱଧର କଥା । ୧୩ । କେମନ୍ତ ପ୍ରକାରେ ସେ ଯେ ପିତାକୁ ପାଇଲା । ସୁଦର୍ଶନ ରାଜାର ଝିଅକୁ ବିଭା ହେଲା ।୧୪। ତୋହର କୃପାରେ ଗୀତ କରୁଅଛି ମୁହିଁ । ପଣ୍ଡିତେ ବାଛିଲେ ଆଉ ମୋର ଦୋଷ ନାହିଁ ।। ଧୀବର ଭକାସ୍ୱ ନିତ ଭାବଇ ମଙ୍ଗଳା । ସଙ୍କଟ କାଳକୁ ଯାର ନାମ ଅଟେ ଭେଳା ।୧୬।

## ସପ୍ତବିଂଶ ଛାନ୍ଦ ।

ରାଗ—କେଦାର ଚକ୍ରକେଳି

ଶୁଣ ସୁଜନେ ଏଥୁ ଅନନ୍ତରେ । ସୈନ୍ୟ ପ୍ରବେଶିଲେ ସାଗର ତୀରେ ।୧। ଏକୁ ଏକ ଠାଣି କେ କହୁ ପାର । ବାଳକକୁ ନେଲେ ସେ ଧରି କରି । ୨ । ସୋମନାଥ ସଙ୍ଗେ ତାହାର ଅଛି । ଘେନିଗଲେ ତାହା ସୁଦାମବସ୍ତି ।୩। ରାଜା ଅଗ୍ରତେ ନେଇ ସମର୍ପିଲା । ଦେଖିଣ ନୃପତି ହରଷ ହେଲା । ୪ । ଏହି ବାଳକ କହୁଥିଲା ମୋତେ । ନେଇ ଯାଇ ତାଙ୍କୁ ମାରି ଗୁପତେ ।୫। ତାହାର ରୁଧିର ଦେଖିଲେ ମୁହିଁ । ପଶ୍ଚାତେ ଭୋଜନ କରିବି

ଯାଇଁ ।୬। ଏ ବଚନ ଶୁଣି ବେଗେ ଚଳିଲେ । ବାଳକଙ୍କୁ ସଙ୍ଗରେ ଘେନି-ଗଲେ । ୭ । ନିକାଞ୍ଚନ ବନେ ପଶିଲେ ଯାଇଁ । ମାରିବା ନିମନ୍ତେ ସଙ୍ଗରେ ନେଇ ॥ କେତେବେଳେ ବୋଲେ ବାଳକମଣି । ଶୁଣ କହୁଅଛି ମୋହର ବାଣୀ । ୯ । ତୁମ୍ଭେ ତ ଅଟ ସତାଇଶ ଜଣ । ମାରିବା ନିମନ୍ତେ ଧାଇଁଛ ପୁଣ । ୧୦ । ଏକ ଏକ ଚୋଟ ସବେଁ ମାରିବ । ଦୋହରି ମାଇଲେ ସବେଁ ମରିବ ॥ ମୋର ଏଠାରେ ସାହା କେହି ନାହିଁ । ଧରମ ଦେବତା ଅଛନ୍ତି ଗୁହିଁ । ୧୨ । ଏହି ପ୍ରକାରେ ବୋଇଲା ବାଳକ । ଶୁଣି ହରଷ ସତାଇଶ ଲୋକ ॥ ବୋଇଲେ ଏକାଥରକେ ମାରିବୁ । ବେନି ପ୍ରହାର କେବେଁ ନ କରିବୁ ।୧୪। ବାଳକ ମନରେ ଭାବେ ମଙ୍ଗଳା । ସାହା କର ମୋର ବୁଡ଼ିଲା ବେଳା ॥ ମଙ୍ଗଳାମାତା ତା ଶୂନ୍ୟେ ଜାଣିଲେ । ରକ୍ଷିଲି ବୋଲି ଭୁଜ ଟେକି ଦେଲେ ॥ ଶୁଣ ସୁଜନେ ଏକମନେ ଭଲେ । ହାଣିବା ନିମନ୍ତେ ସଜ ହୋଇଲେ ।୧୮। ଶତ୍ରୁ ଜୟ ବୋଲି ସାଧବବଲା । ପ୍ରଥମେ ସେହି ମାରି-ବାକୁ ଗଲା ॥ ଲକ୍ଷ୍ମୀ ବସିଛନ୍ତି ଯାହା କନ୍ଧର । ତାକୁ ମାରିବାକୁ ସଖ କାହାର । ୨୦ । ବାଳକ ଗଳାରେ ବଂଶାନ୍ତେ ଚୋଟ । ସେ ଚୋଟ ପଡ଼ିଲା ଆପଣା କଣ୍ଠ । ୨୧ । ତାକୁ ମାନ୍ତି ମାନ୍ତି ଆପଣେ ମଲା । ଯୁଦ୍ଧମଧ୍ୟେ ଏକ ହସ ଉଠିଲା । ୨୨ । ବୋଇଲେ ନୀଳମଣି ତୋର ଭାଇ । ଏଡ଼େ ଯୋଦ୍ଧା ହୋଇ କିଛି ନୁହଇ । ୨୩ । ନୀଳମଣି କୋପେ ପ୍ରଚଣ୍ଡ ହୋଇ । ବୋଇଲା ଶୁଣ ହେ ସାନୁଜ ଭାଇ । ୨୪ । ଏକ ଚୋଟକେ ମାରିବ ନିସ୍ତେ । ହିଦାର ଜଳ ଘେନି କଲା ସତ୍ୟ ।୨୫। ଏତେ ବୋଲି ସେ ଯେ ବାହାର ହେଲା । ତାକୁ ମାରନ୍ତେ ସେ ଆପଣେ ମଲା ।୨୬। ପୁଣି ଯୁଦ୍ଧ ମଧ୍ୟେ ହସ ଉଠଇ । ବୋଇଲେ ବଡ଼ ଉପଘାତ ଏହି । ୨୭ । ସାହସୀ ବୋଲନ୍ତି ମନ୍ତ୍ରୀର ପୁଅ । ସେ ବୋଇଲା କିଛି ନାହିଁ ସନ୍ଦେହ । ୨୮ । ଦେଖ ଏହିକ୍ଷଣି ମୁହିଁ ମାରିବା । ମୋହର ମୁଖେ କେବେଁ ନ କହିବା ।୨୯। ଏମନ୍ତ ପ୍ରକାରେ ସେହି କହନ୍ତେ । ସଜ ହୋଇଲା ମାରିବା ନିମନ୍ତେ । ୩୦ । ଖଡ଼ଗ ଘେନି ଝଲକ ଉଠିଲା । ଝଲକ ମାରନ୍ତେ ଆପଣେ ମଲା ।୩୧ । ବଂଶଧ୍ଵଜ ବୋଲି ତା ଭାଇ ଥିଲା ।

ଜଦବେଗ ହୋଇ ଉଠି ବସିଲା । ୩୨ । ସେହୁ ପୁଣି ଗଲା ମାରିବା ପାଇଁ । ତାଙ୍କୁ ମାରନ୍ତେ ଆପଣେ ମରଇ ।୩୩। ଦାରୁଣ ବିଧାତା କି କି ନ କରେ । ପରଙ୍କୁ ଯେ ମାରେ ଆପଣେ ମରେ । ୩୪ । ଦୁଇ ଭାଇ ଯହୁଁ ହେଲେ ବିନାଶ । ତାହାର ପୁତ୍ର ଥିଲା ଅଇରସ ।୩୫। ହାଣିବ ବୋଲି ଯେ ପ୍ରହାର କଲା । ତାହା ଚୋଟ ତାହା କନ୍ଧେ ପଡ଼ିଲା । ୩୬ । ମଙ୍ଗଳା ମାତା ରଖିବେ ଯାହାକୁ । ଏମାନେ କିସ କରିବେ ତାହାକୁ ।୩୭। ଦର୍ପଗଞ୍ଜନ ସେ କନିଷ୍ଠ ତାର । ଆପଣେ ବାହାରିଲା କୋପଭର । ୩୮ । ସେହୁ ଗଲା ପୁଣି ମାରିବା ପାଇଁ । ତାଙ୍କୁ ମାରନ୍ତେ ଆପଣେ ମରଇ ॥ ଏଡ଼େ ଦୟା କଲେ ମଙ୍ଗଳା ତାରେ । ତାଙ୍କୁ ଯେ ମାରଇ ଆପଣେ ମରେ । ୩୯ । ଦାମୋଦର ବୋଲି ଏକଇ [illegible] । ଶତେ ଜିହ୍ୱର ପ୍ରାକର୍ମ ତାହାର । ୪୦ । କୋପମୂର୍ତ୍ତି ହୋଇ ତ୍ୱରିତେ ଗଲା । ଖଡ଼ଗେ ଅଙ୍ଗ ହାଣିବ ବୋଇଲା ।୪୧। ଯାହାଙ୍କୁ ରଖିବେ ମଙ୍ଗଳାମାତ । ତାଙ୍କୁ ମାରୁ ମାରୁ ଆପଣେ ହତ ।୪୨। ପାର୍ଥିବ ବୋଲି ତା କନିଷ୍ଠ ଭାଇ । ସେହୁ ପୁଣି ଗଲା ମାରିବା ପାଇଁ । ୪୩ । ତାଙ୍କୁ ମାରନ୍ତେ ସେ ଆପଣେ ମଲା । ମନ୍ଦ କଲା ପ୍ରାଣୀ ମନ୍ଦେ ପଡ଼ିଲା । ୪୪ । କଉସ୍ତୁଭ ବୋଲି ତାହାର ଭାଇ । ସେହୁ ପୁଣି ଗଲା ମାରିବା ପାଇଁ ।୪୫। ବାଳକ ଗଳାରେ ବସାନ୍ତେ ଚୋଟ । ସେ ଚୋଟ ବସିଲା ଆପଣା କଣ୍ଠ ।୪୬। ମଣିଭଦ୍ର ବୋଲି ତାହାର ବଳା । ଉଦ୍ଧୃତ ହୋଇ ମାରିବାକୁ ଗଲା । ୪୭ । ତାହାଙ୍କୁ ମାରନ୍ତେ ମଲା ଆପଣେ । ରଖି ନ ପାରେ କେ ତାହାଙ୍କୁ କ୍ଷଣେ । ୪୮ । ରଣ ସୁରଣ ଯେ ତାହାଙ୍କ ନାତ । ପିତା ମଲା ବୋଲି ତାହାର ଭୀତ । ୪୯ । ବୋଇଲା ନିଶ୍ଚେ ତାହାଙ୍କୁ ମାରିବି । ଏଥର ତାର ପ୍ରାଣ ନ ରଖିବି । ୫୦ । ଏମନ୍ତ ବୋଲି ଦୁଇଜଣ ଗଲେ । ତାହାଙ୍କୁ ମାରନ୍ତେ ଆପଣେ ମଲେ ।୫୧। ଅନି-[illegible] ବୋଲି ପଛୁଆ ତାର । ଖଡ଼ଗ ଯାଇ ଧଇଲା ହସ୍ତର । ୫୨ । ବାଳଙ୍କ ଗଳାରେ ବସାନ୍ତେ ଚୋଟ । ସେ ଚୋଟ ପଡ଼ିଲା ଆପଣା କଣ୍ଠ । ୫୩ । ସର୍ବ-ମଙ୍ଗଳା ରଖିବେ ଯାହାକୁ । ଏମାନେ କିସ କରିବେ ତାହାକୁ ।୫୪। ନନ୍ଦ ସୁନନ୍ଦ ବୋଲି ବେନି ଭାଇ । ପିତା ନାମ ବଳମୋକ୍ଷ ଅଟଇ । ୫୫ । ସେ

ଦୁହେଁ ଧାଇଁଲେ ଅତି ପ୍ରଖରେ । କ ଜାଣି ମାରବେ କଣ୍ଟିତ ଶରେ । ୫୬ ।
ବସାନ୍ତେ ଗୋଟି ବାଳକ ଉପରେ । ସେ ଗୋଟି ପଡ଼ଲା ତାହାଙ୍କ ଶିରେ ॥
ମନତୋଷ ବୋଲି ଖଣ୍ଡୁଆ ତାର । ସେହୁ ମାରନ୍ତେ ପଡ଼େ ସେହୁ ଠାର ॥
ଦେଖି ଯୁବାଳୁକ ଭରସ ମନେ । ବୋଇଲେ ଏ କଥ ହୁନ୍ଦର ଜାଣେ ।୫୯।
କୋହୁଲେ କା ତାଙ୍କୁ ଏହୁ ମାରନ୍ତା । ସେ ପୁଣି ଆପଣେ ହସ୍ତେ ମରନ୍ତା ॥
ମାୟା କରଛନ୍ତି ମଙ୍ଗଳା ଯାହା । ଏମାନେ କାହୁଁ ଜାଣିବେଟି ତାହା ।୬୧।
ମାୟା ଭ୍ରମରେ ସମସ୍ତେ ମରନ୍ତି । ଏମାନେ ତାହା କେହୁ ନ ଜାଣନ୍ତି ।୬୨।
ଯୁବାଳୁକ ଗଲ ଅତି ପ୍ରଖରେ । ଖଡ଼ଗ ବସା ଏ ବାଳକ ଶିରେ ।୬୩। ଓଲଟି
ଆସି ପଡ଼ଲା ଖଡ଼ଗ । ପ୍ରାଣ ଗଲା ସେ ହେଲା ବେକଭାଗ ।୬୪। ଜୟସେନ
ଦେଖି ବେଗେ ଧାଇଁଲା । ତାହାଙ୍କୁ ମାରନ୍ତେ ଆପଣେ ମଲା । ୬୫ । ଅଷ୍ଟ-
ନାମ ତାର ଅଟଇ ଭାଇ । ବୋଇଲା ତୋତେ ନ ରଖିବେ କେହୁ ॥ ଏବେ
ମୁଁ ପେଷିବ ଶମନ ପୁର । ସୁମର ଇଷ୍ଟଦେବତା ତୁମ୍ଭର ॥ ଏମନ୍ତ କହୁ ସେ
ବେଗେ ଧାଇଁଲା । ମାର ନ ପାର ସେ ଆପଣେ ମଲା ।୬୮। ରଣଜିତା ବୋଲି
ଥିଲା ଏକଇ । ସେ ବୋଲଇ ରଣେ ଜିଣିଁ ମୁହିଁ । ୬୯ । ଏହାଙ୍କୁ ଯେବେ
ମାର ନ ପାରବ । ରଣଜିତା ନାମ କେବଣ ବହବ । ୭୦ । ଏମନ୍ତ କହୁ
ଗଲ ଖର ତର । ହସ୍ତରେ ଖଡ଼ଗ ଧର ନୋଧର ।୭୧। ରଣଜିତା ଯାଇଁ
ମାରନ୍ତେ ତାଙ୍କୁ । ଆପଣେ ଗଲା ସେ ମୃତ୍ୟୁ ପୁରକୁ । ୭୨ । ସୁଧାକର
ବୋଲି ସେ ମନ୍ତ୍ରୀ ଜଣେ । ତାଙ୍କୁ ଧର ନୁହନ୍ତି କାରପଣେ । ୭୩ । ସେ
ଯାଇ ଶ୍ରୀଧର ପାଶେ ମିଳିଲା । ତାଙ୍କୁ ମା ୍ମା ୍ଆପଣେ ମଲା ।୭୪। କଳା-
କଳା ବୋଲି ମନ୍ତ୍ରୀର ଭାଇ । ବୋଇଲା ଉଠ ହେ ମାରଇ ମୁହିଁ । ୭୫ ।
ତୁମ୍ଭ ହସ୍ତ ନାହିଁ କଷ୍ଟ ଦୋରସ୍ତ । ମାମ୍ମା ଭେଳରେ କହୁଛୁ ଏମନ୍ତ ।୭୬।
ବୋଇଲେ ସୁଦର୍ଶନ ରାଜା ଥିଲେ । ତା ବୀରମାନେ ମାର ଯୁଦ୍ଧେ ମଲେ ॥
କାହା କ ୍ଥିବେ ପରଜାମାନ । ଇଷ୍ଟଦେବତା ସୁମର ନନ୍ଦନ ।୭୮। ବାଳକ
ବୋଇଲେ ସୁମ ୍ଅଛି । ତୋର କହୁବାକୁ ନାହିଁରେ କଛି ।୭୯। ତୁ ଯେବେ
ମାରବୁ ମାର ରେ ବେଗେ । କେତେ ଝାଣ କ ୍ମୋହର ଅଗେ । ୮୦ ।

ଛୁମ୍ଭ ରଜାଙ୍କୁ ଡ଼ାକିଅଣି ଯାଇ । ମିଚ୍ଛେ କମ୍ପାଇଁ କନ୍ଦୁଛ ବଡ଼ାଇ । ୮୧ ।
ଶୁଣି ବେହେଦ୍ଧ ହୋଇଲା ଚକିତ । ବୋଇଲା ଏବେ ମରବ ବାଳୁତ ।୮୨
ଖଡ଼ଗ ନେଇ ମାରନ୍ତେ ତକ୍ଷଣି । ଅପଣେ ବେନିଖଣ୍ଡ ହେଲା ପୁଣି । ୮୩ ।
ହଡବୁଦ୍ଧି ବୋଲି ଭାଇ ତାହାର । ଖଡ଼ଗ ଢେକିଣି ହେଲା ବାହାର ।୮୪।
ତାହାଙ୍କୁ ମାରନ୍ତେ ଅପଣେ ମଲା । ଅମରଧ ବୋଲି ପୁଣି ଧାଇଁଲା । ୮୫ ।
ଖଡ଼ଗେ ହାଣନ୍ତେ ମଲାକ ସେହି । ତା ଦେଖି କାତର ହେଲା ତା ଭାଇ ॥
ଜାବାଡ଼ବନ୍ଧ ବୋଲି ଭାଇ ତାର । ପ୍ରାକର୍ମ ଅଠଇ ଶତେ ସଂହାର । ୮୭ ।
ଖେଡ଼େ ବଡ଼ ବୀର ମାଲ ସେ ମଲେ । ଯୁଦ୍ଧ ଭୂମିରେ ରୁଧିର ବହିଲେ ॥
ରଣୋଲୁଣା ଯାନ୍ତେ ତହୁଁ ପଳାଇ । ଅକାଶୁ ଖଡ଼ଗ ଶିରେ ପଡ଼ଇ । ୮୯ ।
ଯାଉଁ ଯାଉଁ ବାଟରେ ସେ ତ ମଲା । ନିମ କଣ୍ଠୁଆଳ କାତର ହେଲା ।୯୦ ।
ଯହୁଁ ନାଶ ଗଲେ ଛବିଶ ଜଣ । କଣ୍ଠୁଆଳ ତହୁଁ ଗଲା ତକ୍ଷଣ । ୯୧ ।
ମଙ୍ଗଳା ଯାହାଙ୍କୁ ରଖେ ଏପରି । ତାହାଙ୍କୁ ଅବା କେହୁ ପାରେ ମାରି ।୯୨।
ଏ କଥା ଶୁଣିବାକୁ ବିପରୀତ । ଧୀବର ଭକାରୀ ହେଲା ଚକିତ । ୯୩ । ଏଣୁ
ଏ ଛାନ୍ଦ ହୋଇଲା ସମ୍ପୂର୍ଣ୍ଣ । ହରି ହରି ବୋଲ ହେ ସୁଜ୍ଞଜନ । ୯୪ ।

---

# ଅଷ୍ଟାବିଂଶ ଛାନ୍ଦ

ରାଗ—ମଙ୍ଗଳ

ଶୁଣ ହେ ସୁଜନ ଜନେ ଏଥୁ ଅନନ୍ତରେ । ଏ ଛବିଶ ଜଣ ମଲେ କେମନ୍ତ ପ୍ରକାରେ । ୧ । ତାଙ୍କ ପୂର୍ବଜନ୍ମ କଥା କହୁଅଛି ମୁହିଁ । ସୁଜ୍ଞଜନ ମାନେ ଶୁଣ ଏକମନ ହୋଇ ।୨। ଏହି ଷଡ଼ବିଂଶ ଜଣ ଅନୀତ ଯେ କଲେ ପୂର୍ବକାଳେ ବହୁ ଦୁଷ୍ଟପଣ ଆଚରିଲେ । ୩ । ବାଟ ଜଗି ପଥିକ ଜନଙ୍କୁ ନିତ୍ୟ ମାରି । ଧନ ବସ୍ତ୍ର ଅଲଙ୍କାର ନିଅନ୍ତି ବାଣ୍ଟିକରି ॥ ରାତ୍ର ହେଲେ ପର ଘରେ ପଶନ୍ତି ସେ ବେଗେ । ସମ୍ମୁଖେ ଯେ ଜନ ପଡ଼େ ମାରନ୍ତି ସେ ଆଗେ ॥ ଦେବତା ବ୍ରାହ୍ମଣଙ୍କୁ ଯେ ନ ମାନନ୍ତି ସେହୁ । ସନ୍ଥଜନ ଦେଖି ଭ୍ରାନ୍ତ ନ କରନ୍ତି ଏହୁ । ୬ । ଅସିଦ୍ଧି ଯେ କହେ ତାଙ୍କୁ ସଙ୍ଗରେ ନିଅନ୍ତି । ସିଦ୍ଧାନ୍ତ

ଯେ କହେ ତାଙ୍କୁ ମାରଣ ଗୋଡ଼ାନ୍ତି । ୭ । ବଳାତ୍କାରେ ସେହୁ ଯେ ହରନ୍ତି ପର ନାରୀ । ପାପ ପୁଣ୍ୟକୁ ଯେ ଭୟ ନ ଥାଇ ତାଙ୍କର । ୮ । ସିନ୍ଧଗାତ ଖୋଳନ୍ତି ଯେ ଘରେ ଘରେ ପଶି । ଭାଗବତ ଶୁଣିଲେ ହୁଅନ୍ତି ହସା ହସି ॥ ଏମନ୍ତ କହୁଣ ଥାନ୍ତି ଯେ ଛତିଶ ଜଣ । ତାଙ୍କ ମୁଣ୍ଡ ଭେଦ କଥା କହୁଅଛି ଶୁଣ ।୧୦। ବିଦ୍ୟାଧର ପଣ୍ଡା ବୋଲି ଏକଇ ବ୍ରାହ୍ମଣ । ଅଚଳାଚଳ ସମ୍ପତ୍ତି ଅଛି ତାର ଶୁଣ ॥ ଭିରଜା ନାମ ତାହାର ଅଟେ ଭାଗ୍ୟବନ୍ତୀ । ତାଙ୍କର କୋଳରେ ନାହିଁ ନନ୍ଦନ ସନ୍ତତି । ୧୨ । ସେ ଯୁବାସୁନ୍ଦରୀ ରୂପ କନକ ସଦୃଶ । ଯୋଗିଏ ଦେଖିଲେ ଯୋଗ ହୋଇବନ୍ତି ନାଶ । ୧୩ । ଦଶମାସ ଗର୍ଭବାସ ହୋଇଛି ତା ନାରୀ । ପଥ ଚାଲି ନ ପାରଇ ପଡ଼େ ମହୀ ଠେଲି ॥ ଏ ଛତିଶ ଜଣ ଯାଇ ତା ଘରେ ପଶିଲେ । ବ୍ରାହ୍ମଣର ଯୁବତୀକି ବଳେଣ ହରିଲେ ।୧୫। ଯେତେ ଅଳଙ୍କାର ଥିଲା ସବୁ ନେଲେ ସେହୁ । ପୁଣି ତାର ଗୋରସ୍ତକୁ ଓଗାଳିଲେ ଯାଇଁ । ୧୬ । ଯୁବତୀ ବଞ୍ଚେଇଦେ ସେହୁ ସକଳ ବ୍ରାହ୍ମଣ । ମାରିବା ନିମନ୍ତେ ତାଙ୍କୁ ଧଇଲେକ ପୁଣ ।୧୭। ବ୍ରାହ୍ମଣ ବୋଇଲା ତୁମ୍ଭେ ଶୁଣ ମୋର ବାଣୀ । ମୋରଜୀବନକୁ ଯେ ଭୟାଅ ନାହିଁ ପୁଣି ।୧୮। ଯୁବତୀ ବଞ୍ଚେଇଦେ ଦେହ ଧରି ନ ପାରଇ । ତୁମ୍ଭେ ରେ ପାପିଷ୍ଠ ତାଙ୍କୁ ମାଇଲ କିମ୍ପାଇ । ୧୯ । ଦୟା ଧର୍ମ ଦୁଇକଥା ନ କଲ ବିଚାର । ଦେବତା ବ୍ରାହ୍ମଣଙ୍କୁ ତୁମ୍ଭର ନାହିଁ ଡର । ୨୦ । କନ୍ଦରେ ବନ୍ଧିଲି ସ୍ତ୍ରୀ ବାଳକ ହତ୍ୟା ଦୋଷ । ପୁଣିରେ ଚଣ୍ଡାଳମାନେ ମାରିବାକୁ ଆସ । ୨୦ । ଧନ ଲୋଭେ ଏହା ସିନା କହୁଅଛ ଦୁଷ୍ଟ । ମରିବା ବେଳରେ ଯେ ପାଇବ ବଡ଼ କଷ୍ଟ ॥ କୁମ୍ଭୀପାକ ନରକରେ ପଡ଼ିବନ୍ତି ଯାଇଁ । ଏତେବେଳେ ଦୟାଧର୍ମ ତୁମ୍ଭେ ଚିହ୍ନ ନାହିଁ । ୨୩ । କେତେ ପୁଣ୍ୟ କରି ଯେ ପାଇଲ ନରଦେହ । ଜ୍ଞାନପଥ ଛାଡ଼ି କିମ୍ପା ଅଧର୍ମକୁ ଯାଅ । ୨୪ । ମାତା ପିତା ଭ୍ରାତା କେହି ତାହାର ନୁହନ୍ତି । ସେତିକାଲେ ଦୁଃଖକୁ କେହି ନୋହିବେଟି ସାଥୀ । ୨୫ । ମୋର ଯୁବତୀକ ବଧ କଲ ରେ ପାମର । ଏହି ଦେହରେ ତୁମ୍ଭର ହସ୍ତେ ତୁମ୍ଭେ ମର । ୨୬ । ମୁଁ ଯେବେ ବ୍ରାହ୍ମଣ ମୋର କଥା ରହିବାଇ । ମୋହର

ବଚନ କେବେ ଅନ୍ୟଥା ଯେ ନୋହୁ । ୨୭ । ଏମନ୍ତ ବ୍ରାହ୍ମଣ ତାହାଙ୍କୁ
ଯେ ଶାପ ଦେଲା । ପାଞ୍ଚମନେ ସେହି ରାମନାମ ସୁମରିଲା ।୨୮। ବ୍ରାହ୍ମଣ ଯେ
କହଇ ମୁଁ ତୁମ୍ଭର ଅସୂନ୍ଧ । ଏତେବେଳେ ସାହା ମୋତେ ଅଛୁ ଲକ୍ଷ୍ମୀ-
କାନ୍ତ ।୨୯। ବ୍ରାହ୍ମଣ ବଚନ ସେ ଯେ କର୍ଣ୍ଣରେଣ ଶୁଣି । ହରେ ରାମ ହରେ
ରାମ ମନେ ମନେ ଗୁଣି । ୩୦ । ବ୍ରହ୍ମଶାପ ଅଭ କାହିଁ ହୋଇବଃ ଆନ ।
ଆପଣା ଅପଣା ହସ୍ତେ ହୁଅ ଯା ଛେଦନ । ୩୧ । ପୂର୍ବରେ ଏମନ୍ତ ତାଙ୍କୁ
ବ୍ରହ୍ମଶାପ ହେଲା । ଏବେ ବେନି ନେତ୍ରେ ତାହା ଦେଖିବାକୁ ହେଲା ।୩୨।
ଷଡ଼ବଂଶ ଜନଯାକ-ନାଶଗଲେ ଯହୁଁ । ନୃପତି ଆଗରେ କଟୁଆଳ କହେ
ତହୁଁ ।୩୩। ଶୁଣିବା ହେଉ ଭୋ ଦେବ ସାବଧାନ ହୋଇ । ଜାଣିଲୁଁ
ବାଳକ ନିଶ୍ଚେ ମନୁଷ୍ୟ ନୁହଇ ।୩୪। ଯେତେମାନେ ଯାଇ କରି ତାହାଙ୍କୁ
ମାଇଲେ । ଆପଣା ହସ୍ତରେ ସେହୁ ହାଣି ହୋଇ ମଲେ ।୩୫। ଏ ବଚନ
ଶୁଣିକରି ବୋଲେ ନରସାଇଁ । ବହୁତ ଦୁନ୍ଦର ନିଶ୍ଚେ ଜାଣି ଅଛୁ ସେହି ॥
ଯେବେ ଯାଇ ତାହାକୁ ରେ ଶୂଳରେ ବସାଅ । ବାଳକ ବୋଇଲା ତାକୁ
ସୁଦଯ୍ନା ନ ବହ ।୩୭। ସ୍ନାହାନ କରିବାକୁ ରେ ନେବ ଯେତେବେଳେ ।
ବହୁତ ମନୁଷ୍ୟ ଜଗିଥିବ ତେତେବେଳେ ।୩୮। କେଉଁଆଡ଼େ ସେହି ଯେବେ
ଯିବରେ ପଳାଇ । କଣ୍ଠରେ ଦଉଡ଼ି ବାନ୍ଧି ଜଗିଥିବ ତହିଁ ।୩୯। ତାହା ଶୁଣି
କଟୁଆଳ ବେଗେ ଚଳିଗଲା । ଶ୍ରୀଧର ନିକଟେ ଯାଇଁ ପ୍ରବେଶ ହୋଇଲା ॥
ଅସରେ ବାଳକ ତୁହି ଶୂଳରେ ବସିବୁ । ରାଜା ଆଜ୍ଞା କଲେ ତୁହି ସ୍ନାହାନ
କରିବୁ ।୪୧। ଶୁଣିକରି ଶ୍ରୀଧର ଯେ ହରଷ ହୋଇଲା । ଚଳ କଟୁଆଳ
ମୁହିଁ ଯିବଇଁ ବୋଇଲା ।୪୨। ଏ ବଚନ ଶୁଣି ତାକୁ କଟୁଆଳ ନେଲେ ।
ବାଳକର କଣ୍ଠରେ ଦଉଡ଼ି ଲଗାଇଲେ । ୪୩ । ସାତଗୋଟି ଦଉଡ଼ିରେ
ବାନ୍ଧିଲେକ ଭିଡ଼ି । ନ ଜାଣି ସେ କେତେବେଳେ ନ ଯାଏ ଫୁଗୁଳି ।୪୪।
ଚୂରି ପାଖେ ମନୁଷ୍ୟ ଯେ ଦଉଡ଼ି ଧଇଲେ । ଶ୍ରୀଧରକୁ ନେଇଣ ସେ ସ୍ନାନ
କରାଇଲେ ।୪୫। ଧନେଶ୍ୱର ପୁତ୍ର ଜଳେ ସ୍ନାହାନ ଯେ କଲା । ବେନି
ହସ୍ତେ ଜଳ ଟେକି ସୂର୍ଯ୍ୟଙ୍କୁ ଯେ ଦେଲା ।୪୬। ଜଳ ନିଅ ଧର୍ମ ନିରଞ୍ଜନ

ଜଳ ନଅ । ଚତୁର୍ବର୍ଗ ଫଳ ବାରେ ପ୍ରଶ୍ନ ମୋତେ ଦିଅ ।୪୭। ପୁଣି ଜଳ ଟେକି ଦେଲା ମାତା ପିତା ଦୁଇ । ପୁଣି ଜଳ ଟେକି ଦେଲା ସେ ପଡ଼ଶା ଭାଇ ।୪୮। ଜ୍ୟେଷ୍ଠାଙ୍କୁ କନିଷ୍ଠାଙ୍କୁ ଜଳ ଟେକି ଦେଲା । ପଞ୍ଚମନେ ଇଷ୍ଟ-ଦେବତାଙ୍କୁ ସୁମରିଲା । ୪୯ । ପୁଣି ମଙ୍ଗଳାମାତାଙ୍କୁ ଟେକିଦେଲା ଜଳ । ସ୍ୱଦେଶକୁ ଆସିବାରେ ମିଳିଲା ଏ ଫଳ । ୫୦ । ଏତେ କହନ୍ତେଣ ସେ ମଙ୍ଗଳା ଶୂନ୍ୟେ ରହି । ଆଜ୍ଞାଦେଲେ ରେ କୁମର ଭାଳୁ କାହିଁ ପାଇଁ ।୫୧। କୁମର ବୋଇଲା ମୁହିଁ କି ବୁଦ୍ଧି କରିବି । ମାତା ପିତା ମୁଖ ଆଉ ଦେଖି ନ ପାରିବି । ୫୨ । ବୋଇଲେ ମଙ୍ଗଳା ଚିନ୍ତା କରୁ କାହିଁପାଇଁ । ମୋର ଥିଲେ ଦୁରିତ ତୋହର କିଛି ନାହିଁ ।୫୩। ଏତେ କହି ମଙ୍ଗଳା ଯେ ମାୟା ଭିଆଇଲେ । ଦଉଡ଼ି ଫିଟିଣ ଗଲା କଟୁଡ଼ି ପଡ଼ିଲେ ।୫୪। ସବୁ ସୈନ୍ୟ-ମାନେ ତହୁଁ ଚକିତ ହୋଇଲେ । ନନ୍ଦନ ବଡ଼ ସୁନ୍ଦର ଜାଣିଲେ ବୋ-ଇଲେ । ୫୫ । ଶ୍ରୀବନ୍ତ କୁମର କହେ ଶୁଣ ମୋ ଉତ୍ତର । ମନ୍ଦାର ପୁଷ୍ପ ଗୋଟିଏ ଦିଅ ମୋ ହସ୍ତର ।୫୬। ଅର୍ଘ୍ୟ ଟେକିଦେଲେ ମୁହିଁ ଶୂଳରେ ବସିବି । ନ ଦେଲେ ସକଳ ସୈନ୍ୟ ଗୋଡ଼ାଇ ମାରିବି ।୫୭। ଏହା ଶୁଣି କଟୁଆଳ ତଡ଼ ବେଗେ ଗଲା । ଅଚ୍ୟୁତ ରଣା ମନ୍ଦିରେ ପ୍ରବେଶ ହୋଇଲା ॥ ଘରେ ନାହିଁ ଯାଉଛି ଯେ ଫୁଲ ବିକିବାରେ । କହିଲା ସକଳ କଥା ତା ପୁତ୍ର ଆଗରେ ।୫୯। କେଶବ ରଣା ବୋଲିଣ ନାମ ଅଟେ ତାର । ତତ-କ୍ଷଣେ ଗୁନ୍ଥିଣ ଦେଲାକ ଫୁଲହାର । ୬୦ । କଟୁଆଳ ନେଇ ତହୁଁ ବାହୁଡ଼ି ଅଇଲା । ଶ୍ରୀଧର ଆଗରେ ନେଇ ତାହା ସମର୍ପିଲା ।୬୧। ଅର୍ଘ୍ୟ ଟେକିଦେଲା ସେ ଯେ ମଙ୍ଗଳାମାତାଙ୍କୁ । ଜଳରେ ଆଇଣ ମାତା ଘେନିଲେ ତାହାଙ୍କୁ ॥ ଅଷ୍ଟବଂଶ ଛାନ୍ଦ ମୁଁ ଯେ ଏଣି କଲି ଶେଷ । ସୁଜନ ଜନେ ମୋହର ନ ଘେନିବ ଦୋଷ ।୬୩। ଏଣିକି ଏ ଯୁଗ ଯେ ହୋଇବ ସମକେଶ୍ୱା । ସ୍ୱପ୍ନ-କଥା ମନେ ଚିନ୍ତି ଲେଖିଲ ଭିକାରୀ । ୬୪ ।

---

## ଷଡ଼ତ୍ରିଂଶ ଛାନ୍ଦ

ରାଗ—ରାମକେରୀ

ଶୁଣ ଶୁଣ ସୁଜ୍ଞଜନେ ହେ ଏଥୁଅନ୍ତେ କାହାଣୀ । କଢ଼ାଇଲା ତହୁଁ ଚଣ୍ଡାଳୁ ଘେନି କୁମରମଣି ।୧। ରାଜାଙ୍କ ଆଗେ ଦେଖାଇଲା ତୋଷ ହେଲେ ନୃପତି । ବୋଇଲେ ଶୂଳରେ ବସାଅ ଘେନିଗଲେ ତଡ଼ିତି ।୨। ଆଜ୍ଞା ପ୍ରମାଣରେ ତାହାଙ୍କୁ ନୂଆବସ୍ତ୍ର ପିନ୍ଧାଇ । ସିନ୍ଦୁର କଜ୍ଜ୍ୱଳ ତାହାଙ୍କୁ ଯତନରେ ଯେ ଦେଇ ।୩। ଶୂଳକୁ ନେବାର ନିମନ୍ତେ ରାଜା ଆଜ୍ଞା ଯେ କଲେ । ତଡ଼-ବଡ଼ ବେଗେ ଯାଅ ରେ ଅମ୍ଭେ ଦେଖିବା ଭଲେ ।୪। ଘେନି ଗଲେ ଶିରୀ-ଧରକୁ ଶୂଳପରେ ବସାଇ । ମଙ୍ଗଳା ମାତାଙ୍କୁ ଭାବନା ଶିରୀଧର କରଇ ॥ ରଖ ରଖ ମୋତେ ମଙ୍ଗଳା ଏହି ଦୁଃଖରୁ ରଖ । ତୁମ୍ଭେ ନ ରଖିଲେ ମାତା ଗୋ ମୁହିଁ ହେଲି ନିରେଖ ।୬। ଏତେ ଦୁଃଖରୁ ରଖିଥିଲ ଏବେ ନିଷ୍ଠୁର ମଲି । ପିତା ଅଛନ୍ତି ମୋର ଲୁଆଡ଼େ ସନ୍ଦେଶ ନ ପାଇଲି ।୭। ବାଳକର ଦୁଃଖ ଜାଣିଲେ ମାତା ଶୂନ୍ୟରେ ଥାଇ । ବିଚାରିଲେ ଦୁଃଖେ ପଡ଼ିଛି ମୋର ବାଳତନୟି ।୮। ମୁଁ ଯେବେ ତାକୁ ନ ରଖିବି ଆଉ କେହୁ ରଖିବ ଏମନ୍ତ ବିଚାରି ମନେ ଯେ ଧାଇଁଲେ ତଡ଼ବେଗ ।୯। ବୁଢ଼ୀ ରୂପ ହୋଇ ହସ୍ତରେ ଧଇଲେକ ଯେ ବାଡ଼ି । ଅତି ଅଲକ୍ଷଣୀ ରୂପରେ ଚାଲନ୍ତି ପଥ ହୁଡ଼ି ।୧୦। ଦେହମଧ୍ୟେ ମଳି ବସିଛି ମାଳ ବେକରେ ନାହିଁ । ଦନ୍ତସବୁ ଝଡ଼ି ଗଲଣି ତାକ ଶୁଦ୍ଧି ତ ନାହିଁ ।୧୧। ଲେଞ୍ଜିଆ ଆଖିରୁ ବହୁଛି ବାଳ ମୁଣ୍ଡେ ଜଡ଼ୁଛି । ଭଳିଗୋଟା କୁଜ ପିଠିରେ ଭଳ ଭଳ ହୋଇଛି ।୧୨। ଦୁଇଗୋଡ଼ ଯାକ ଗୋଦର ଲମ୍ବ ଲମ୍ବ ହୋଇଛି । ଚାଲିବାକୁ ଯଷ୍ଟି ତାହାର ଆଉ ନୁହଇ କଛି ।୧୩। ଥର ଥର ହୋଇ ଚାଲନ୍ତେ କଉତୁକେ ରହସ୍ୟ । ଘଡ଼ିକେ ଡେରିଏ ଚାଲନ୍ତି ମିଛେ ଲାଗେ ଯେ ହସ ।୧୪। ଭୂଇଁରେ ନାକ ଲାଗୁଅଛି ରାଜା ବାଳୁତ ପାଶ । ବାଳୁତକୁ କିସ ଦେଖୁଛ ବୁଢ଼ୀ ଦେଖିବ ଆସ ।୧୫। ତାହା ଶୁଣି ବୁଢ଼ୀ କହଇ ବାଟ ଛାଡ଼ରେ ମୋତେ । ଜୁଆଇଁ ଘରକୁ ଯିବ ମୁଁ ଝିଅ ଦେଖିବା ଅର୍ଥେ ।୧୬। ଜଣା ହେଲା ଯହୁଁ ବସୁସ

ବାଟ ଦିଅଇ ନାହିଁ । କେଉଁଅଡ଼େ ଯିବ କେଣିକ ବାଟ ଦିଅରେ
କହ । ୧୭ । ଡ଼ଗର କହଇ ତାହିଁର ଅଲେ ଡ଼ାଆଣୀ ବୁଢ଼ୀ । ରାଜା
ସଜେ କରଅଛନ୍ତି ଧେନ ଯାଉଛୁ ବାଡ଼ । ୧୮ । ଆଉ କ ବାଟ ତୋତେ
ନାହିଁ ଏହ ବାଟେ ଅଇଲୁ । ନୃପତ ଅଛନ୍ତି ବୋଲଣ ଭୟ ତୁ ନ
ପାଇଲୁ । ୧୯ । ନୃପତ ବୋଇଲେ କାଯରେ କହ ମୋର ନକଟ । ଡ଼ଗର
କହଇ ମଣିମା ବୁଢ଼ୀ ଖୋଜୁଛି ବାଟ । ୨୦ । ଶୁଣି ଦଣ୍ଡଧର କହଇ ଧେନ-
ଆଯ ଦେଖିବା । କାହିଁ ରେ ଘର ତାର ଅଟଇ କୁଳଗୋତ୍ର ପୁଛିବା । ୨୧ ।
ଆଜ୍ଞା ପ୍ରମାଣରେ ଡ଼ଗର ବୁଢ଼ୀ ହସ୍ତ ଧଇଲେ । ସୁଦର୍ଶନ ରାଜା ନକଟେ
ଭେଟ କରାଇ ଦେଲେ ॥ ତା ଦେଖି ନୃପତ କାତର ହୋଇ ଅତ ପ୍ରକୋପ ।
ମହାଭୟ ମୋତେ ଲାଗୁଛି ଦେଖି ତାହାର ରୂପ । ୨୩ । ଅଟଇ ଏ ବୁଢ଼ୀ
ଡ଼ାଆଣୀ ତାକୁ ଘଉଡ଼ା ଦିଅ । ଏ ରୂପ ଯେ ଅମ୍ଭମାନଙ୍କୁ ଦେଖି ଲାଗଇ
ଭୟ । ୨୪ । ତାହା ଶୁଣି ଦୂତମାନେ ଯେ ବେଗେ ଦେଲେ ଘଉଡ଼ା । ଉଗ୍ରାନ
ହୋଇଣ ମଙ୍ଗଳା ପଡ଼ିଲେକ କାନ୍ଦୁଡ଼ା । ୨୫ । ତତକ୍ଷଣି ଦୁଇ ଆଖିକ କପୋ-
ଳରେ ଖୋସିଲେ । ଦୁଇଗୋଡ଼ ଦୁଇ ହାତକୁ ଲୋଟୁ୨ ଚେଯ କଲେ । ୨୬ ।
ହସ୍ତୁ ବାଡ଼ି ଖାଇ ପଡ଼ିଲା ମୁଖ କଲେଟି ବଙ୍କା । ତାହା ଦେଖି ରାଜା ପରଜା-
ମାନେ କଲେଟି ଶଙ୍କା । ୨୭ । ଊନତ୍ରିଂଶ ଛାନ୍ଦ ଏଠାରେ ଶେଷ ହୋଇଲା
ଅଯି । କହଇ ଧୀବର ଭକାଶ୍ରି ରଖ ନୀଳାଦ୍ରିବାସୀ । ୨୮ ।

---

## ତ୍ରିଂଶ ଛାନ୍ଦ

ରାଗ—ମଙ୍ଗଳ

ଶୁଣ ହେ ସୁଜନ ଜନେ ଏଥୁ ଅନନ୍ତରେ । ମଙ୍ଗଳାକୁ ଯେ ସୁମରେ
ସଙ୍କଟୁ ନମ୍ତରେ । ୧ । ଶୁକ୍ଳଆପଦାରେ ପଡ଼ିଛନ୍ତି ଠାକୁରାଣୀ । ଯେଠାରେ
ବସିଛନ୍ତି ସୁଦର୍ଶନ ନୃପମଣି । ୨ । ଜଗତ ଜନନୀ ଯେ ଯେ ସିନ୍ଦୂର ଦୁଲଲା ।
ତାଙ୍କର ମହିମା ଅବା କେ ପାରିବ କଳା । ୩ । ଏଣେ ଠାକୁରାଣୀ ପଡ଼ିଅଛନ୍ତି
ଭୂମିରେ । ତେଣେ ମାୟା ଦେଖାଇଲେ ରାଣୀର ଅଗରେ । ୪ । ଦିବ୍ୟ-

ସୁନ୍ଦର ରୂପ ଯେ ଦେଖାଇଲେ ତାଙ୍କୁ । ବୋଇଲେ ଦଣ୍ଡ ଦେଉଛନ୍ତି ରାଜା
ଯେ ଆମ୍ଭଙ୍କୁ ।୫। ମୋହର ପୁତ୍ର ଅଟଇ ଶ୍ରୀଧର କୁମର । ତାଙ୍କୁ ଦୁଃଖ ଦେଉ-
ଅଛନ୍ତି ରାଜା ଧାଣ୍ଡଧର ।୬। ତାର ଦୁଃଖ ଫେଡ଼ିବାକୁ ଆସିଅଛି ମୁହିଁ । ମୋତେ
ତହୁଁ ଘଉଡ଼ାଇ ଦେଲ ନରସାଇଁ । ୭ । ସହି ନ ପାରଣ ମୋତେ ଦେଲ
ଘଉଡ଼ାଇ । ସେଠାବୁ ମୁହିଁ ସିନା ଅଇଲି ପଳାଇ ।୮। ନ ଜାଣି ସେ ରାଜା
ମୋତେ ଯେତେ ଦଣ୍ଡ ଦେଲା । ସେ କଥାକୁ ମୁହିଁ ଚିନ୍ତା ନ କରଇ ଭଲା ।।
ଅନ୍ୟ ଲୋକ ହୋଇଥିଲେ ମାରନ୍ତି ତାହାକୁ । ଯେତେ ଦଣ୍ଡ ଦେଲା ସେହୁ
ମୋହର ପୁତ୍ରକୁ । ୧୦ । ଏବେ ତୋର ଘରେ ଅଛି ଯେବଣ ନନ୍ଦନୀ ।
ମୋହର ପୁତ୍ରକୁ ଏବେ ବିଭାକର ଆଣି । ୧୧ । ନୋହିଲେ ତୋହର ପୁର
ନଷ୍ଟ ଭ୍ରଷ୍ଟ ହେବ । ଜନ ପରଜା ଏ ରାଜ୍ୟ କେହି ନ ରହିବ । ୧୨ ।
ଏମନ୍ତ ପ୍ରକାରେ ତାଙ୍କୁ କହିଣ ମଙ୍ଗଳା । ସେଠାବୁ ବେଗେ ଚଳିଗଲେକ
ମଙ୍ଗଳା । ୧୩ । ଏଥୁ ଅନନ୍ତରେ ଜଣେ ଶୁଣ ଅନନ୍ତ । ରାଣୀ ଅଗେ
ଏହା କହି ଗଇଲା ଦୁହିତା ।। ସୁଦର୍ଶନ ରାଜା ଯେ ସେଠାରେ ବସିଥିଲା ।
ବୁଢ଼ୀର ପଡ଼ିବା ଦେଖି ଚକିତ ହୋଇଲା ।୧୪। ବଡ଼ୁର ମନରେ ସେ ଯେ
ହୋଇଲା ବିଷାଦ । ନିଶ୍ଚୟ ଆସିଣ ମୋତେ ପଡ଼ିବ ପ୍ରମାଦ ।୧୫। କି ବୁଦ୍ଧି
କରନ୍ତି ମୋତେ କିଛି ଦିଶୁ ନାହିଁ । ତାହା ସଙ୍ଗତରେ ଅଗ୍ନିରେ ପଡ଼ିବ
ତେଇଁ । ୧୬ । ଜଗତେ ଜାଣିବେ ରାଜା ଅପକୀର୍ତ୍ତି କଲା । ତାଗର ହସ୍ତେ
ମରଇ ବୁଢ଼ୀ ପ୍ରାଣ ନେଲା । ୧୭ । ତେଣୁ ଅପବାଦ ମୋତେ ହୋଇବଟି
ପୁଣି । ଅକଳଙ୍କ ଚନ୍ଦ୍ରେ କଳଙ୍କ ଦେଲି ଆଣି । ୧୯ । ମନ୍ତ୍ରୀକି ବୋଇଲା
ଅଗ୍ନି ଲଗାଅ ବହନ । ବୁଢ଼ୀର ସଙ୍ଗରେ ଦେହ କରିବି ଦହନ । ୨୦ ।
ଏହା ଶୁଣି ମନ୍ତ୍ରୀ ବୋଲେ ନୃପତିଙ୍କ ଚାହିଁ । ନିଶ୍ଚୟ ସେ ଦେବ ତୁମ୍ଭେ
ହୋଇଲ କି ବାଇ । ୨୧ । ମାନବ ବୋଲିଣ ତୁମ୍ଭେ ବାଉରିଲ ଚିତ୍ତ ।
ଏହି ବୁଢ଼ୀ ଅଟଇ ଯେ ଜଗତର ମାତ ।୨୨। ଏମନ୍ତ ପ୍ରକାରେ ମନ୍ତ୍ରୀ
କହନ୍ତେ ରାଜାଙ୍କୁ । ମିଠ ମିଠ କରି ମାଏ ଚାହିଁଲେ ତାହାଙ୍କୁ । ୨୩ । ଦେଖି
କରି ନୃପତି ଯେ ହରଷ ହୋଇଲେ । ଧର ଧର ବୁଢ଼ୀ ଏବେ ଜୀବନ

ପାଇଲେ । ୨୪ । ବିଂଶ ଛାନ୍ଦ ଏହିଠାରେ ହୋଇଲାକ ଶେଷ । ଭକ୍ତଙ୍କ ରକ୍ଷା ବାରେ କମଳା ବଳାଇ । ୨୫ ।

---

## ଏକବିଂଶ ଛାନ୍ଦ

ରାଗ—କଲସା

ଶୁଣ ହେ ସୁଜନ ଜନେ ଅପୂର୍ବ କାହାଣୀ । ଶ୍ରବଣରେ ପଡ଼ିଲେ ଦୂରିତ ହୁଏ ହାଣି । ୧ । ପଚ୍ଛୁଁ ବୁଢ଼ୀ ସେଠାବତୁଁ ଚେତନା ପାଇଲା । ସୁଦର୍ଶନ ରାଜା ଦେଖି ହରଷ ହୋଇଲା । ୨ । ନିକଟରେ ଯେତେ ଲୋକ ସେବଥିଲେ ତାର । ସମସ୍ତଙ୍କୁ ବୋଇଲା ଯେ ଏ ବୁଢ଼ୀକି ଧର । ୩ । ରାଜା ଆଜ୍ଞା ପାଇଣ ଯେ ସର୍ବେ ହେଲେ ତୋଷ । ସର୍ବେ ଯାଇଁ ବୁଢ଼ୀକି ଯେ ଧଇଲେ ଚରଣ । ୪ । ନ ଉଠଇ ବୁଢ଼ୀ ତେବେ ହୁଅଇ ନିଶ୍ଚଳ । ଦେଖି ଭର ଚକିତ ଯେ ହୁଅଇ ଭୂପାଳ । ୫ । ଭଲା ବୁଢ଼ୀ କାହୁଁ ଆସି ଏଠାରେ ପଡ଼ିଲା । ଉଠିବା ମାତ୍ରକେ ଭର ଚକିତ ହୋଇଲା । ୬ । ଏମନ୍ତ କହିଣ ରାଜା ଗଲା ତାର ପାଶ । ମନ୍ତ୍ରୀ କହେ ମିଛେ ଭର୍ତ୍ସେ ନ ମଣ ନରେଶ ।୭। ଏହି ବୁଢ଼ୀ ଅଟଇ ଜଗତ ଠାକୁରାଣୀ । ବାଳକର ଦୁଃଖ ଦେଖି ଆସିଥିଲେ ପୁଣି । ୮ । ମୋହର ବଚନ ତୁମ୍ଭେ ଘେନ ଏ ମନରୁ । ଆଉ ଦଣ୍ଡ ନ ଦିଅ ବାଳକ ନନ୍ଦନକୁ । ୯ । ତାହା ଶୁଣି ସୁଦର୍ଶନ ହୋଇଲେ ଆନନ୍ଦ । ମୁଖ ପ୍ରକାଶଇ ଯେହ୍ନେ ପୂର୍ଣ୍ଣିମୀର ଚନ୍ଦ୍ର । ୧୦ । ତତକ୍ଷଣେ ବୁଢ଼ୀକି ଯେ ଧରଣୀ ଆଣିଲେ । ରାଜା ଧରନ୍ତେଣ ବୁଢ଼ୀ ଉଠିଣ ବସିଲେ । ୧୧ । ବୁଢ଼ୀର ବଦନ ଦେଖି ରାଜା ପଚାରିଲେ । କହ କହ ବୁଢ଼ୀ ତୋର ଘର କାହିଁ ଭଲେ ।୧୨। କେ ତୋହର ପିତା ଅଟେ କେ ତୋହର ପତି । କେ ତୋହର ପୁତ୍ରବଧୂ କେ ତୋହର ନାତି । ୧୩ । କେଉଁ କାରଣେ ତୁ ଯେ ଅଇଲୁ ଏଠାକୁ । ସଂଶୟ ଫିଟାଇ କହ ତୁହି ଯେ ଆମ୍ଭଙ୍କୁ । ୧୪ । ଏହା ଶୁଣି ମଙ୍ଗଳା ଯେ କହନ୍ତି ବଚନ । ଜାଣ ଏଣି ଗର୍ଭରୁ ମୁଁ ଯେ ହେଲି ଉତପନ୍ନ ।୧୫। ଜଗତର ମଧ୍ୟେ ମୁଁ ଯେ ଅଟଇ ଜାଣ ଏଣି । ଆଜ କେଉଁ କଥା ପଚାରୁଛ ନୃପମଣି ।୧୬।

ଏ ବଚନ ଶୁଣି ରାଜା ହୋଇଲେ ଉଦ୍ଧତ । ଗେଲେ ଗେଲେ ମୁହିଁ ସିନା
ପଂଗୁଇର ମାତ । ୧୭ । ସେ କ୍ଷମନ୍ତେ ମନରେ ତୁ କରୁଅଛୁ କୋପ ।
ଫିଟାଇଣ ନ କହୁ ତୁ ବଚନ ସ୍ୱରୂପ ॥ ଏହା ଶୁଣି ମଙ୍ଗଳା ଯେ ବୋଲନ୍ତି
ଉତ୍ତର; କାଞ୍ଚିଡ଼ା ଦେଶରେ ଯେ ଅଟଇ ଅମ୍ଭ ଘର । ୧୮ । ଗେରସ୍ତ ନାମ
ଅଟଇ ଗୋବିନ୍ଦ ନାୟକ । ପୁତ୍ରର ନାମ ଅଟଇ ପରଶୁନାୟକ । ୧୯ । ଏକଇ
ପୁତ୍ର ମୋହର ଏକଇ ଦୁହିତା । ତୁ ଯାହାକୁ ଶୂଳୀ ଦେଉ ସେ ମୋହର
ନାତି । ୨୦ । ମୋର ଦୁହିତା ଅଟଇ ଖଳଣା ସୁନ୍ଦର । ଏହି ବାଳକ ଅଟଇ
ତାହାର କୁମର । ୨୧ । ଅବର ପୁତ୍ର ଦୁହିତା ସମସ୍ତେ ମୋହର । ଜଗତ
ମଧ୍ୟରେ ଯେତେ ସବୁ ନରନାରୀ । ୨୨ । ମାତା ବୋଲି କରି ମୋତେ ମାନ-
ଥାଇ ଯେହି । ତାଙ୍କୁ ଘୋର ସଙ୍କଟରୁ ଉଦ୍ଧରଇ ମୁହିଁ । ୨୩ । ମୋର ପାଦେ
ଅନ୍ତେ କରିଅଛି ଏ ବାଳୁତ । ତୁ ଯେତେ ରୂପେ ମାଇଲେ ନ ମରଇ ସେତ ॥
ଦେଖିଲୁ ତୋହର ବୀର କେତେ କେତେ ଥିଲେ । ବାଳକାକୁ ମାରନ୍ତେ
ଆପଣେ ନାଶ ଗଲେ । ୨୪ । ଏବେ ତାକୁ ଶୂଳୀକାଠେ ବସାଇଲୁ ଅଣି ।
ମନସୁଖେ ବସିଛି କୁମର ଚୂଡ଼ାମଣି । ୨୫ । ମୋର ଥିଲେ ତାକୁ କାହିଁ ଅଛଇ
ବିପତ୍ତି । କେତେ କେତେ ଦଣ୍ଡ ଅବା ନ ଦେଲୁ ନୃପତି । ୨୬ । ମୋତେ
ଅଦୋଷରେ କେତେ ଘଉଡ଼ାଇ ଦେଲୁ । ଧନଗର୍ବପଣେ ତୁ ଯେ ଚିହ୍ନି
ନ ପାରିଲୁ । ୨୭ । ଏ ବଚନ ଶୁଣି ରାଜା ଚକିତ ହୋଇଲା । ତତକ୍ଷଣେ
ମଙ୍ଗଳାଙ୍କ ଚରଣେ ପଡ଼ିଲା । ୨୮ । ବୋଇଲା ମୋ ଦୋଷ କ୍ଷମାକର ଠାକୁ-
ରାଣୀ । ଅଜ୍ଞାନ ପଣରେ ମୁଁ ଯେ ନ ପାରିଲି ଚିହ୍ନି ॥ ସେ କ୍ଷମନ୍ତେ କୋପ
ମୋତେ ନ କର ଆପଣ । ତୁମ୍ଭେ ତ ସର୍ବଙ୍କ ମାତ ସର୍ବକଥା ଜାଣ । ୩୦ ।
ନ ଜାଣିମା ପଣେ ମୁଁ ଯେ ଅଚରିଲି ଦୋଷ । ଏବେ ମାତ ମୋହଠାରେ
ନ କର ଯେ ରୋଷ । ୩୧ । ସାଅନ୍ତରେ ସେବକ ଯେ ଦୋଷ ଅଚରିଲେ;
ସେ ଦୋଷକୁ କେହୁ କ୍ଷମା କରିପାରେ ଭଲେ । ୩୨ । ମାତାଠାରେ ପୁତ୍ର
ଯେବେ ଦୋଷ ଅଚରିବ । ଜନନୀ ମାରିଲେ ପୁତ୍ର ଆଉ କି କରିବ । ୩୩ ।
ତୁମ୍ଭେ ତ ଜଗତମାତା ମନ୍ଦର ଦୁହିତା । କାଣିପାରୁ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ

ବ୍ୟବସ୍ଥା । ୩୪ । ମୋହ ଦୋଷ ମନରେ ନ ଘେନ ମାତ ଅଭ୍ୱ । କହୁଛି
ବାନସ୍ତୃ ମୋହଠାରେ କୃପା ହେଉ ।୩୫। ମାଇଲେ ମାରବ ତୁମ୍ଭେ ରଖିଲେ
ରଖିବ । ତୁମ୍ଭ ବିନା ମାତା ମୋତେ କେ ଅବା ରଖିବ । ୩୬ । ଅପର୍ଣ୍ଣା
ପାର୍ବତୀ ତୁ ଯେ ଅମ୍ବିକା ବୋଲଉ । ଅଶେଷ ମହିମା ତୋର କେତେ ରୂପ
ହେଉ ।୩୭। ବାଳକ ବୃଦ୍ଧ ତରୁଣ ରୂପ ହେଉ ତୁହି । ତେଣୁକରି ମାତା
ତୋତେ ମୁଁ ଚିହ୍ନିଲି ନାହିଁ । ୩୮ । ସଂସାରରକ୍ଷିଣୀ ମାତ ତ୍ରୈଲୋକ୍ୟ
ଜନନୀ । ଦାୟ ଅପରାଧ କ୍ଷମାକର ଗୋସାମଣି । ୩୯ । ଇନ୍ଦ୍ରାଦି ଦେବତା
ତୋର ମାୟାରେ ମୋହିତ । ମୁଁ ଛାର ଅଧମ ଜନ କି ଶକ୍ତି ମୋର ତ ।୪୦।
ମଙ୍ଗଳା ବୋଇଲେ ତୁ ହେ ଶୁଣ ନରନାହା । ପ୍ରକୃତମାନେ ଏଥିଲାଗି
କହୁଛନ୍ତି ଏହା ।୪୧। ପାଞ୍ଚଗୋଟି ମନକୁ ପଚାଶ ହଂସାକାର । ବାଟ ଛାଡ଼ି
ଯାଅନ୍ତି ସେ ଅବାଟକୁ ଓଟାର । ୪୨ । ତୁହି କି କରବୁ ତୋର ନୁହଇ
ଅସୂୟା । ଏହି କଳିଯୁଗର ଯେ ବେଭାର ଏମନ୍ତ ।୪୩। ନାନା ଅନାଥ କର୍ମ
ଯେ ନୃପତି କରିବେ । ବ୍ରାହ୍ମଣଙ୍କୁ ଦାନଦେଇ ଆପଣେ ହରିବେ ।୪୪। ସତ୍ୟ
ବୁଡ଼ି ମିଥ୍ୟାରେ ହୋଇବ କାରବାର । ସୁବୁଦ୍ଧି ପଣ୍ଡିତମାନେ ହୋଇ-
ବେଟି ଚୋର ।୪୫। ଦେହଶୁର ଭାଇବୋହୂ ସଙ୍ଗରେ ପୀରତି । ଅତି
ଅନାଚାରର କଥା ଏହିବ ଧରତୀ । ୪୬ । ପୁରୁଷଲକ୍ଷ ବଡ଼ତଣ ସହସ୍ର ବର୍ଷ
କଳା । ପଣିକ ମାନବେ ହେବେ ଏକ ଏକ କଳା । ୪୭ । ଷାଠିଏ ବରଷ
ପରମାୟୁ ହେବେ ଥିବ । ଏଥି ମଧ୍ୟରେ ଯେ କୁଇ ପୁତ୍ର ରହିଯିବ । ୪୮ ।
ଶୂଦ୍ର କରିବେ ରମଣ ବ୍ରାହ୍ମଣୀ ରମଣୀ । ଜଳ ବୃଷ୍ଟି ନ କରିବ ବେଳକାଳ
ଜାଣି । ୪୯ । ଅଢ଼ାଇ ପ୍ରହରଯାକେ କରିବେ ସେ ହଳ । ନଦୀମାନଙ୍କୁ
ସବୁ ଶୁଖିଯିବ ଜଳ । ୫୦ । ପଣ୍ଡିତମାନଙ୍କ ଯୋଗ ହୋଇବଟି ବଣା,
ରାଜାମାନେ କିଛି ନ କରିବେ ବୃଷାବର୍ଣ୍ଣା ।୫୧। ଦୀନଜନମାନଙ୍କୁ ଯେ ଯେହୁ
ନ ଚାହିଁବେ । ଅପନ୍ତର ସ୍ଥାନକୁ ଯେ ବୃକ୍ଷ ଲଗାଇବେ ।୫୨। ଶୀତକାଳେ
ଅଗ୍ନିଦାନ ନ ଦେବଟି କେହି । ଦେବତା ବ୍ରାହ୍ମଣ ଅଉ ନ ମାନିବେ ସେହି
୫୩। ପିତାଠାରୁ ଜ୍ୟେଷ୍ଠ ପୁତ୍ର ଭିନ୍ନ ହୋଇଯିବ । ପତିବ୍ରତା ପଣ ଯେ

କାହାର ନ ରହିବ ।୫୪। ବେଶ୍ୟାମାନେ ସମସ୍ତେ ହୋଇବେ ଲଜ୍ଜାବତୀ । ପତିବ୍ରତା ନାରୀମାନେ କରିବେ ଅନୀତି । ୫୫ । ବିଧବା ଯୁବତୀମାନେ ସିନ୍ଦୂର ଘେନିବେ । ବେଳ ପ୍ରହରକେ ନାରୀ ଶଯ୍ୟାରୁ ଉଠିବେ । ୫୬ । ଧର୍ମପତ୍ନୀ ଛାଡ଼ି ପୁଂସେ ଜାର ପତ୍ନୀ ଭୁଲେ । ଜାରଜ ସନ୍ତାନ ସୃଷ୍ଟି କରିବେ ଶଯ୍ୟାରେ ।୫୭। ତେଣୁ ଦେବ ପିତୃମାନେ ନ ପାଇବେ ଜଳ । ବର୍ଣ୍ଣ ଶଙ୍କ-ରରେ ପୂର୍ଣ୍ଣ ହେବ ମହୀମଣ୍ଡଳ । ୫୮ । ପଦ୍ମିନୀ ଯୁବତୀ ଆଉ ଜାତ ହେବେ ନାହିଁ । ଶଙ୍କୁନ ଉତ୍ପନ୍ନ ହେବେ ଚତୁର୍ଦ୍ଦଶ ମହୀ ।୫୯। ବ୍ରାହ୍ମଣମାନେ ଯେ ଋଗବେଦ ପାଶୋରିବେ । ବେଳକାଳ ଜାଣି ବିଷ୍ଣୁ ସେବା ନ କରିବେ ॥ ଶିଖିବେ ଗାୟତ୍ରୀ ମନ୍ତ୍ର ପାଶୋରିବେ ବେଦ । ମଧୁର ପଦାର୍ଥ ଆଉ ନୋହିବଟି ସ୍ୱାଦ । ୬୧ । ଋତୁ ଜାଣିକରି ଯେ ବସନ୍ତ ନ ବହିବ । ଗୁରୁ ଆଗେ ଶିଷ୍ୟ ମିଥ୍ୟା କଥାହିଁ କହିବ । ୬୨ । ଦୀକ୍ଷାଗୁରୁ ଶିକ୍ଷାଗୁରୁ ନ ମାନିବେ କେହି । କଳି କରିବାକୁ ଏବେ ବାଟ ଥିବେ ଚାହିଁ ।୬୩। ବନ୍ଧ୍ୟ ଗଭିଣୀ ତୃଷା କରିବେଟି ସ୍ନାନ । ରାଜାମାନେ ବ୍ରାହ୍ମଣକୁ ନ ଦେବେଟି ଦାନ ।୬୪। ଅନଳ ମୁଖରେ କେବେ ନ ଦେବଟି ଘୃତ । ଠାକୁରମାନଙ୍କୁ ଯେ ହୋଇବେ ଅନ୍‌କତ । ୬୫ । ଗୋପନ ହୋଇଣ ଯେ ରହିବେ ନର-ହରି । ଚଣ୍ଡୀ ଚାମୁଣ୍ଡାଙ୍କ ପ୍ରଭା ହୋଇବଟି ଭାର । ୬୬ । ସନ୍ଥଜନମାନେ ଯେ ଗୋଟିଏ ନ ବର୍ତ୍ତିବେ । ପାପୀଜନଙ୍କର କୁଳ ବଢ଼ିତ ହୋଇବେ । ୬୭ । ଭାଗବତ ପୁରାଣକୁ ନିନ୍ଦିବେ କୁଜନ । ଅମାବାସ୍ୟା ସଙ୍କ୍ରାନ୍ତିରେ କରିବେ ଭୋଜନ । ୬୮ । ବଇଦମାନଙ୍କୁ ନିନ୍ଦା କରିବେ ଯେ ମଳୁ । ଦ୍ୱିଜମାନେ ବିଷ୍ଣୁଙ୍କୁ ଯେ ନ ଡେକିବେ ଚଳୁ । ୬୯ । କବିମା-ନଙ୍କୁ ଯେ ନିନ୍ଦା କରିବେଟି ମୂର୍ଖ । ଗେରସ୍ତକୁ ଭାରିଯା ଯେ ହୋଇବ ବିମୁଖ । ୭୦ । ବ୍ରାହ୍ମଣମାନଙ୍କର କଲ୍ୟାଣ ନ ଘଟିବ । କ୍ଷତ୍ରିୟ ବଂଶରେ କ୍ଷତ୍ରିକୁଳ ନ ରହିବ । ୭୧ । ବଇଷ୍ଣବ ଜନମାନେ ହୋଇବେଟି ଭୋଗୀ । ପଣ୍ଡିତ ଜନମାନେ ଯେ ଯିବେ ଭିକ୍ଷା ମାଗି । ୭୨ । ଜଉତିଷ. ପାଞ୍ଜି ଆଉ ସତ୍ୟ ଯେ ନୋହିବ । ନାରିକେଳ ପାଣି ସୁରା ପରାୟେ ଲାଗିବ । ୭୩। ଆମ୍ବ

ଘଟାଇ କଦଳୀ ଲାଗିବଟି କଷ୍ଟ । କାହାକୁ ଛାଡ଼ିବ ନାହିଁ ନବଗ୍ରହ ଦଶା ॥ ମହାଜନମାନଙ୍କର ଲାଗିବଟି କଳି । ମହନ୍ତ ଜନ ବଚନ ଯିବଟି ହେ ଚଳି ॥ ପ୍ରଭୁଙ୍କ କୈବଲ୍ୟ ଛୁଇଁ ଲଘୁମ କରିବେ । ଅଳ୍ପ ଅଳ୍ପ ଅପୂଷରେ ଆପଣେ ମରିବେ । ୭୬ । ଜାତି ନ ଥିବା ଲୋକର ବଢାଇବ କୁଳ । ଧର୍ମ-ବନ୍ତ ଲୋକର ଯେ ବୁଡ଼ିଯିବ କୁଳ । ୭୭ । ପ୍ରଥମରେ ଆରମ୍ଭ ଯେ ହେଉ-ଅଛି କଳି । ଦିନୁ ଦିନ କଥା ହେବ ଏକ ଏକ ଭଳି । ୭୮ । ଏମନ୍ତେ ମଙ୍ଗଳା ମାତା ବାଳାଙ୍କୁ କହିଲେ । ବେନି ଭୁଜେ ନୃପତିଙ୍କି ତୋଳାଣି ଧଇଲେ । ୭୯ । ନ ବୃଝିଣ ଯେବେ ଦୋଷ କଲୁ ନରସାଇଁ । ସେ କଥା-ମାନଙ୍କୁ ମନେ ମୁହିଁ ନ ଧରଇ । ୮୦ । ଶୁଣିକରି ନୃପତି ଯେ ଆନନ୍ଦ ହୋଇଲା । ମଙ୍ଗଳାଙ୍କ ମୁଖ ଚାହିଁ ବଚନ ବୋଇଲା । ୮୧ । ପୂର୍ବଜନ୍ମେ ବହୁତ ତପସ୍ୟା କରିଥିଲି । ବାଳକର ଜନ୍ମେ ମୁଁ ତୁମ୍ଭଙ୍କୁ ଦେଖିଲି ।୮୨। ସଙ୍କଟଭଞ୍ଜନୀ ମୋତେ କର ପରିତ୍ରାଣ । ତା'ହା ଶୁଣି କରି ମାତା ହରଷ ହୋଇଣ । ୮୩ । ସୁଦର୍ଶନ ମୁଖ ଚାହିଁ ବୋଲନ୍ତି ଉତ୍ତର । ଏବେ ହେ ନୃପତି ତୁମ୍ଭେ କଥା ଏକ କର ।୮୪। ତୋହର ନନ୍ଦନୀ ଯେ ଅଟଇ ରୂପ-ବତୀ । ତାକୁ ଅର୍ପି କରି ବିଭା ଦିଅ ମୋର ନାତି । ୮୫ । ନୋହିଲେ ତୋହର ବଂଶେ କେହି ନ ରହିବେ । ମୋହର ଶାପରୁ ପ୍ରଜା ସର୍ବେ ନାଶ ଯିବେ । ୮୬ । ଏ କଥା ସମ୍ମତ ଯେବେ କରୁ ନୃପବର । ତଥ୍ୟ କରି କହ ସେ ମନ ମୋହର ଅଗର ।୮୭। ଏହା ଶୁଣି ନୃପବର ଆନନ୍ଦ ହୋଇଲା । ମଙ୍ଗଳାଙ୍କ ମୁଖ ଚାହିଁ ବଚନ ବୋଇଲା ।୮୮। ପୂର୍ବଜନ୍ମେ ବହୁପୁଣ୍ୟ ଥିଲାକ ଯେ ମୋର । ତେଣୁ କରି ଜୁଆଇଁ ଯେ ହେବ ଶିରୀଧର । ୮୯ । ଏମନ୍ତ ପ୍ରକାରେ ବାଳା ମଙ୍ଗଳାଙ୍କୁ କହି । ମେଲାଣି ମାଗିଣ ନାଜପୁର ଗଲା ସେହି ॥ ଶ୍ରୀଧର କୁମରଙ୍କୁ ମଙ୍ଗଳା ଘେନି ଗଲେ । ବୋଇତ ଉପରେ ଯାଇଁ ପ୍ରବେଶ ହୋଇଲେ ।୯୧। ସୋମନାଥ ଡଗର ଯେ ସଙ୍ଗତରେ ଥାଇ । ମନ ସୁଖେ ଭଜନ କରି ରହିଲେ ସେଠାଇଁ ।୯୨। ଏକଦିନ ଛନ୍ଦେ ଏକୁ ସମ୍ପୂର୍ଣ୍ଣ ହୋଇଲା । ଧୀବର ଭିକାରୀ ଏହା ରସରେ କହିଲା । ୯୩ ।

---

## ଦ୍ୱାତ୍ରିଂଶ ଛାନ୍ଦ

ରାଗ—କଲଶା

ଶୁଣ ହେ ସୁଜନ ଜନେ ମନକର୍ଣ୍ଣ ଦେଇ । ଏଥିଅନ୍ତେ କଥା ଯେତେ କହୁଅଛୁ ମୁହିଁ । ୧ । ସୁଦର୍ଶନ ରାଜା ନିଜ ମନ୍ଦିରକୁ ଗଲେ । ରାଣୀର ଅଗ୍ରତେ ଯାଇଁ ପ୍ରବେଶ ହୋଇଲେ । ୨ । ରାଜାଙ୍କୁ ଦେଖିଣ ରାଣୀ ବୋଲଇ ବଚନ । କାହା ସଙ୍ଗେ ମନ୍ତ୍ର କରୁଥିଲ ହେ ରାଜନ । ୩ । କମ୍ପା ଏତେ ଦୁଃଖ ଦେଲ ବାଳୁତ ପୁତ୍ରଙ୍କୁ । ଘଉଡ଼ାଇ ଦିଅ କମ୍ପା ମଙ୍ଗଳା ମାତାଙ୍କୁ । ୪ । ଅଜ୍ଞାନପଣ ଯେ ତୁମ୍ଭେ କାହିଁପାଇଁ କଲ । ଠାକୁରାଣୀ ପୁତ୍ରକୁ ଯେ ଘଉଡ଼ାଇ ଦେଲ । ୫ । ଏ ବଚନ ଶୁଣି ରାଜା ବୋଇଲେ ଭୟତେ । ଏତେ ଏତେ କଥା ତୁମ୍ଭେ ଜାଣିଲ କେମନ୍ତେ । ୬ । କେ ଆସିଣ ତୁମ୍ଭ ଆଗେ କହିଲା ଏମନ୍ତ । ବୁଝାଇଣ କହ ମୋତେ ଏଥିର ବୃତ୍ତାନ୍ତ । ୭ । ପାଟରାଣୀ ବୋଇଲା ହେ ଶୁଣ ନରନାହା । ଠାକୁରାଣୀ ଆସି ମୋତେ କହିଗଲେ ତାହା । ୮ । ବୋଇଲେ ତୋହର ଯେଉଁ ଦୁହିତା ଅଛଇ । ତାକୁ ଶିରୀଧରେ ବିଭା କରି ଦିଅ ନେଇ । ୯ । ନୋହିଲେ ତୋହର ବଂଶ ମରିବେ ସମସ୍ତେ । ଗୋଟିଏକ ନ ରହିବେ ଏ ରାଜ୍ୟରେ ଯେତେ । ୧୦ । ଏମନ୍ତ ପ୍ରକାରେ ମୋତେ କହି ଗଲେ ସେହି । ରାଣୀର ବଚନେ ରାଜା ଚକିତ ଯେ ହୋଇ ॥ ମୋତେ ଏହି ରୂପେ କହି ଗଲେକି ସେଠାରେ । ପୁଣି କି ରୂପେ ଆସିଣ କହିଲେ ଏଠାରେ ॥ ଜାଣିଲି ନିଷ୍ଟେ ଅଟନ୍ତି ସେହି ଠାକୁରାଣୀ । ଏବେ କି କରିବା କହ ପ୍ରାଣର ସିଙ୍ଗଣୀ । ୧୩ । ଅମ୍ଭ ନନ୍ଦିନୀକି ବିଭା କରାଇବା ତାକୁ । କେମନ୍ତେ ଶୋଭା ଦିଶଇ ତୁମ୍ଭର ମନକୁ । ୧୪ । ରାଣୀ ବୋଲେ ମୋ ବଚନ ଶୁଣ ଦଣ୍ଡଧର । ତାହାଠାରୁ ମିଳିବ ଆଉ କି ଭଲ ବର । ୧୫ । ଏକେତ ମଙ୍ଗଳା ପୁତ୍ର ଅଟଇଟି ସେହି । ମାହାଠାରେ ଦୟା ରଖିଛନ୍ତି ମହାମାୟୀ । ୧୬ । ତାକୁ ସେବା ନ କରିବ କରିବ କାହାକୁ । ଏ ବଚନେ ଶୁଣି ରାଜା ହରଷ ମନକୁ । ୧୭ । ବୋଲଇ କେବଣ ଜାତି ଅଟଇ ତାହାର ଏହା ଜଣା ନ ଗଲାଟି ବଚନ ନିକର । ୧୮ । ପାଟରାଣୀ ବୋଲେ ତୁମ୍ଭେ

ଶୁଣ ନରସାଇଁ । ଝିଅକୁ ଦେବାରେ ଜାତ ପୁଛ ଭାଇଁପାଇଁ । ୧୯ । ତୁମ୍ଭ ଅମ୍ଭ ଦୁଇ ମନ ଯାହାକୁ ହୋଇବ । ତାକୁ ଝିଅ ବାହା ଦେଲେ ନାସ୍ତିକ ହୋଇବ । ୨୦ । ଉତ୍ତମ ଜାତ ଖୋଜିଲ ଯେବେ ନରସାଇଁ । କାଳେ ଯେ ଉତ୍ତମ ଜାତ ହୋଇଥିବ ସେହି । ୨୧ । ଅମ୍ଭର ବଣିଆ ଜାତ ଅଟଇ ସେ ଦେବ । ସେ ଅମ୍ଭ ଝିଅକୁ ଯେ କେମନ୍ତେ ବାହାଦେବ । ୨୨ । ଏହା କାମ୍ପା ବିଚାର ନ କର ପ୍ରାଣନାଥ । ସୁଦର୍ଶନ ବୋଲେ ପୁଣି ଏହି କଥା ସତ । ୨୩ । ଏମନ୍ତ ପ୍ରକାରେ ଜାକାଷାଣୀ ବିଚାରିଲେ । ଏଥୁ ଅନନ୍ତରେ ଯେତେ କଥା ହେଲା ଭଲେ । ୨୪ । ମଙ୍ଗଳା ମାତା ନିକଟେ ବସିଣ ଶ୍ରୀଧର । ବୋଇଲା ସେ ମାତ ମୋର ଦୋଷ କ୍ଷମାକର । ୨୫ । ତୁମ୍ଭେ ଏବେ କହୁଅଛ ବାହା ହେବା ପାଇଁ । ଏ ରାଜ୍ୟରେ କଦାଚିତେ ବାହା ହେବି ନାହିଁ । ୨୬ । ପିତାର ସନ୍ଦେଶ ଅର୍ଥେ ଆଇଲି ଏଥକୁ । ମୁହିଁ କାମ୍ପା ବାହା ହେବି ରାଜା ଦୁହିତାକୁ । ୨୭ । ମିଛ କଥାରେ ସେ ମୋତେ ଏତେ ଦଣ୍ଡ ଦେଲା । ତୁମ୍ଭେ ଯେ ନ ଥିଲେ ନାଶ ଯାଇଥାନ୍ତି ଭଲା । ୨୮ । ଏବେ ମୋତେ କହୁଛ ଯେ ବାହା ହେବାପାଇଁ । ସେହି ଯେ କେବଣ ଜାତ ନ ଜାଣଇ ମୁହିଁ । ୨୯ । ତୁମ୍ଭେ ତ ଜାଣ ବଣିଆ ଜାତ ଅଟେ ମୋର । ମୁହିଁ କାମ୍ପା ବାହା ହେବି ଏ ରାଜା ରାଜ୍ୟର । ୩୦ । ମଙ୍ଗଳା ବୋଇଲେ ତୁରେ ଶୁଣ ବାଳଶିଷ । ଏହି କଥା ପାଇଁ ମନେ କରୁଅଛୁ ଦୋଷ । ୩୧ । ତୁ ପୁଣି ବାହା ହୋଇବୁ ଯାହାର ଦୁହିତା । ଜାଣେ ରେ ଅଟଇ ସେ ଯେ ବଣିଆର ଜାତ । ୩୨ । ଏହା ଲାଗି କାମ୍ପା ଚିନ୍ତାକରୁ ତୁ ମନର । ଏକା ଜାତ ଦୁହିଙ୍କର ନାହିଁ ଅନ୍ତର । ୩୩ । ଏହା ଶୁଣି ବୋଇଲେ ଯେ ଧନେଶ୍ୱର ପୁଅ । ତହିଁରେ ମୋହର କିଛି ନାହିଁ ଯେ ସନ୍ଦେହ । ୩୪ । ଏକ ଜାତ ହୋଇଲେ ମୋହର କିଛି ଗଲା । ମୁହିଁ ତାର ଝିଅ ବାହା ନୋହିବି ବୋଇଲା । ୩୫ । ମୋର ଘରେ କେତେ କେତେ ଅଛି ଧନ ନାହିଁ । ମୁହିଁ ତାର ଝିଅ ବାହା ହେବି କାହିଁପାଇଁ । ୩୬ । ଏକଇର ବଳା ମୁଁ ସେ ଅଟଇ ମାତାର । ସେହି ତ ସୁଲଭ ଦେଖି ନ ପାରିବ ମୋର । ୩୭ । ସହଜେ ତ

ପିତା ମୋର ଥାଇକରି ନାହିଁ । ମୁହିଁ ବାହା ହେଲେ ସେ ଯେ ଦେଖିବେ
କାହିଁ । ୩୮ । ମଙ୍ଗଳା ବୋଇଲେ ତୁ ଯେ ନ କର ଭାବନା । ଏହି ରାଜ୍ୟେ
ପିତା ତୋର ବନ୍ଦ ଅଛି ସିନା । ୩୯ । ଏହି ସୁଦର୍ଶନ ରାଜା ବନ୍ଦ କରିଅଛି ।
ତୁ କିମ୍ପା ଭାବନା କରୁଅଛୁ ବାଳବୁଦ୍ଧି । ୪୦ । ଯେଣେ ତୋର ପିତା ଗଲେ
ଆଣି ଦେବ ମୁହିଁ । ଏଥି ଲାଗି ମନରେ ଭାବନା କାହିଁପାଇଁ । ୪୧ । ନନ୍ଦନ
ବୋଇଲେ ତୁମ୍ଭେ ଶୁଣ ଠାକୁରାଣୀ । ଯେବେ ତୁମ୍ଭେ ମୋହର ପିତାକୁ
ଦେବ ଆଣି । ୪୨ । ତେବେ ମୁହିଁ ରାଜଦୁହିତାକୁ ହେବି ବାହା । ପିତା
ମୋର ସଙ୍ଗେ ଥିଲେ ପାଉଥିବ ଶୋଭା । ୪୩ । ମାତା ପିତା ଯେବେ ଜଣେ
ସଙ୍ଗରେ ନ ଥିବ । ବାହା ହୋଇବାର କେଉଁ ଶୋଭା ଯେ ପାଇବ । ୪୪ ।
ଜାଣନ୍ତି ମୋହର ସଙ୍ଗେ ଗୋଟିଏ ଅଛଇ । ତେବେ ବାହା ହୁଅନ୍ତି କହୁଛି
ମହାମାୟୀ । ୪୫ । ଏହି ରାଜ୍ୟେ ଅଛି ଯେବେ ମୋହର ପିଅର; ନ
ଦେଖିଣ ବାହା ହେବ କେମନ୍ତ ପ୍ରକାର । ୪୬ । ପିତାଙ୍କୁ ପଶ୍ଚାତେ
ଯେବେ ଆଣିବଇଁ ମୁହିଁ । କି ବୋଲି ବୋଲିବେ ପିତା ମୋର ମୁଖ
ଚୁହିଁ । ୪୭ । ଏହି ରାଜ୍ୟେ ନନ୍ଦନ ରେ ଆସି ବାହା ହେଲୁ । ବନ୍ଦ ଘରେ
ମୁହିଁ ଥିଲି ମୋତେ ନ ଆଣିଲୁ । ୪୮ । ତୋହର ସୁଲଭ ଦେଖି ନ
ପାରିଲି ମୁହିଁ । ମୁକୁଳାଇ ପଛେ ମୋତେ ଆଣିଲୁ କିମ୍ପାଇଁ । ୪୯ । ଏମନ୍ତ
ପ୍ରକାରେ ପିତା ବୋଲିବେଟି ମୋତେ । କି ବୋଲି ବୋଲିବି ମୁଁ ଯେ
ପିତାର ଅଗ୍ରତେ । ୫୦ । ଏହା ଶୁଣି ମଙ୍ଗଳା ଯେ ବୋଲନ୍ତି ବଚନ ।
ବହୁତ ଚତୁର ହୋଇ କହିଲୁ ନନ୍ଦନ । ୫୧ । ଏତେବେଳେ ପିତାକୁ ତୋ
କାହୁଁ ଆଣିଦେବି । ତୁ ବାହା ହୋଇଲେ ତୋର ପିତାକୁ ଆଣିବି । ୫୨ ।
ଶ୍ରୀଧର ବୋଇଲା ପିତା ଅଛି କେଉଁଠାରେ । ମଙ୍ଗଳା ବୋଇଲେ ସେ ତ
ଅଛି ବନ୍ଦଘରେ । ୫୩ । ଏହା ଶୁଣି ଶ୍ରୀଧର ଯେ ବଚନ ବୋଇଲା । କାହିଁ
ପାଇଁ ପିତା ମୋର ବନ୍ଦରେ ରହିଲା । ୫୪ । କହ ଅଗୋ ଜନନୀ ମୋ ପିତାର
ଚରିତ । ତେବେ ଯାଇଁ ସଂପ୍ରତେ ହୋଇବ ମୋର ଚିତ୍ତ । ୫୫ । ଏହା ଶୁଣି
ମଙ୍ଗଳା ଯେ ବୋଇଲେ ଉତ୍ତର । ମନଦେଇ ଶୁଣ ଆରେ ବାଳୁତ ଶ୍ରୀଧର ।।

ଯେବଣି କାଳେ ତୋ ପିତା ଏଥକୁ ଅଇଲା । ପ୍ରଥମରେ ଶ୍ରୀଜଗନ୍ନାଥଙ୍କୁ
ସୁମରିଲା ॥ ତେତେବେଳେ ବୋଇଲି ମୁଁ ଆକାଶରେ ଥାଇ । ମୋତେ କିମ୍ପା
ସୁମରଣା ନ କଲୁ ରେ ତୁହି ॥ ଦେଖିବି ଶ୍ରୀ ଜଗନ୍ନାଥ ରଖିବେ କେମନ୍ତେ
ଏମନ୍ତ କହିଲି ମୁଁ ଯେ ତାହାର ଅଗ୍ରତେ ।୫୯। ବୋଇତ ଉପରେ ତୋର
ପିତା ଅସୁଥିଲା । ମନସୁଖେ ତାକୁ ମାୟା ଦେଖାଇଲି ବଳା । ୬୦ । ପଦ୍-
ମୂଳ ଉପରେ ମୁଁ ବସିଥିଲି ଯାଇ । ଦିବ୍ୟ କନ୍ୟାରୂପ ଧରି ଦେଖା ଦେଲି
ମୁହିଁ ।୬୧। ସେହୁ ମୋତେ ଦେଖିକରି ଚକିତ ହୋଇଲା । ସମୁଦ୍ରକୁ କନ୍ୟା
ଗୋଟି କାହୁଁ ଏ ଅଇଲା ।୬୨। ଏମନ୍ତ ବିଗୁରି ପିତା ମନେ କଲା ତୋର ।
ଯାଇକରି କହିଲା ସେ ରାଜାର ଅଗର ।୬୩। ବୋଇଲା ହେ ଦେବ ମୁଁ
ଦେଖିଲି ଅଚମ୍ଭିତ । ସମୁଦ୍ରରେ ପଦ୍ମଫୁଲ ଫୁଟିଛି ବିସ୍ମିତ ।୬୪। ତହିଁରେ
ବସିଅଛଇ ଏକଇ କୁମାରୀ । ସ୍ୱର୍ଗ ଅପସରୀ ତାକୁ ନୁହଇଁ ସରି ।୬୫। ତାହା
ଶୁଣି ନୃପତି ଯେ ଆନନ୍ଦ ହୋଇଲା । ଆମ୍ଭଙ୍କୁ ନେଇଣ ତାକୁ ଦେଖାଅ
ବୋଇଲା ॥ ରାଜାଙ୍କୁ ଘେନିଣ ପିତା ଆସନ୍ତେ ଏଥକୁ । ଅନ୍ତର୍ଦ୍ଧାନ ହୋଇଣ
ମୁଁ ଗଲିଁ ଜଳକୁ ।୬୭। ମୋତେ ଯହୁଁ ନେନେ ନ ଦେଖିଲେ ଦଣ୍ଡଧାରୀ ।
ପିତାକୁ ତୋର ରଖିଲା ବନ୍ଦଶାଳେ ଭରି ।୬୮। ତୁ ଯେବେ ଏଠାରେ ଝା
ଝିଅଙ୍କୁ ବିଭା ହେବୁ । ବନ୍ଦଶାଳ ଘରକୁ ଯେ ଯଜକୁଳ ନେବୁ ।୬୯। ତହୁଁ
ଯାଇ ମୁକୁଳାଇ ଆଣିବୁ ତୋ ପିତା । ଶ୍ରୀଧର ବୋଇଲା ଶୁଣ ଜଗତର ମାତା
।୭୦। ମୋତେ କହୁଛ ତା ଝିଅ ବିଭା ହେବାପାଇଁ । ବିଭାହେଲେ ମୋହର
ପିତାକୁ ଆଣିବଇଁ ।୭୧। ଦୁହିତା କାମନ୍ତେ ରାଜା ମୋ ପିତାଙ୍କୁ ଦେବ । ତୁମ୍ଭର
ପ୍ରତିଜ୍ଞା ଆଉ କେମନ୍ତେ ରହିବ ।୭୨। ଏଥକୁ ଉପାୟ ମୋତେ କହ ଠାକୁ-
ରାଣୀ । ବାଳକର କଥା ଶୁଣି ମନେ ମନେ ଗୁଣି ॥ ବାଞ୍ଛୁରିଲେ ଯାହା ଏ କହିଲା
ସବୁ ସତ । ଦୁହିତାର କାମନ୍ତେ ପାଇଲା ତାର ତାତ ।୭୩। ମୋହର ପ୍ରତିଜ୍ଞା
ଆଉ ରହିବ କେମନ୍ତେ । ଶୁଣରେ ଶ୍ରୀଧର ପିତା ଆଣିଦେବ ତୋତେ ।୭୫।
ଏମନ୍ତେ ମଙ୍ଗଳାମାତା ତାହାକୁ କହିଲେ । ହରଷରେ ବେନିଜନ ବୋଇତେ
ରହିଲେ ।୭୬। ଦ୍ୱାବିଂଶ ଛାନ୍ଦ ଏଠାରେ ସମ୍ପୂର୍ଣ୍ଣ ହୋଇଲା । ଧୀବରେ
ଭିକାରୀ ଏହା ଗୀତରେ ଭଣିଲା ।୭୭।

## ଷଡ୍‌ବିଂଶ ଛାନ୍ଦ

ରାଗ—ରାମକେରୀ

ରାଜା ରାଣୀ ଦୁଇଜଣ ସେ ବସି କଲେ ସମ୍ମତ । ବାର୍ତ୍ତା କହିବା ନନ୍ଦନୀ ଡକାଇଣ ପଣ୍ଡିତ । ୧ । ଗଲେ ସେ ମଙ୍ଗଳା ନିକଟେ ସୁଦର୍ଶନ ନୃପତି । ଶୁଭଲଗ୍ନ ଅମ୍ଭେ ବୁଝିବା ତୁମ୍ଭେ ଅୟ ତଡ଼ିତ । ୨ । ରାଜା ବାଣୀ ଶୁଣି ମଙ୍ଗଳା କହୁଛନ୍ତି ବଚନ । ନାସ୍ତି କଲ୍ୟ ବିଭା ନୋହିବ ଖୁଲଣାର ନନ୍ଦନ ।୩। ନୃପତି କହିଲେ ଭେ ମାତ କିମ୍ପା ଏ ଆଜ୍ଞା ହେଲ । ଜାଣିବାରେ ତୁମ୍ଭ ଚରଣେ ମୋର ଦୋଷ ନ ଥିଲା ।୪। ଜାଣିଲେ ପରତେ ଯିବଇଁ କେଉଁ କଥା ମୋହର । କି କାରଣେ ବିଭା ନୋହିବେ ସେ ଯେ ମୋର କୁମାରୀ ॥ ରାଜାର ବଚନ ଶୁଣିଣ ଠାକୁରାଣୀ ବୋଲନ୍ତି । ସେ ଯାହା ବୋଇଲା ଶୁଣ ହେ ସୁଦର୍ଶନ ନୃପତି ।୬। ପିତାକୁ ତାହାର ବନ୍ଦରେ ତୁହି ରଖିଲୁ ଯେଣୁ । ନାସ୍ତି କଲ୍ୟ ବିଭା ନୋହିବ ତୋର ଦୁହିତା ତେଣୁ । ୭ । ତା ଶୁଣି ନୃପତି ବୋଇଲା ତାଙ୍କ ପିତା କେ ଅଟେ । ଜାଣିଲେ ପରତେ ଯିବଇଁ କୁହ ମୋର ନିକଟେ ।୮। ବନ୍ଦଶାଳ ଘରେ ଅଛନ୍ତି ସେହୁ ଅଠର ଜଣ । ତାଙ୍କ ଭିତରେ କେ ଅଟନ୍ତି ଏହାଙ୍କ ପିତା ପୁଣ ।୯। ତା ଶୁଣି ମଙ୍ଗଳା ବୋଲନ୍ତି ଶୁଣ ହେ ନରନାଥ । ଯେବେ ତାହା ମୋତେ ପୁଚ୍ଛିଲୁ ତାର ପିତା ଚରିତ । ୧୦ । ଜାତିରେ ତ ବୈଶ୍ୟ ବଣିଆ ଧନେଶ୍ୱର ତା ନାମ । ରାଜଧାନୀପଣେ ଅଛଇ ତାର ଘାଗରୀ ଗ୍ରାମ । ଏମନ୍ତ କେତେହେଁ ତାହାର ମୁଖେ କହି ନ ପାରି । ତିନି ଯୋଜନର ଉଆସ ଗୋଠା ଅଟେ ତାଙ୍କର ।୧୨। ଶତେ ଏକରାଣୀ ତାଙ୍କର ସଙ୍ଗେ ଥାନ୍ତି ନିକଟେ । ନୟନାସୁନ୍ଦରୀ ବୋଲିଣ ପାଟରାଣୀ ସେ ଶ୍ରେଷ୍ଠ ।୧୩। ତାହାର କୋଳରେ ନନ୍ଦନ ଯେହୁଁ ହୋଇଲା ନାହିଁ । ବିରସ ମନରେ ନୃପତି ବସି ନିତି ଭାଳଇ । ୧୪ । ଏକଦିନେ ରାଜା ପ୍ରଭାତେ ହାଡ଼ିମୁଖ ଦେଖିଲା । ଶପତି ପଡ଼ିବ ବୋଲିଣ ଦଣ୍ଡେରେ ବୋଇଲା । ୧୫ । ସେ ହାଡ଼ି ବୋଇଲା ଆଜ ତ ଦୁଃଖ ମିଳିବ ମୋତେ । ଅପୁତ୍ରିକ ମୁଖ ଚାହିଁଲି କାହିଁ ପାଇଁ ପ୍ରଭାତେ ।୧୬। ଏ ବଚନ ଶୁଣି ନୃପତି ମନେ ରୋଷ ବହିଲା । ନ ରହିବ

ଏହି ରାଜ୍ୟରେ ରାଣୀ ଅଛେ କହିଲା ।୧୭। ଶୁଣିଣ ସୁନ୍ଦରୀ ବୋଲଇ ତାର
କନିଷ୍ଠା ରାଣୀ । ସେ ବୋଇଲା ତୁମ୍ଭେ ନ ଯାଅ ଗର୍ଭ ହୋଇଛି ପୁଣି ।୧୮।
ତା ଶୁଣି ନୃପତି କେବେହେଁ ମନମତ ନ ଭଲା । ନିଶ୍ଚେ ଏହି ରାଜ୍ୟ ଯୁଡ଼ିବ
ରାଣୀ ଅଛେ କହିଲା । ୧୯ । ବସିଲା ବୋଇତ ଉପରେ ଜଗନ୍ନାଥ ସୁନ୍ଦର ।
ମୁଁ ବୋଇଲି ବଡ଼ ଅଜ୍ଞାନୀ ମୋର ନାମ ପାଟଣାର । ୨୦ । ଜଗନ୍ନାଥଙ୍କୁ ତୁ
ଭଜିଲୁ ସେହି ରଖିବେ ତୋତେ । ଦେଖିବୁ ଦୁର୍ଗତି କାଳରେ ଯେବେ
ବଢ଼ିବୁ ମୋତେ ।୨୧। ଏମନ୍ତ ଶୂନ୍ୟରେ କହିଣ ମାୟା ଦେଖାଇ ଦେଲେ ।
ସମୁଦ୍ରରେ ପଦ୍ମଫୁଲରେ ଯାଇଁ ମୁହିଁ ବସିଲି । ୨୨ । ତାହୁଁ ଦେଖି ମୋତେ
ଆସିଣ ତୋର ଅଛେ କହିଲା । ତୁମ୍ଭେ ଯାଇ ମୋତେ ଦେଖାନ୍ତେ ରୂପ
ଅଦୃଶ୍ୟ ହେଲା । ୨୩ । ତେଣୁ ମିଛ ବୋଲି ବୋଲିଣ ବନ୍ଦଘରେ ରଖିଲ ।
ଯେତେ ଧନ ଦ୍ରବ୍ୟ ତାହାର ଭଣ୍ଡାରରେ ଭରିଲ ।୨୪। ତାହାର ପୁତ୍ର ଏ
ଆସିଛି ପିତା ନେବାର ଅର୍ଥେ । ମାତାଠାରୁ କଥା ଶୁଣିଣ ହୋଇ ହରଷ
ଚିତ୍ତେ । ୨୫ । ଜଗନ୍ନାଥ ଯାହା କହିଲେ ତାହା ଲେଖିଲି ମୁହିଁ । ଧୀବର
ଭକାରୀ ଦୋଷକ୍ଷମା କେହି ବାଛିବ ନାହିଁ । ୨୬ ।

---

## ଚତୁସ୍ତ୍ରିଂଶ ଛାନ୍ଦ

ରାଗ—ପଦ୍ମପୁରାଣ ବୃତ୍ତରେ

ତାହୁଁ ମଙ୍ଗଳା ରାଜାଙ୍କୁ କହିଲେ ଏମନ୍ତ । ତାହା ଶୁଣି ରାଜା ମନରେ
ବିସ୍ମିତ ଚିତ୍ତ । ୧ । ବୋଇଲେ ସେ ଧନେଶ୍ୱର ନାମ ଅଟେ ଯାର । ସେହି
ନାୟକ ଅଟେ ସିନା ଏହାଙ୍କ ପିଅର । ୨ । ମଙ୍ଗଳା ବୋଇଲେ ତୁମ୍ଭେ ଶୁଣ
ହେ ନୃପତି । ଏହି ସିନା ଅଟେ ଧନେଶ୍ୱରର ସନ୍ତତି । ୩ । ତାହା ଶୁଣି
ସୁଦର୍ଶନ ହରଷ ହୋଇଲା । ମଙ୍ଗଳାଙ୍କୁ ସଙ୍ଗତରେ ଘେନିଣ ଚଳିଲା । ୪ ।
ସୋମନାଥ ଶିରୀଧର ଦୁଇଜଣ ଗଲେ । ବନ୍ଦଶାଳାଠାରେ ଯାଇ ପ୍ରବେଶ
ହୋଇଲେ । ୫ । ପିତା ପୁତ୍ର ଦୁହିଙ୍କର ଚିହ୍ନାଚିହ୍ନି ନାହିଁ । ସମସ୍ତେ ପ୍ରବେଶ
ହେଲେ ଏକଠାବେ ଯାଇଁ । ୬ । ଦେଖିଲେ ସେ ଯେତେ ଜଣ ଛତ୍ର ବନ୍ଧ-

ଘରେ । ଏବୁକର ମୁଣ୍ଡ ଦିଶେ ଝାମ୍ପୁଡ଼ା ପ୍ରକାରେ । ୭ । ନଖମାନ ବଢିଲାଣି ଗୃଖଣ୍ଡେ ଗୃଖଣ୍ଡେ । ସମସ୍ତେ ପିନ୍ଧିଣଛନ୍ତି କନା ଖଣ୍ଡେ ଖଣ୍ଡେ ॥ ଦୁଇଅଣ୍ଟାଳ ବନ୍ଧଲେ ବସିଅଛି ମଳା । ତାହାର କଣ୍ଠରେ ଯେ ଗୋଟିଏ ନାହିଁ ମାଳା । ୯ । ଦେଖିକରି ମଙ୍ଗଳା ଯେ ହରଷ ହୋଇଲେ । ଶ୍ରୀଧର ମୁଖକୁ ଗୃହିଁ ବଚନ ବୋଇଲେ । ୧୦ । ଦେଖ ଅରେ ବାଳକ ତୋହର ପିତା ଏହି । ଏତେ ଦୁଃଖ ସହିଲାଣି ବନ୍ଦଘରେ ରହି । ୧୧ । ତାହା ଶୁଣି ଶ୍ରୀଧର ଯେ ମହା-କ୍ରୋଧ ହେଲା । ଅହାରେ ଦଇବ ଏହା କଲୁ ରେ ବୋଇଲା । ୧୨ । ଅମ୍ଭ ଘରେ କେତେ କେତେ ନାହିଁ ଅବା ଧନ । ବିଦେଶକୁ ଅଣି ଦେଲୁ ଏତେ କଷ୍ଟମାନ । ୧୩ । ଅମ୍ଭର ଅଗ୍ରିତେ କେତେ ଲୋକ ଖଟିଥାନ୍ତି । ଧାଗରି ଦେଶର ଅମ୍ଭେ ଅଟୁଁ ଅଧିପତି । ୧୪ । ଏଡ଼େ ସୁଖ ଛଡ଼ାଇ ଦୁଃଖରେ ପକାଇଲୁ । ତୋହଠାରେ ଅମ୍ଭେ କେତେ ଦୁଃଖ ଅଚଳାଲୁ । ୧୫ । ଏମନ୍ତ ପ୍ରକାରେ ଯେତେ କଲାକ ରୋଦନ । ତତକ୍ଷଣେ ପଡ଼ିଲା ସେ ପିତାର ଚରଣ ॥ ଚିରଜୀବୀ ହୁଅ ବୋଲି କଲ୍ୟାଣ ସେ କଲା । ତୋହର ପ୍ରସାଦେ ଯେ ମୋହର ଦୁଃଖ ଗଲା । ୧୭ । ମଙ୍ଗଳା ମାତାଙ୍କୁ ଯେ ଚିହ୍ନିଲା ଧନେଶ୍ୱର । ତତକ୍ଷଣେ ପଡ଼ିଲା ସେ ମଙ୍ଗଳା ପାଦର । ୧୮ । ବହୁତ ପ୍ରକାରେ ସେ ଯେ ବିନତି ହୋଇଲା । ତୁମ୍ଭ ଅକୃପାରୁ ମୋତେ ଦୁଃଖ ଏତେ ହେଲା । ୧୯ । ମନରେ ବିଗ୍ଭରି ଏହା ଜାଣିଲି ନିସ୍ଚିତ । ଏବେ ମୋର ଦୋଷ କ୍ଷମା କର ଜଗନ୍ନାଥ । ୨୦ । ତୁମ୍ଭର କାମନେ ପୁତ୍ର ଦେଖିଲଇଁ ମୁହିଁ । ଧନ୍ୟ ଧନ୍ୟ ରାଣୀ ମୋର ଖୁଲଣା ଅଟଇ । ୨୧ । ଏତେ ରାଣୀ ମଧ୍ୟେ ତାର ପୁତ୍ର ହେଲା ଜାତ । ଏ କଷ୍ଟରୁ ଅମ୍ଭଙ୍କୁ ସେ କଲାକ ମୁକତ । ୨୨ । ସୁଦର୍ଶନ ରାଜା ଧନେଶ୍ୱରଙ୍କୁ ବୋଇଲେ । ଅଜାଣୁଁ ଅମ୍ଭ ସମ୍ମୁଖେ ଅଟ ତୁମ୍ଭେ ଭଲେ । ୨୩ । ନ ଜାଣି ତୁମ୍ଭରେ ଦୋଷ ଅଚଳାଲୁଁ ଯେତେ । ସେ କଥାକୁ ମନରେ ନ ଧର କଦାଚିତେ । ୨୪ । ଏମନ୍ତ ପ୍ରକାରେ ରାଜା ତାହାଙ୍କୁ ବୋଇଲା । ଶୁଣି-କରି ଧନେଶ୍ୱର ହରଷ ହୋଇଲା ॥ ବୋଇଲେ ଏଥିରେ ତୁମ୍ଭର ଯେ ଦୋଷ ନାହିଁ । ମୋତେ ଏତେ ଦଣ୍ଡ ଦିଅଇଲେ ମହାମାୟୀ । ୨୬ । ଗରବଗଞ୍ଜଣୀ

ଗର୍ବ ଗଞ୍ଜିଲେ ମୋହର । ଅନ୍ତର୍ଗତେ ଯେ କଥା ମୁଁ ଜାଣିଲି ନିକର ।୨୭। ଏବେ ଅଭ୍ର ତୁମ୍ଭଙ୍କୁ ବନ୍ଧିଲେ କାଯ ହେବ । କର୍ମେ ଯାହା ଥିଲା ଦଣ୍ଡ ଦେଲାକ ଦଇବ । ୨୮ । ଏମନ୍ତ ପ୍ରକାରେ ଧନେଶ୍ୱର ଯେ ବୋଇଲା । ଶୁଣିକର ସୁଦର୍ଶନ ଆନନ୍ଦ ହୋଇଲା । ୨୯ । ଗ୍ରାମପାଳକଙ୍କୁ ଡ଼କାଇଲେ ତତକ୍ଷଣ । ବୋଇଲେ ଶଗଡ଼ ସ୍ୱାଙ୍କୁ କର ରେ ବହନ । ୩୦ । ଆଜ୍ଞା ପାଇ ଗ୍ରାମପାଳ ବେଗେ ଯେ ଅଇଲା । ଅଠର ଜଣ ବନ୍ଧଙ୍କୁ ଶଗଡ଼ ଯେ କଲା । ୩୧ । ମଥା ଦାନ୍ଧି ଲଗାଇଣ ସ୍ନାନ କରାଇଲେ । ଦିବ୍ୟ ପାଟବସ୍ତ୍ର ତାଙ୍କୁ ପିନ୍ଧିବାକୁ ଦେଲେ । ୩୨ । ସୁଦର୍ଶନ ରାଜା ଏମନ୍ତଙ୍କୁ ଏମାଦରେ । ସଙ୍ଗରେ ଘେନିଣ ଗଲା ଆନନ୍ଦ ମନରେ । ୩୩ । ପୂଜା ହେତୁ ଧନେଶ୍ୱର କଷ୍ଟ ହେଲା ଦୂର । ସର୍ବ ସୁଲକ୍ଷଣୀମାନେ ହୁଳହୁଳି କର । ୩୪ । ଏଭକ୍ତଜନମାନେ ଏବୁ ବୋଲି ହରି ହରି । ଯେଉଁ ନାମ ଧଇଲେ ଭବ ନ୍ଧ ହେବ ପାରି । ୩୫ । ଚତୁର୍ତ୍ରିଂଶ ଛାନ୍ଦ ଏଥି ସମ୍ପୂର୍ଣ୍ଣ ହୋଇଲା । ଧୀବର ଭାଷାସି ଏହା ରସରେ ବୋଇଲା ॥

---

## ପଞ୍ଚତ୍ରିଂଶ ଛାନ୍ଦ

ରାଗ—ମାଳବ ।

ଶୁଣ ଶୁଣ ସୁଜନ ହେ ଏଥି ଅନନ୍ତରେ । ଯେଉଁ କଥା ଏବେ ହେଲା ଵରୂପା ଦେଶରେ । ୧ । ଯେଣୁ ପିତା ପୁତ୍ର ତହିଁ ଚାହିଁ ଚାହିଁ ହେଲେ । ଏମନ୍ତଙ୍କୁ ଘେନି ରାଜା ତହୁଁ ଚଳିଗଲେ । ୨ । ନଗର ଭିତରେ ଯାଇଁ ହୋଇଲେ ପ୍ରବେଶ । ଡ଼କାଇଣ ଆଣିଲେ ପଣ୍ଡିତ ଜଉତଷ ॥ ବାଳିଲଗ୍ନ ଧର ବୋଲି ବୋଇଲେ ତାହାଙ୍କୁ । ତାହା ଶୁଣି ଜଉତଷ ହରଷ ମନକୁ ।୪। ଘେନିଲେ ଯେ ଲଗ୍ନ ବଧି ରାଜା ଆଜ୍ଞା ପାଇ । କଙ୍କଡ଼ାରେ ବନ୍ଧି ଚନ୍ଦ୍ର ସଦୃଶ ହୋଇ ।୫। କନ୍ୟା ଯେ ଇନ୍ଦ୍ରର ବର ହୋଇଲେ ମାନ୍ଧାରି । ପୂର୍ବରୁ ବଧାତା ଥିଲା ଏହା ପାଇଁ କରି ।୬। ଧନିଷ୍ଠଲଗ୍ନେ ଶ୍ରୀଧର ଯେ ହୋଇବେ ବିଭା । ସେହିଦିନ ଅଠଇ ଯେ ତାକୁ କପାଳ ପ୍ରଭା ।୭। ବଧାତା ପ୍ରକ୍ଷ ଯାହା ପୂର୍ବରୁ ପାଇଲା । ବର କନ୍ୟାଙ୍କର ଯାଣି ଉତ୍ତମ ଘଟିଲା ॥ ଆଜକୁ ଯେ

ବାଭାବଧି ଅଛି ପାଞ୍ଚଦିନ । ବୈଶାଖ ଶୁକ୍ଳପକ୍ଷ ପଞ୍ଚମୀର ଦିନ ।୯। ଏମନ୍ତ ପ୍ରକାରେ ଯନ୍ତୁ ପଣ୍ଡିତ କହିଲେ । ଶୁଣି ସୁଦର୍ଶନ ରାଜା ହରଷ ହୋଇଲେ । ୧୦ । ବନ୍ଧୁଜନମାନଙ୍କୁ ସେ ଲୋଡ଼ିବାର ଅର୍ଥେ । ପେଷିଲେ ଚାରଣ ସେ ଯେ ଚଳିଲେ ତ୍ୱରିତେ । ୧୧ । ବାଭାର ବାଧିବାଧାନ ରଚି- ଲେକ ସବୁ । ଶ୍ରୀଧରଙ୍କୁ ମଙ୍ଗଳା ବୋଇଲେ ଅରେ ବାବୁ । ୧୨ । ଏବେ ମନବାଞ୍ଛା ତୋର ସିଦ୍ଧ ଯେ ହୋଇଲା । ରାଜାର ଦୁହିତା ବାଭା ହେବୁ ରେ ବୋଇଲା । ୧୩ । ଶ୍ରୀଧର ବୋଇଲା ତୁମ୍ଭେ ହୋଇଲ କି ବାଇ । ମିଛେ ମୋତେ ଏଠାରେ ଭଣ୍ଡୁଛ କାହିଁପାଇଁ ।୧୪। କଥା ଏ ଅମ୍ଭ ଅଗରେ କହିବ ଗୋ ମାତା । ତେବେ ତୁମ୍ଭ ଅଗରେ କହିବି ମନବ୍ୟଥା ।୧୫। ଠାକୁରାଣୀ ବୋଇଲେ ତୁ ଶୁଣ ବାଳପୁଅ । କେଉଁ କଥା ମନ ଅଛି ତଥ୍ୟ କରି କହ ॥ ଶ୍ରୀଧର ବୋଇଲେ ମାତ ଶୁଣ ମନଦେଇ । ଯେବେ ରାଜାର ଦୁଲଣୀ ବାଭା ହେବି ମୁହିଁ ।୧୭। ତାର ସୈନ୍ୟଦଳ ସିନା ଥିବ ଅପ୍ରମିତ । ଗୋଟିଏ ନ ଥିବ ସୈନ୍ୟ ମୋହର ସଙ୍ଗତ ।୧୮। ମୁହିଁ କାହିଁ ପାଇଁ ତାହାର ପର୍ଯ୍ୟନ୍ତେ ହୋଇବି । ଜାଣୁ ମୁଁ କେମନ୍ତେ ଏ କଥା କରିବି ।୧୯। ଉପହାସ କରିବେ ଯେ ରାଜ୍ୟ ଲୋକ ଦେଖି । କେଉଁଠାରୁ ଯୁବତୀ ଏ ନେଇ ଆସିଛି ।୨୦। ଏ କଥା ଶୁଣିଲେ ଦେହ ନ ସହିବ ମୋର । ଏହି କଥା କିସ ଗୋ ମନରେ ଅଛି ତୋର ।୨୧। ତୋର ସୈନ୍ୟ ମୋତେ ଦେବୁ ଆଣି ଠାକୁରାଣୀ । ତେବେ ମୁହିଁ ବାଭାହେବି ରାଜାର ଦୁଲଣୀ ।୨୨। ଏହା ଶୁଣି ମଙ୍ଗଳା ଯେ ହରଷ ହୋଇଲେ । କିଛି ଚିନ୍ତା ନ କର ତୁ ମନରେ ବୋଇଲେ । ୨୩ । ବହୁତ ସୈନ୍ୟ ତୋହର ସଙ୍ଗେ ଦେବି ମୁହିଁ । ଏତେ କହି ଠାକୁରାଣୀ ଗଲେ ବେଗ ହୋଇ । ୨୪ । ରତ୍ନଗିରି ବୋଲି ଏକ ପର୍ବତେକ ଥିଲା । ସେଠାବରେ ପ୍ରବେଶ ଯେ ହୋଇଲେ ମଙ୍ଗଳା ॥ ନିକାଞ୍ଚନ ବନ ସେଠା- ବରେ କେହି ନାହିଁ । ଚନ୍ଦ୍ର ସୂର୍ଯ୍ୟଙ୍କର ଛାୟା ତହିଁ ନ ପଡ଼ଇ । ୨୬ । ସେଠାବରେ ମାତା ଯାଇଁ ହୋଇଲେ ପ୍ରବେଶ । ନିଜ ଅଙ୍ଗୁ ଜାତ କଲେ ଗୋଟିଏ ପୁରୁଷ । ୨୭ । ସେହି ପୁରୁଷଙ୍କୁ ମାଏ ସପ୍ତଖଣ୍ଡ କଲେ । ମୃତ

ସଞ୍ଜୀବନୀ ମନ୍ତ୍ର ଅପଣେ ପଢ଼ିଲେ ।୨୮। ସପ୍ତଖଣ୍ଡ ମାଂସ ହୋଇଲା ସପ୍ତ-
ଜଣ । ଅଦୃଶ୍ୟରେ ମଙ୍ଗଳା ଯେ ରହିଲେ ଅପଣ ।୨୯। ମାୟା ଆରମ୍ଭିଲେ
ତହିଁ ଶଇଳନନ୍ଦନୀ । ସେହି ସାତଜଣ ତହିଁ ହେଲେ ହଣାହଣି ।୩୦। ମାୟା
ଯୋଗ ବଶରୁ ଯେ ହଣାହଣି ହେଲେ । ଗୋଟିଏ ତହିଁରୁ କେହି ପ୍ରାଣ ନ
ପାଇଲେ ।୩୧। ପିଣ୍ଡ ପୂର୍ଣ ହୋଇଲା ସହସ୍ରେ ଅନେଶ୍ୱତ । ପୁଣି ତାଙ୍କୁ ବଞ୍ଚା-
ଇଲେ ଜଗତର ମାତ ।୩୨। ଦିବ୍ୟ କନ୍ୟାରୂପ ଧରି ତାଙ୍କୁ ଦେଖା ଦେଲେ
କନ୍ୟା ଲୋଭେ ହଣାହଣି ହୋଇ ସବେ ମଲେ ।୩୩। ପୁଣି ତାଙ୍କୁ ଜୀବଦାନ
ଦେଲେକ ସେଠାରେ । ଏହିରୂପେ ମାୟାକଲେ ଶତେ ଏକବାରେ ।୩୪।
ସାତଲକ୍ଷ ସତର ସହସ୍ର ବଳ ହେଲେ । ତାଙ୍କୁ ଧରି କରି ମାତା ବେଗେ
ଚଳିଗଲେ ।୩୫। ଶ୍ରୀଧର ନିକଟେ ତାହା ସମର୍ପିଲେ ନେଇ । କାଅ ତୁମ୍ଭେ
ସୈନ୍ୟବଳ ଏବେ ତୋଷ ହୋଇ ।୩୬। ମନବାଞ୍ଛା ସିଦ୍ଧି ଏବେ ହୋଇଲା
ତୋହର । ମନସୁଖେ ଶତ୍ରୁ ହୁଅ ସଂହାର କ୍ଷମାସ୍ତ ।୩୭। ତାହା ଶୁଣି ଶ୍ରୀଧର
ଯେ ପାଦରେ ପଡ଼ିଲେ । ଉଠି ବେନିକର ଯୋଡ଼ି ଉଭା ସେ ହୋଇଲେ ।।
ବୋଇଲେ ହେ ମାତ ଶୁଣ ମୋହର ବଚନ । କେଉଁଠାରୁ ଆଣିଲୁ ତୁ
ଏବେ ଏତେ ସୈନ୍ୟ ।୩୯। ମଙ୍ଗଳା ବୋଇଲେ ଶୁଣ ଧନେଶ୍ୱର ସୁତ ।
ଏତେ ଏତେ ସୈନ୍ୟ ମୋ ଦେହରୁ କଲି ଜାତ ।୪୦। ତୋହର
ନାମନ୍ତ୍ରେ ଯେ ମୋହର କଥା ଏତେ । ଆଉ କାଏ ବାଳକରେ ପଚାରୁଛୁ
ମୋତେ ।୪୧। ତାହା ଶୁଣି ଶ୍ରୀଧର ଯେ ହରଷ ହୋଇଲା । ଧନ୍ୟ ତୋର
ମହିମା ଯେ ଶ୍ରୀଧର ବୋଇଲା ।୪୨। ପଞ୍ଚତ୍ରିଂଶ ଛାନ୍ଦ ଯେ ଏଠାରେ ପୂର୍ଣ୍ଣ
କରି । ଆଗରେ ଛାନ୍ଦ ହୋଇବ ରାଗ ରାମକେରୀ ।୪୩। ସୁଜ୍ଞ ଜନମାନେ ମୋର
ନ ଘେନିବ ଦୋଷ । ଧୀବର ଭିକାରୀ ଠାରେ ରଖିଥିବ ଆଶ ।୪୪।

—o—

## ଷଟତ୍ରିଂଶ ଛାନ୍ଦ

ରାଗ—ରାମକେରୀ

ଯହୁଁ ଏତେ ସୈନ୍ୟ ମଙ୍ଗଳା ତାଙ୍କୁ ଦେଲେକ ଆଣି । ସୁଦର୍ଶନ
ରାଜା କାତର ଦେଖି ହୋଇଲା ପୁଣି ।୧। ମନେ ବିଚାରେ ନୃପପତି

କାହୁଁ ହୋଇଲେ ସୈନ୍ୟ । ଏହାଙ୍କ ଚରନ୍ତୁ କିମନ୍ତେ କାହୁଁ ଅଛଇ ଧନ । ୨ । ଏମନ୍ତ ଚିନ୍ତାର ମନରେ ମିଳା ମଙ୍ଗଳା ପାଶ । ପଦ୍ମପାଦ ତଳେ ପଡ଼ିଣ ଡ଼ାକି ହେଲେ ନରେଶ । ୩ । ବୋଇଲେ ହେ ମାତ ଶୁଣ ଗୋ ମୁଁ କି ବୁଦ୍ଧି କରିବି । ଏତେ ଏତେ ସୈନ୍ୟମାନଙ୍କୁ ଚରଚି ନ ପାରିବି । ୪ । ମଙ୍ଗଳା ବୋଇଲେ ନୃପତି ମନେ ନୁହ କାତର । ନାଅ ତୁ ତଣ୍ଡୁଳ ମୁଠାଏ ରଖି ଭଣ୍ଡାରେ ତୋର । ୫ । ଯେ ଅବା ଯେତେ ଖାଇ ଯାଉ ତେତେ ବଢ଼ିବ ଜାଣ । ଏ ବଚନ ଶୁଣି ନୃପତି ହେଲେ ଆନନ୍ଦ ମନ । ୬ । ତଣ୍ଡୁଳ ମୁଠାକ ନେଇଣ ରଖି ଭଣ୍ଡାରେ ତୋର । ନଗ୍ର ନରନାରୀ ଉତ୍ସବ ହେବା କହି ସତ୍ୱର । ୭ । ଲଗ୍ନ ଯେଉଁଦିନ ହେଉଛି ସେହି ଦିନ ଚରିତ । କହୁ ଅଛି ଏକ ମନରେ ଏବେ ଶୁଣ ଜଗତ । ୮ । ବନ୍ଧୁ ବର୍ଗମାନ ନିକଟେ ସେ ଯେ ଜଣାଇ ଥିଲେ । ସେମାନେ ଆସି ଏକଠାବେ ନୃପତି ସଙ୍ଗେ ମିଳିଲେ । ୯ । ମଗଧ ଦେଶରୁ ଅଇଲେ ମଧୁକର ନୃପତି । ସାତକୋଟି ବଳ ତାହାର ସଙ୍ଗତରେ ଅଛନ୍ତି । ୧୦ । ଉତ୍ତର ଦେଶରୁ ଅଇଲେ ରାଜା ନାମ ମାଧବ । ରାଜା ବସିଲେ ସୈନ୍ୟ ତାର ସାତକୋଟି ହୋଇବ । ୧୧ । କର୍ଣ୍ଣାଟ ଦେଶରୁ ଅଇଲେ ରାଜା ସେ ବିଦ୍ୟାଧର । ତିନିଲକ୍ଷ ସୈନ୍ୟ ଅଛନ୍ତି ପୁଣି ତାଙ୍କ ସଙ୍ଗର । ୧୨ । କଳାବତୀପୁରୁ ଅଇଲେ ଚନ୍ଦ୍ରସେନ ନୃପତି । ପାଞ୍ଚଖର୍ବ ସୈନ୍ୟ ତାହାର ସଙ୍ଗତରେ ଅଛନ୍ତି । ୧୩ । ଧୂମାନ୍ତ ଦେଶର ନୃପତି ତାର ନାମ ପ୍ରମୋଦ । ତିନିକୋଟି ବାଦ୍ୟ ବଜାଇ ସୈନ୍ୟ ଅଠର ପଦ୍ମ । ୧୪ । ପିଙ୍ଗଳ ଦେଶରୁ ଅଇଲେ ରାଜା ଅଶ୍ୱରେ ଚଢ଼ି । ନାମ ତାହାଙ୍କର ଶଙ୍କର ସୈନ୍ୟ ସଙ୍ଗରେ ଧାଡ଼ି । ୧୫ । ସୁଖ୍ୟାତ ଦେଶର ନୃପତି ନାମ ଜଗ-ମୋହନ । ଆସି ସେ ପ୍ରବେଶ ହୋଇଲ ସଙ୍ଗେ କୋଟିଏ ସୈନ୍ୟ । ୧୬ । ଏହିପ୍ରକାରେ ସପ୍ତ ରାଜା ଆସି ପ୍ରବେଶ ହେଲେ । ସୁଦର୍ଶନ ରାଜା ଦେଖିଣ ବଡ଼ ହରଷ ହେଲେ ।୧୭। ଯେ ଯାହାକୁ ଯେଉଁ ପ୍ରକାରେ ରାଜା ଠାବ ସେ ଦେଲେ । ସୈନ୍ୟମାନଙ୍କୁ ସେ ନରେଶ ଯତନରେ ରଖିଲେ ।୧୮। ମହା କଉ-ତୁକ ସେ ରାଜ୍ୟେ କେବା କହି ତ ପାରେ । ଧୀବର ଉତ୍ସବ ଦେଖିଣ ମନେ କାତର କରେ ।୧୯।

---

# ସପ୍ତବିଂଶ ଛାନ୍ଦ

ରାଗ—ରାମକେରୀ ।

ମିଥିଳା ନଗ୍ରେ ଯେଉଁ ପର କରିଥିଲେ ଜନକ । ସେପରି ଏ ରାଜ୍ୟେ ହୋଇଛି ସୈନ୍ୟବଳ ଅନେକ । ୧ । ସେ କାଳେ ଜଗନ୍ନାଥ ସ୍ୱାମୀ ପଦ ଭଜିଲେ ମୋତେ । ତେଣୁକରି ମୁଖେ କହିଲି ମୁଁ ଯେ ସୁଜନ ହିତେ । ୨ । ଏଣିକି ଏ ଛାନ୍ଦ କରିବି ଭାବ ଚୌକଅଙ୍କସ୍ତୀ । ତାହା ରାଗ ପଦ୍ମପୁରାଣ କହେ ଦୀନ ଭକାରୀ । ୩ ।

---

ରାଗ—ପଦ୍ମପୁରାଣ

ଶୁଣ ହେ ସୁଜନ ଜନେ ମନ କର୍ଣ୍ଣ ଦେଇ । ବାହା ବିଧିମାନ ସବୁ ମୁହିଁ କହିବଇଁ । ୧ । ସେ ଦିନ ଅଟଇ ଯେ ପଞ୍ଚମୀ ଗୁରୁବାର । ପ୍ରଭାତରୁ ସ୍ନାନ କରାଇଲେ କନ୍ୟାବର । ୨ । ଅନ୍ତଃଶ୍ୱର ପୁରେ ନେଇ ତାହାଙ୍କୁ ଯେ ରଖି । ହୁଳହୁଳି ଦେଉଛନ୍ତି ସକଳ ସୁମୁଖୀ ।୩। ବାନ୍ଧିଲେ ଯତନେ ବେଦୀ ଟାଙ୍ଗିଲେ ଚାନ୍ଦୁଆ । ଚନ୍ଦନର ଖମ୍ବମାନ ପୋତିଲେକି ନୂଆ । ୪ । କୁସୁମେ ମଣ୍ଡିଣ ଛନ୍ତି ଦିଶେ କେଡେ ଶୋଭା । ଖମ୍ବରେ ଲଗାଇଛନ୍ତି ପ୍ରବାଳର ଝରା ।୫। ଶୁଭଇ ଶଙ୍ଖ ଶବଦ ଦ୍ୟନ୍ତି ହୁଳହୁଳି । ଚଉପାଶେ ଜଳୁଅଛି ରତ୍ନ ଦୀପାବଳୀ ।୬। ଢୋଲ ଦମା ଯେ ଝମକ ବାଜେ ବଡପନ । କଂସାଳ ତାଳ ବାଜଇ ଯେହ୍ନେ ଘନ ଘନ ।୭। ଦାଉଣ୍ଡୀ ମୃଦଙ୍ଗ ଠାବ ଠାବକେ ବାଜଇ । କେ ଅବା ଛାହାଳି ଯେହ୍ନେ ନୃତ୍ୟ କରୁଥାଇ ।୮। ସେକାଳ ଉତ୍ସବ ଅଜ କେ କହି ପାରିବ । ମାନବ ହୋଇଣ କାହିଁ ସମୁଦ୍ର ମନ୍ଥିବ । ୯ । ରାଜ ପାଞ୍ଚଘଡ଼ି ଯହୁଁ ହୋଇଲା ସେଠାରେ । ମଙ୍ଗଳାଙ୍କ ମୁଖ ଚାହିଁ ନୃପତି ପଚାରେ । ୧୦ । କହ ମାତ ମୁଁ ଏବେ କି ଉପାୟ କରିବି । ଏତେ ସୈନ୍ୟ ମୁହିଁ ଏବେ କେମନ୍ତେ ରଖିବି ॥ ମାନବର ଉପାୟ ନୁହଇ ଏହା କରି । ତୁମ୍ଭ ବିନୁ ଆନ କେହି ନାହିଁ ନା ମୋହରି ॥ ତାହା ଶୁଣି ମଙ୍ଗଳା ଯେ ହରଷ ହୋଇଲେ । ରଘୁନାଥ ରଘୁନାଙ୍କୁ ସୁମରଣା କଲେ । ୧୩ । ଏ ହୁଇଜଣ ଅଟନ୍ତି ବ୍ରାହ୍ମଣ ତାଙ୍କର । ଆସି କରି ପ୍ରବେଶ ହୋଇଲେ ତତପର । ୧୪ । ବୋଇଲେ ଭୋ

ମାତା ଚନ୍ତା କରୁ କାହିଁ ପାଇଁ । ତୁମ୍ଭେ ସୁମରନ୍ତେ ଅମ୍ଭେ ଆଇଲୁ ଯେ
ଧାଇଁ ।୧୫। ମଙ୍ଗଳା ବୋଇଲେ ତୁମ୍ଭେ ଯାଅ ବେନି ଜଣ । ସୁଦର୍ଶନ ରାଜା
ପୁରେ କର ଯା ରନ୍ଧନ ।୧୬। ଅନ୍ନ ବ୍ୟଞ୍ଜନ ଯାଇଁଣ ତ୍ୱରିତେ କରିବ । ଏ
ଯେତେକ ସୈନ୍ୟ ତାଙ୍କୁ ପରଷିଣ ଦେବ । ୧୭ । ଏ ବଚନ ଶୁଣି ଦୁହେଁ
ହରଷ ହୋଇଲେ । ମେଲାଣି ମାଗିଣ ରାଜା ପୁରକୁ ସେ ଗଲେ । ୧୮ । ଯେ
ଯହିଁ ଯେତେକ ବାଧ୍ୟ କଲେକ ରଚନା । ତହିଁ ଉତ୍ସବ ଲାଗିଛି ସେ ରାଜାର
ସିନା ॥ ଆପଣେମଙ୍ଗଳାମାତା ହୋଇ ତରତର । ପରବେଶ କରାଇଲେ ଶ୍ରୀବନ୍ତ
କୁମର ।୨୦। ହୁଳହୁଳି ଦେଉଛନ୍ତି ନଗରନାରୀମାନେ । ଶଙ୍ଖ ମହୁରୀ ବାଜଇ
ଯେଉଁ ଘନଘନେ ॥ ଧନେଶ୍ୱର ରାଜା ଯେ ଅଶ୍ୱରେ ଚଢ଼ିଅଛି । ଯାହାର
ଶୋଭା ହୋଇବ ନନ୍ଦନ ଶ୍ରୀବତ୍ସ । ୨୨ । ସୋମନାଥ ଡ଼ଗର ଯେ ଅଛଇ
ସଙ୍ଗରେ । ବାଦ୍ୟ ନାଦ ଶବଦ ଯେ ଶୁଭେ ଉଜ୍ଜ୍ୱପୁରେ । ୨୩ । ବରବେଶ
ହୋଇଣ ଶ୍ରୀଧର ଚଳିଗଲା । ଚଉଦୋଳାର ଉପରେ ଯାଇଣ ବସିଲା । ୨୪ ।
ମଙ୍ଗଳା ମାତା ଶ୍ରୀଧର ନିକଟେ ରହିଲେ । ବରବେଶ ହୋଇଣ ସେ ବେଗେ
ଚଳିଗଲେ ।୨୫। ବାଟେ ଯାଉଁ ୨ କେତେ ହେଉଛନ୍ତି ରଙ୍ଗ । କେଉଁଠାରେ
ଶଙ୍ଖ ବାଜେ କେଉଁଠାରେ ରଙ୍ଗ ।୨୬। କେଉଁଠାରେ କଂସାଳ ଯେ କେଉଁ-
ଠାରେ ତାଳ । କାହିଁ ବୀତପନ ବାଜେ କାହିଁରେ କାହାଳ ॥ କେଉଁଠାରେ
ନୃତ୍ୟକାରୀ ନୃତ୍ୟ କରୁଛନ୍ତି । କେଉଁଠାରେ ନାରୀମାନେ ହୁଳହୁଳି ଦ୍ୟନ୍ତି ॥
କାହିଁରେ ହସ୍ତୀ ଖଞ୍ଜନ କାହିଁ ଘୋଡ଼ାମାନ । କାହିଁ କେତେ ଛନ୍ତି କେ
କଳି ପାରିବ ସୈନ୍ୟ । ୨୯ । କେଉଁଠାରେ ଚଣ୍ଡୀ ପୂଜା ଦେଉ-
ଛନ୍ତି ଡାକ । କେଉଁଠାରେ ଖଣ୍ଡିଆ ଯେ ଦେଉଅଛି ହାକ । ୩୦ । କେ କହି
ପାରିବ ତାର ଯେତେ ସୈନ୍ୟ ଛନ୍ତି । ଯହିଁ ଯେତେ କରଛନ୍ତି ଶଇଲଦୁହିତା
। ୩୧ । ରାଜା ସିଂହଦ୍ୱାରେ ଯାଇ ପ୍ରବେଶ ହୋଇଲେ । ପଥରେ ଆସିଣ
ବରକୁ ବରଣ କଲେ । ୩୨ । ତେତେବେଳେ ଶ୍ରୀଧର କହଇ ମଙ୍ଗଳାଙ୍କୁ ।
ମୋହର ବଚନ ଶୁଣ କହୁଛି ତୁମ୍ଭଙ୍କୁ । ୩୩ । ଯେଉଁ କଥା କହିଲ ମୁଁ ସବୁ
ହେଲି ମୋତେ । ଆଉର କଥା ଏ ମା ଗୋ ମାଗୁଅଛି ତୋତେ ।୩୪। ମଙ୍ଗଳା

ବୋଇଲେ ଭକ୍ତ ବାଳୁତ ନନ୍ଦନ । ତୁ ଯାହା ମାଗିବୁ ତାହା ଦେବି ତତକ୍ଷଣ ।୩୫। ଶ୍ରୀଧର ବୋଇଲା ତୁମ୍ଭେ ଶୁଣ ଠାକୁରାଣୀ । ଅଶ୍ୱ ଗୋଟିଏକ ମୋତେ ଦିଅ ଏହିକ୍ଷଣି ।୩୬। ଯେ ଅଶ୍ୱରେ ଚଢ଼ି ସିଂହଦ୍ୱାର ଡେଇଁ ଯିବି । ବେଦୀର ମଧ୍ୟରେ ଯାଇ ମୁହିଁ ଯେ ବସିବି ।୩୭। କଥା ବହିଥିବ ମୋର ଏ ଶୁଭ ଯୁଗେଣ । ସିଂହଦ୍ୱାର ବାଟେ ମୁହିଁ ନ ଯିବି ଗୁଳଣ । ୩୮ । ମଙ୍ଗଳା ବୋଇଲେ ତୁ ରେ ଶୁଣସି ଶ୍ରୀଧର । କେତେ କେତେ ଦୁଃଖ ମୁହିଁ ସହିବି ତୋହର । ୩୯ । ମାତା ଯେ ତୋହର କଥା ନ ପାରିବ ସହି । ଯେତେ ୨ କଥା ମୋତେ କହୁଅଛୁ ତୁହି ॥ ତୋହ ଲାଗି ଶ୍ରୀଧର ମୁଁ ଏ ଦୁଃଖ ସହିଲି । ତୋର ଭକ୍ତିରେ ସିନା ସନ୍ତୋଷ ହୋଇଲି ।୪୧। ଶ୍ରୀଧର ବୋଲଇ ମାତା ତୋହର ଦୟାରୁ । ଯେତେ ଦୁଃଖ ପଡ଼ିଲା ମୁଁ ରହିଲି ତହିଁରୁ ।୪୨। ଏବେ ଏହି କଥା ଗୋଟି ଯେବେ ଦେବୁ ମୋତେ । ତେବେ ସିନା ମୋର ମନ ହୋଇବ ସମ୍ପ୍ରତେ ॥ ଏମନ୍ତ ଯେ ଶ୍ରୀଧର ମଙ୍ଗଳାଙ୍କୁ କହି । ଏତେ ଏତେ କଥା ଆଉ ନ ଜାଣନ୍ତି କେହି ॥ ବାଳକ ବଚନ ଶୁଣି ଅନନ୍ଦ ହୋଇଲେ । ସେଠାରେ ମଙ୍ଗଳାମାତା ମାୟା ଭିଆଇଲେ ।୪୫। ଶୂନ୍ୟରୁ ଏକଇ ଅଶ୍ୱ ଅଳ-ଙ୍କ ଛଡ଼ି । ଚଉଦୋଳା ନିକଟେ ଅଇଲା ତଡ଼ବଡ଼ି ।୪୬। ଦେଖିଣି ସକଳ ଜନ କାତର ହୋଇଲେ । କାହୁଁ ଅଇଲାକ ଅଶ୍ୱ ଏମନ୍ତ ବୋଇଲେ ।୪୭। ସେ ଅଶ୍ୱ ଉପରେ ଯାଇଁ ଶ୍ରୀଧର ବସିଲା । ଗୁରୁକ ଧଇଣ ସେ ଅଶ୍ୱକୁ ପିଟି-ଦେଲା ।୪୮। ତିନିତାଳ ଉଚ୍ଚ ଯେ ଅଟଇ ସିଂହଦ୍ୱାର । ଅଶ୍ୱଚଢ଼ି ଡେଇଁଗଲା ବାଳୁତ କୁମର । ୪୯ । ଦେଖଣାହାରୀଏ ଦେଖି ଚକିତ ହୋଇଲେ । ଧନ୍ୟ ଧନ୍ୟ ବାଳକ ରେ ବୋଲିଣ ବୋଇଲେ । ୫୦ । ଧନ୍ୟ ଧନ୍ୟ ପିତା ମାତା ଧନ୍ୟ ତୁହି ନର । ଧନ୍ୟ ତୋ ଦେଶ କହିବା ବାଳୁତ କୁମର । ୫୧ । ଚଉପାଶରେ ଯେ ଜଳୁଅଛି ଦିପାବଳୀ । କୁଳସ୍ତ୍ରୀମାନେ ଦେଉଛନ୍ତି ହୁଳ-ହୁଳି ।୫୨। ବେଦୀପରେ ଶ୍ରୀଧର ଯେ ଯାଇଣ ବସିଲା । ମଙ୍ଗଳାଙ୍କ ପ୍ରସନ୍ନରୁ ଏମନ୍ତ ଯେ କଲା ।୫୩। ଏହି ପ୍ରକାରେଣ ତହିଁ ସମସ୍ତ ବାନ୍ଧବ । ଧୀବର ଭିକାରୀ ତହିଁ କରୁଅଛି ସ୍ତବ । ୫୪ ।

## ଅଷ୍ଟତ୍ରିଂଶ ଛାନ୍ଦ

ରାଗ—ପଦ୍ମପୂରାଣ

ଶୁଣ ସୁଜ୍ଞଜନେ ଏଥୁଅନ୍ତରେ ଚରିତ । ଶ୍ରୀଧର କୁମର ବିଭା ହେଲାକ ଯେମନ୍ତ । ୧ । ସୁଦର୍ଶନ ରାଜାର ଯେ ଅଟଇ କୁମାରୀ । କିବା ସୁଧା ବିନ୍ଦୁଅଛି ମୁଖରୁ ତାହାର । ୨ । ଅତି ଯତ୍ନେ ସଜାଡ଼ିଲେ ବେଣୀ କଲେ ଜୁଡ଼ା । ତଥି ଘରେ ଗୁଡ଼ାଇଲେ ସେବତୀ ପାଖୁଡ଼ା । ୩ । ହସ୍ତୀଦନ୍ତ ଗୋଜିକାଠି ତାପରେ ଖଞ୍ଜିଣ । କେଉଁ କେଉଁ ଲାଗିଅଛି ଝୁମ୍ପା ତହିଁ ପୁଣି । ୪ ରତ୍ନକୁଣ୍ଡଳ ମହିମା କେ ପାରିବ କହି । କି ଜାଣି ଅନ୍ଧାରଘରେ ଚନ୍ଦ୍ର ବିରାଜଇ । ୫ । ରକ୍ତଚୂଡ଼ ଚନ୍ଦ୍ରମେଘୀ ଶାଢ଼ୀ ପିନ୍ଧାଇଲେ । କନକ ବରନା ବିଧି ଯ୍ୟୁହିଁ ଦେଲେ ଭଲେ । ୬ । କି ଅବା ଯୋଗୀ ଏ ଯୋଗସାଧନ ଗ୍ରହଣି । ମଧ୍ୟରେ ଠେଲା ପଡ଼ିଲେ ନୟନେ ଦେଖିଣ । ୭ । କେଶ ଶୋଭା କହିବାକୁ ନୁହଇ ମୂଲ୍ୟ । କହି ବସିଲେ ଲାଗିବ ଦିନ ଯେ କେତେକ । ୮ । ଦାସୀମାନେ ଘେନିଣ ଅଇଲେ ଶୁଭ୍ରକେଶୀ । ପିତାର କୋଳରେ ସେ ଯେ ବସିଲେକ ଆସି । ୯ । ଶ୍ରୀଧର ବସିଲା ଯାଇଁ ତା ପିତାର କୋଳେ । ମହା ଉତ୍ସବ ଲାଗିଛି କେ କହି ତା ପାରେ ।୧୦। ହୁଳହୁଳି ଦେଉଛନ୍ତି କୁଳବଧୂ ମାନ । ଶଙ୍ଖ ଭେରୀ ଶବଦ ଶୁଭଇ ଘନ ଘନ । ୧୧ । ନଟକାରୀ ନୃତ୍ୟ କରୁଛନ୍ତି ଆଗେ ରହି । ସେ କାଳ ଉତ୍ସବ ଅବା କେ ପାରିବ କହି । ୧୨ । ରାଜାମାନେ ଦେଖଣା ଅଛନ୍ତି ଯେ ସମସ୍ତେ । ମଙ୍ଗଳ ରହି ଦେଖନ୍ତି ଶ୍ରୀଧର ଅଗ୍ରତେ ।୧୩। କୁଳ ଗୋତ୍ର ଉଚ୍ଚାରଣ କଲେ ଦ୍ୱିଜବର । ମହାତୋଷ ମନେ ଯେ ବସିଣ ଧନେଶ୍ୱର । ୧୪ । ଦିବ୍ୟ ବସ୍ତ୍ର କନ୍ୟାପରେ ଉପରାଣି ଦେଲେ । ସୁଦର୍ଶନ ନରସାଇଁ ନିକଟେ ବସିଲେ । ୧୫ । ତଣ୍ଡୁଳ ମୁଠାଏ ହସ୍ତେ ଘେନି ରୂପବତୀ । ବର ଉପରକୁ ସେ ଯେ ପକାଇଲେ ସତୀ । ୧୬ । ମନେ ମନେ ଶ୍ରୀଧର ହୁଅଇ ହସ ହସ । ପୁଣି ବର ଉପରେ ଯେ ଉହାଡ଼ିଲେ ବାସ ।୧୭। ମିଥିଲାରେ ଯେଉଁରୂପେ ରାମଚନ୍ଦ୍ର ବିଭା । ସେହିରୂପେ ଶ୍ରୀଧରଙ୍କୁ ରୂପବତୀ ଶୋଭା । ୧୮ । ଯେ ବିଧି ବିଧାନ ନାଡ଼ ପକାଇ ବଢ଼ାଇ । ବେନି ଜଣ ହସ୍ତ

ପୁଣି କୁଣରେ ବନ୍ଧାଇ । ୧୯ । ଦାନ ଯଉତୁକ ଦେଲେ ସୁଦର୍ଶନ ରାୟେ ।
ଦୁହିତାଙ୍କୁ ପନ୍ଦରବାଗ ଦେଲେକ ଯୋଗାଏ । ୨୦ । ବୋଇତ ଦେଲେ ଯେ ପଞ୍ଚ
ପନ୍ଦର ପତର । ବର କନ୍ୟା ଘେନି ଗଲେ ଅଚନ୍ତେଶ୍ୱରପୁର । ୨୧ । ଅର୍ଘ୍ୟ
ବନ୍ଦାପନା କଲେ ଘରେ ନେଇ ରାଣୀ । କୁଳବୃଦ୍ଧ ଦମ୍ପତ୍ତି ସକଳ ସୁଲକ୍ଷଣୀ ।
। ୨୨ । ବନ୍ଧୁବାନ୍ଧବ ବଢ଼ାଇଲେ ହୋଇଣ ହରଷ । ମଙ୍ଗଳା ରାଜଘେ କରିଛନ୍ତି
ତାଙ୍କ ପାଶ । ୨୩ । ସେଥିର ମହିମା ଅବା କେ ପାରିବ କହି । ଜୁଆ
ଖେଳାଉଛନ୍ତି ମଙ୍ଗଳା ମହାମାୟୀ । ୨୪ । ରସନାଥି ରସନା ଯେ ଏ
ଦୁଇ ବ୍ରାହ୍ମଣୀ । ଅନ୍ନ ବ୍ୟଞ୍ଜନ ପାକ ଯେ କରୁଥାନ୍ତି ପୁଣି । ୨୫ । ମଙ୍ଗଳାଙ୍କର
ନିକଟେ ପ୍ରବେଶ ହୋଇଲେ । ଭୋ ମାତ ସକଳବାଧି ସାରିଲୁ
ବୋଇଲେ । ୨୬ । ସମ୍ଭାବନା କଲେ ଅନ୍ନ ପରଷିବୁ ଆଣି । ଉତ୍ପନ୍ନ
ହେଉଛି ମନ ରହିବାକୁ ପୁଣି । ୨୭ । ଏହା ଶୁଣି ମଙ୍ଗଳା ଯେ ହରଷ
ହୋଇଲେ । ନୃପତିମାନଙ୍କୁ ଏକଠାବେ ବସାଇଲେ । ୨୮ । ଯାହାଙ୍କୁ
ଯେମନ୍ତେ ବାଧି ବସାଇଲେ ଆଣି । ଅନ୍ନ ଦିଅ ବୋଲିଣ ବୋଲନ୍ତି ଠାକୁ-
ରାଣୀ । ୨୯ । ଏହା ଶୁଣି ବ୍ରାହ୍ମଣୀ ଯେ ଗଲେ ତତକ୍ଷଣ । ଅନ୍ନ ନେଇ
ରାଜାଙ୍କୁ ଯେ ଦେଲେକ ତକ୍ଷଣ । ୩୦ । ଧନ୍ୟ ସେହି ବ୍ରାହ୍ମଣୀ ଯେ ଦୁଇ
ଜଣେ ହେଲେ । ଏତେ ସୈନ୍ୟଙ୍କୁ ଯେ ଅନ୍ନ ପରଶିଣ ଦେଲେ । ୩୧ ।
ଯତ୍ନେ କରିଛନ୍ତି ସେ ଯେ ଚୌରାଶୀ ବ୍ୟଞ୍ଜନ । ତାହାର ମହିମା କେହୁ
କହିବାକ ପୁଣ । ୩୨ । ଆମ୍ବୁ ଅଦା ନଡ଼ିକାଳ ପାଚିଲାକଦଳୀ । ଦୁଧ ସର
ଶାକର ଅବର କେତେ ଭଳି । ୩୩ । ଛେନା ଗୁଡ଼ ପଞ୍ଚାମୃତ ନବାତ ଯେ
ଘେନି । ସବୁ ଦ୍ରବ୍ୟ ପରଶିଲେ ନେଇଣ କାମିନୀ । ୩୪ । ଭୁଞ୍ଜିସାରି ନୃପତି
ଯେ ଆନନ୍ଦ ହୋଇଲେ । ଏପରି ଭୋଜନ ପୂର୍ବେ ଖାଇ ନ ଥିଲେ । ୩୫ ।
ମଙ୍ଗଳାଙ୍କ ପ୍ରସନ୍ନେ ଯେ ଭୁଞ୍ଜିଲେକ ସେହୁ । କୋଟି ଜନ୍ମ ଦୁର୍ଗତି ଯେ ଖସି-
ଗଲା ତହୁଁ । ୩୬ । ଭୁଞ୍ଜିଣ ନୃପତିମାନେ ଆଚମନ ସାରି । ତତକ୍ଷଣେ ସମସ୍ତେ
ତାମ୍ବୁଲ ପାନ କରି । ୩୭ । ବରକନ୍ୟା ଅଗ୍ରତରେ ଅନ୍ନ ନେଇ ଦେଲେ ।
ଭୁଞ୍ଜିକରି ବେନିଜନ ହରଷ ହୋଇଲେ । ୩୮ । ଅଚନ୍ତେଶ୍ୱର ପୁରେ ରାଣୀ

କଲେକ ଭୋଜନ । ଅବର ଖୁଣ୍ଡିଲେ ବର୍ଯୀ ପରବାସୀମାନ । ୩୯ । ମଧୁ-
ଶଯ୍ୟା ନିମନ୍ତେ କନ୍ୟାକୁ ବେଶ କଲେ । ନାନା ଆଭରଣ ମାନ କନ୍ୟାଙ୍କୁ
ଦେଇ ଦେଲେ । ୪୦ । କୋମଳ କରଣ ଦାସୀ କହନ୍ତି ବଚନ । ସାବଧାନେ
ଶୁଣ ତୁ ଗୋ ସୁବ୍ରତ ରତନ । ୪୧ । ଆଗହୋଇ କାନ୍ତକୁ ତୁ କଥା ନ
କହିବୁ । ପ୍ରେମରେ ଗଦଗଦ ହୋଇ ସୁରତ ନ ଦେବୁ । ୪୨ । ଅମ୍ବର
ଉପରେ ଦୟା ରଖିଥିବୁ ତୁହି । କାନ୍ତସଙ୍ଗ ପାଇଣ ପାଶୋରିଦେବୁ ନାହିଁ ॥
ଏମନ୍ତ ପ୍ରକାରେ ସଖୀ କହିଲେ ତା ଆଗେ । ମଧୁଶଯ୍ୟା ମନ୍ଦିରେ ଛାଡ଼ିଲେ
ନେଇ ବେଗେ ।୪୪। କାମାତୁର ହୋଇ ଯେ ଶ୍ରୀଧର ଗୃହିଁଥିଲା । ଆସ
ସଙ୍ଗି ପ୍ରିୟେ ବୋଲି କର ପ୍ରସାରିଲା । ୪୫ । କର ପ୍ରସାରିଲା ମାତ୍ରେ ଲାଜ
ଲାଜ ହୋଇ । ମୃନ୍ମୀଭୂତ ହୋଇଣ ରହିଲା ଠାବେ ଯାଇଁ । ୪୬ । କନ୍ୟା
ବୋଲେ ମୋ ବଚନ ଶୁଣ ପ୍ରାଣେଶ୍ୱର । ଏ ନବ ଯୌବନ ସେ ଯେ ସର୍ବଦା
ତୁମ୍ଭର । ୪୭ । ଚିରକାଳ ଭୋଗ କରୁଥାଅ ପ୍ରାଣନାଥ । ମନ କଥା ଅଛି
କିଛି କହିବି ହେ କାନ୍ତ । ୪୮ । ଶ୍ରୀଧର ବୋଇଲା ଶୁଣ ପ୍ରାଣର ମିତଣି ।
ତୁ ଯାହା ମାଗିବୁ ତାହା ଦେବି ଏହିକ୍ଷଣି । ୪୯ । ଅବଳା ବୋଇଲା ଶୁଣ
ପ୍ରାଣର ନାୟକ । ଆଜ ବାଧା ନୋହିବ ମୋ ପ୍ରାଣ ଥିବାଯାକ । ୫୦ ।
ସଅତଣୀ ହିଂସା ମୁଁ ଯେ ନ ପାରଇ ସହି । ଶ୍ରୀଧର ବୋଇଲା ଆଉ ବାଧା
ହେବ ନାହିଁ । ୫୧ । ମଙ୍ଗଳାଙ୍କ ଶପଥ କରୁଛି ଶତେବାର । ଆଜହୁଁ ଏ
କଥା ମୋର ହୃଦୟରେ ଗାର । ୫୨ । ଏମନ୍ତ କହନ୍ତେ କନ୍ୟା ସଖୀଙ୍କରେ
ଗୃହିଁଲା । ହାସ୍ୟ ରଙ୍ଗ କଉତୁକ ବେଳୁ ବେଳ ହେଲା । ୫୩ । ଯାମିନୀ
ଶେଷ ହୁଅନ୍ତେ ସ୍ନାହାନକୁ ଗଲେ । ଆପଣା ମନ୍ଦିରେ କନ୍ୟା ଏକାନ୍ତେ
ରହିଲେ । ୫୪ । ଶ୍ରୀଧର କୁମର ତହୁଁ କରିଣ ସ୍ନାହାନ । ବ୍ରାହ୍ମଣ ବୈଷ୍ଣବେ
ଦେଲେ ଅନେକ ଯେ ଦାନ । ୫୫ । କନ୍ୟାକୁ ବେଢିଣ ସହଚରୀ ପଚାରନ୍ତି ।
କହ କହ ସଜନୀ କି ହେଲା କାଲି ରାତି । ୫୬ । କାନ୍ତ ସଙ୍ଗ ଲଭିଣ ଅନ୍ତର
ହେଲୁ ତୁହି । ଜଣା ପଡ଼ିଲାଣି ପୂର୍ବ ସ୍ନେହ ଏବେ ନାହିଁ । ୫୭ । ତୁମ୍ଭର
ଅମ୍ଭର ଅଟେ ବାଳକାଳୁ ସଙ୍ଗ । ପଚାରିଲେ ମୁଖ କାମା କରୁଛୁ ବିଭଙ୍ଗ ।୫୮।

ଏହା ଶୁଣି ଅବଳା ଯେ ବୋଲଇ ଉତ୍ତର । କେତେ ଭର୍ତ୍ସିତ କରୁଛ ଅଗୋ ନାଗରବର ।୫୯। ତୁମ୍ଭ ଆଗେ କହିଲେ କି ହେବ ଜାଣ ମୁହିଁ । ସଂସାରରେ ଖେଳଘର ବିଧାତା ଭିଆଇ ।୬୦। ଶୁଣି ସର୍ବ ସଖୀମାନେ ହରଷ ହୋଇଲେ । ଯେ ଯାହା ମନ୍ଦିରେ ଯାଇ ପ୍ରବେଶ ହୋଇଲେ । ୬୧ । କେମାଦେଈ ଚଳି-ଗଲେ ଅନ୍ତେଶ୍ବର ପୁରେ । ପ୍ରଣମିତ ହେଲେ ଯାଇଁ ମାତାଙ୍କ ପଦ୍ମରେ ।୬୨ । ଚତୁର୍ଥୀ ଅଷ୍ଟମଙ୍ଗଳା ଥାଉଲେକ ତହିଁ । ଯେ ବିଧି ବିଧାନମାନ ବହି ଲେଖିଛଇଁ ।୬୩। ଏମନ୍ତେ ସକଳ କର୍ମ ବଢ଼ାଇଣ ଦେଲେ । ମଙ୍ଗଳାମାତା ଦେଖିଣ ହରଷ ହୋଇଲେ ।୬୪। ତନୁ ପାଳି ଛନ୍ଦ ଆଣି କଲଇଁ ସମ୍ପୂର୍ଣ୍ଣ ! ମୋହର ଦୋଷ ନ ଧର ଅହେ ସୁଜ୍ଞଜନ । ୬୫ । କହଇ ଦୀନ ଭିକାରୀ ମଙ୍ଗଳାଙ୍କୁ ଧ୍ୟାୟି । ଏଣିକ ମୋ ମତ ଯେତେ କହିବଇଁ ମୁହିଁ । ୬୬ । ଏଣିକ ଯେତେ ଚରିତ କହିବଇଁ ମୁହିଁ । ସର୍ବ ନାରୀମାନେ ହୁଳହୁଳି ଦିଅ କହି । ୬୭ । ହରି ହରି ବୋଲ ଅହେ ସର୍ବ ସଭାଜନ । ତନୁ ପାଳି ଛନ୍ଦ ଆଣି କଲି ଯେ ସମ୍ପୂର୍ଣ୍ଣ । ୬୮ ।

---

## ଊନଚତ୍ୱାରିଂଶ ଛାନ୍ଦ

ରାଗ—ମାଳବ

ବନ୍ଦଇ ମଙ୍ଗଳା ମା ଗୋ ଶଇଳଦୁହିତା । ସର୍ବ ସୁଲକ୍ଷଣୀ ମା ଗୋ ସକଳର ମାତା ।୧। ଅଭୟଦାୟିନୀ ମାଗୋ କଙ୍କାଳୀ ବେତାଳୀ । ସର୍ବାଣୀ ଭୈରବୀ ମାଗୋ ସିନ୍ଦୂର ଦୁଲାଳୀ । ୨ । କୃପା ନାରାୟଣୀ ମାଗୋ ଅମ୍ବିକା ପାର୍ବତୀ । ଝଙ୍କଡ଼ପୁର ବାସିନୀ ବସ୍ତୁ ତୋର ପତି ।୩। ଖଡ଼ଗ ଖପରଧାରୀ ଗଙ୍ଗାଧର କାନ୍ତା । ତୋ ବିନୁ କେ ଅଛି ମୋର ଦୁର୍ଗତି ହରନ୍ତା ।୪। କର ଅନୁଗ୍ରହ ମା ଗୋ କଣ୍ଠତରେ ମୋତେ । କହିବଇଁ ଶ୍ରୀଧର ପାଇଁ କଥା ହେଲା ଯେତେ । ୫ । ଶ୍ରୀଧର ଯାଇଣ ତା ପିତାଙ୍କୁ ଭେଟ କଲା । ସୁଦର୍ଶନ ରାଜାର ହିଅଲ୍ ବଧୂ ହେଲା । ୬ । ବରଣ ହୋଇଣ ରାଜାମାନେ ଅସିଥିଲେ । କେଉଁରୂପେ ସେମାନେ ମେଲାଣି ହୋଇଗଲେ ।୮। ପୁଣି କାର ରୂପେ ଅଇଲେ

ଧନେଶ୍ୱର ଗୃହ । ଖୁଲଣାର ଅଗ୍ରତେ ଅସିଣ ହେଲ ଭେଟ ।୭। ତାହାର ବୃତ୍ତାନ୍ତ ମାତା କହିଦିଅ ମୋତେ । ପୁରାଣରେ ଲେଖିବି ମୁଁ ସୁଜନଙ୍କ ହିତେ ।୯। ଏ ମଙ୍ଗଳା ଚରିତ ଯେ ଅମୃତ କାହାଣୀ । ଛନ୍ଦ ଛନ୍ଦକେ ପୂରିଛି ସୁଧା ରସବାଣୀ ।୧୦। ଏ ଶାହାସ୍ତ୍ର ଯେଉଁ ଜନ କର୍ଣ୍ଣରେ ଶୁଣିବ । ନିସନ୍ଧ୍ୟା କାଳରେ ପୁଣି ହୃଦରେ ଗୁଣିବ ।୧୧। ଦୁଃଖୀ ହୋଇଥିଲେ ଦୁଃଖ ନ ରହିବ ତାର । ମହାଘୋର ସଙ୍କଟରୁ ହୋଇବ ସେ ପାର ।୧୨। ଶୁଣ ସୁଜ୍ଞଜନମାନେ ସାବଧାନ ହୋଇ । ଚତୁର୍ଥ ପାଳିର କଥା କହୁଅଛି ମୁହିଁ ।୧୩। କହଇ ଭିକାରୀ ମୋତେ ରଖ ହେ ମଙ୍ଗଳା । ଅସିଲର ପଦମାନ କହିଦିଅ ଗଲା ।୧୪। ଏଣିକ ରାଗ ଯେ ମୁଁ ଲେଖିବି ରାମକେରୀ । ସୁଜ୍ଞ-ଜନେ ବୋଲ ଏହା ମନରେ ବିଚାରି ।୧୫।



## ଚତ୍ୱାରିଂଶ ଛାନ୍ଦ

ରାଗ—ରାମକେରୀ ।

ଶୁଣ ଶୁଣ ସୁଜ୍ଞଜନେ ହେ ଏଥୁଅନ୍ତେ ଚରିତ । ବାଘଘର ତହିଁ ବଢ଼ାଇ ହେଲେ ହରଷ ଚିତ୍ତ ।୧। ଯେତେ ଯେତେ ଦେଶ ନୃପତିମାନେ ଆସିଣ ଥିଲେ । ସେହିମାନଙ୍କୁ ସୁଦର୍ଶନ ରାଜା ମେଲାଣି ଦେଲେ ।୨। ନଟ-କାଗ୍ରୀମାନେ ଯେତେକ ତାଙ୍କୁ ମେଲାଣି କଲେ । ନିଶ୍ଚିନ୍ତ ହୋଇଣ ଆପଣା ମନ୍ଦିରରେ ରହିଲେ ।୩। କେ ଅବା ନେଲା ଖଡ୍ଗ ନୋଳି କେବା ଗୃହର ନେଲା । କେଉଁ ଲୋକ ଅବା କଥାରେ ଆଦରତା ପାଇଲା ।୪। ଧନେଶ୍ୱର ନଗରୀଇଁ ଯେ ମହା ଆନନ୍ଦେ ଥାଇ । ପୂର୍ବ ଦୁଃଖ ଅବା ତାହାର ସେ ତ ମନରେ ନାହିଁ ।୫। ବିଚାରଇ ଧନ୍ୟ ଅଟଇ ଖୁଲଣା ଯେ ସୁନ୍ଦର । ଏଡ଼େ ଦୁଃଖରୁ ତା ନନ୍ଦନ ମୋତେ କଲା ଉଦ୍ଧାର ।୬। ଏହି ଭାବନା କରୁଅଛି ଘରକୁ ଯିବା ପାଇଁ । ମହାସୁଖେ ସଙ୍ଗତରେ ଯେ ସୋମନାଥ ଅଛଇ ।୭। ତାହାକୁ କିଛି ନ କହିଣ ମଙ୍ଗଳା ଚଳିଗଲେ । ଆପଣା ମନ୍ଦିରରେ ଯାଇଣ

ନିଷ୍ଟିନ୍ତରେ ରହିଲେ ।୮। ଏଥି ଅନ୍ତରେ ଯେତେ କଥା କହୁଅଛଇ ମୁହିଁ ।
ଧୀବର ଭକାଶ୍ୱ ଶୁଣୁଛି ଶୁଣ ମଙ୍ଗଳା ତୁହି । ୯ ।

---

## ଏକଚତ୍ୱାରିଂଶ ଛାନ୍ଦ

ରାଗ—କଳଶା

ଏଥି ଅନନ୍ତରେ ତୁମ୍ଭେ ଶୁଣ ସୁଜ୍ଜନେର । କନ୍ୟାସଙ୍ଗତେ ସହାର କରେ ଶିଶ୍ୱଧର ।୧। ଧନେଶ୍ୱର ଅଛଇ ପୁତ୍ରକୁ ସଙ୍ଗେ ଘେନି । ଏହି ପର-କାରେ ଗଲା ତହିଁ ମାସ ତିନି ।୨। ଏକଦିନେ ଶୋଇଥିଲା ବାଳୁତ ଶ୍ରୀଧର । ସପନେ ସ୍ୱପ୍ନେ ଦେଖିଲା ଯେ ମାତାକୁ ତାହାର । ୩ । ଗୃହର ଭିତରୁ ସେ ଗଲାଣି ଦୂର ହୋଇ । ରଜକ ତୁଠରେ ବାସ କରଣ ଅଛଇ ।୪। ଏମନ୍ତ ପ୍ରକାରେ ସେ ଯେ ସ୍ୱପନ ଦେଖିଲା । ତତକ୍ଷଣେ ତାହାର ଯେ ନିଦ୍ରା ଭାଙ୍ଗି ଗଲା । ୫ । ନିଦ୍ରା ତେଜି କପାଳରେ ଦେଲା ସେହି ହସ୍ତ । ତା ଦେଖି ଯୁବତୀ ବୋଲେ ଅହେ ପ୍ରାଣନାଥ । ୬ । କେଉଁ କଥା ତୁମ୍ଭଙ୍କୁ ଯେ ଉଣା ହୋଇଅଛି । ସଂଶୟ ଫିଟାଇ ମୋତେ କହ ପ୍ରାଣପତି । ୭ । ତୁମ୍ଭ ଚିତ୍ତ ଦେଖି ମୁହିଁ ମନରେ ଚକିତ । ଧୀବର ଭକାଶ୍ୱକ ଲାଗିଲା ଅଚମ୍ଭିତ । ୮ ।

---

## ଦ୍ୱିଚତ୍ୱାରିଂଶ ଛାନ୍ଦ

ପ୍ରସ୍ତାବସିନ୍ଧୁ ରାଗରେ

ଅବଳାକୁ ଶୁହିଁ ବୋଲେ ଶ୍ରୀଧର । ସ୍ଥିର ମନେ ଶୁଣ ଯୁବତୀବର ॥ ସ୍ୱପନ କଥା ଯେ ଦେଖିଲି ମୁହିଁ । ଏଥିକି ମନେ ଭାବନା କରଇ । ୨ । ଶୁଣରେ ବାଳିକା ମୁହିଁ କହୁଛି । ମାତାଙ୍କୁ ମୋର ସ୍ୱପନ ଦେଖିଛି । ୩ । ରଜକ ତୁଠରେ ବାସି ଅଛଇ । ଅତି ଅଲକ୍ଷଣୀ ହୋଇଛି ସେହି । ୪ । ଦଶ ବରଷ ହେଲା ମୁଁ ଅଇଲି । ମାତାଙ୍କୁ ମୁହିଁ ଦେଖି ନ ପାରିଲି ॥ ମୋ ବିନା ସେହି ଝୁରୁଅଛି ନିତ । ଅନେକ କଷ୍ଟ ପାଉଛି ଧରଣୀ ।୬। କ୍ଷୀଣ ହୋଇ-ଲାଣି ଶରୀର ତାର । କରେ ଚରଇ ଅବନୀରେ ଗାର । ୭ । ଏମନ୍ତ ମୁହିଁ

ସ୍ୱପନ ଦେଖିଲି । ତେଣୁ ସେ ଢପାଳେ ହସ୍ତ ମାରିଲି ।୮। ସୁନ୍ଦରୀ ବୋଲେ ଶୁଣ ପ୍ରାଣନାଥ । ସ୍ୱପନ କଥାକୁ ମଣିଛ ସତ ।। ଦର୍ପଣେ ଦେଖିବା ଆପଣା ଛାଇ । ପଚାରିଲେ ତ ସେ କଥା ନ କହ ।। ପଶ୍ଚିମରେ ଯେବେ ଭାନୁ ଉଇଁବ । ବହନ୍ତା ନଦୀ ଯେବେ ନ ବହିବ ।। ଦିନମଣି ଆଉଁ ହେବ କି ରାତ । ପାଣି ସଙ୍ଗେ ଯେବେ ଅନଳ ପ୍ରୀତ ।। କୀଟ ଯେବେ ଠେକି ପାରେ ପର୍ବତ । ତେବେ ହୋଇବ ସ୍ୱପ୍ନ କଥା ସତ ।୧୩। ମିଛ କଥାରେ ଯେ କହୁଛ ଖୁଲି । ଘୁଷୁରି ଗଣିଲି ଗୋଧନ ବୋଲି । ୧୪ । ଶ୍ରୀଧର ବୋଇଲା ବାଇ ମିତଣି । ଦିନେ ନ ଦେଖିଥିଲି ଏହା ପୁଣି ।୧୫। ବଡ଼ ଭଉଣୀ ଯେ ତାର ଦୁର୍ଦ୍ଦଣ୍ଡ । ମିଛ କଥାରେ ଦେଉଥାଇ ଦଣ୍ଡ । ୧୬ । ତେଣୁ ଏ ସ୍ୱପନ କଥାଟି ସତ । ଭିକାରୀ ବୋଲଇ ଅଟେ ଯଥାର୍ଥ । ୧୭ ।

---

## ଚିତଳ୍ପାଳିଂଶ ଛାନ୍ଦ

ରାଗ—ରାମକେରୀ

ପ୍ରଭାତୁଁ ଉଠିଣ କୁମର ଗଲା ପିତାଙ୍କ ପାଶ । ସ୍ୱପନ ସକଳ ଚରିତ କହିଲା ତାଙ୍କ ପାଶ । ୧ । ତାହା ଶୁଣି ସେ ଧନେଶ୍ୱର କହିଲେ ଶ୍ରୀଧରକୁ । ଏବେ ଚାଲ ପୁତ୍ର ଯିବା ହେ ଆପଣାର ପୁରକୁ । ୨ । ଶ୍ରୀଧର ବୋଇଲା ହେ ପିତା ଆମ୍ଭେ କଣ୍ଟଙ୍ଗେ ଯିବା । ଆଗ କରି ଏଥରେ ଘରକୁ ଡ଼ଗରକୁ ପେଷିବା । ୩ । ଦେଖି ଆସୁ ଯାଇଁ ଡ଼ଗର ଘର ଅଛି କି ନାହିଁ । ନ ଥିଲେ ଏତେ ସୈନ୍ୟବଳ ନେବଇଁ କାହିଁ ପାଇଁ । ୪ । ଏ ବଚନ ଶୁଣି ନୃପତି ମନେ ହେଲେ ହରଷ । ତତକ୍ଷଣେ ସୋମନାଥକୁ ଡ଼କାଇଲେକ ପାଶ ।୫। ସୋମନାଥ ମୁଖ ଚାହିଁଣ ଶିରୀଧର କହଇ । ଅମ୍ଭରାଜ୍ୟ ବାର୍ତ୍ତା କୁଶଳ ଦେଖି ଆସ ରେ ଯାଇଁ । ୬ । କୁଶଳରେ ଥିଲେ ମୋ ମାତା ସୈନ୍ୟ ଘେନିଣ ଯିବି । ଦୁଃଖୀ ଥିଲେ ଏତେ ସୈନ୍ୟଙ୍କୁ କାହିଁପାଇଁ ମୁଁ ନେବି । ୭ । ଶୁଣି ସୋମନାଥ ମେଲାଣି ହୋଇ ତହୁଁ ଚଳିଲା । ବନ୍ଦରେ ଥିଲେ ଯେତେ ଜଣ ତାଙ୍କୁ ସଙ୍ଗରେ ନେଲା । ୮ । ବସିଲେ ବୋଇତ ଉପରେ ସେ ଯେ ଅଠର

ଜଣ । ଚଳିଲେ ହରଷ ହୋଇଣ ମଙ୍ଗଳା ସୁମରଣ । ୯ । ଶୁଣ ଶୁଣ ସୁଜ୍ଞଜନେ ହୋ ବେନି ଶ୍ରବଣ ଦେଇ । ତେଣେ ପୁତ୍ର ଲାଗି ଖୁଲଣା ବସି ରୋଦନ କରି । ୧୦ । ଏମନ୍ତ ରୋଦନ କରଇ ରେ ଦାରୁଣ ଦଇବ । ଶ୍ରୀଧର କୁମର ତୋ ଲାଗି ପ୍ରାଣ ଅଳ୍ପ ମୁଁ ଦେବି । ୧୧ । ଗେରସ୍ତ ଯାଇଣ ମୋହର ବନ୍ଦଘରେ ରହିଲା । ପୁତ୍ର ଆସିବାର ସମୟ୍ୟା କାହିଁ ତ ନ ମିଳିଲା । ୧୨ । ଦଶ ବରଷ ମୋ ନନ୍ଦନ ଗଲା ପରବାସକୁ । ପିତା ସନ୍ଦେଶ ନ ପାଇଣ ନ ଆଇଲା ଘରକୁ । ୧୩ । ଏମନ୍ତ ପ୍ରକାରେ ରୋଦନ କରେ ଖୁଲଣା ନାରୀ । ଆକାଶ ମାର୍ଗରେ ଜାଣିଲେ ତାହା ସଙ୍କୁମାରୀ । ୧୪ । ପ୍ରବେଶ ହୋଇଲେ ଆସିଣ ଖୁଲଣା ନିକଟରେ । ବୋଇଲେ କାହିଁକି ରୋଦନ କରୁଅଛୁ ମନରେ । ୧୫ । ତୋହର ନନ୍ଦନ ଯାଇଁଣ ପିତା ଦେଖା ପାଇଲା । ସୁଦର୍ଶନ ରାଜା ଥିଅଛୁ ତୋ ପୁତ୍ର ବାନ୍ଧି ହେଲା । ୧୬ । ଆଜ ଅଳ୍ପ ଦିନେ ଏଠାକୁ ଆସିବଟି ଶ୍ରୀଧର । ତୁହି ପୁଣି ଚିନ୍ତା ଉପେଖି ଅରେ ଯୁବତୀବର । ୧୭ । ଏମନ୍ତ କହିଣ ମଙ୍ଗଳା ଶୂନ୍ୟ ମାର୍ଗରେ ଗଲେ । ଅଷ୍ଟ ବେତାଳଙ୍କୁ ଡାକିଣ ସେ ମଙ୍ଗଳା ବୋଇଲେ । ୧୮ । ଖୁଲଣା ସୁନ୍ଦରୀ ଭୁବନ ତୁମ୍ଭେ ରଚନା କର । ରଜକ ତୁଠରେ ଯାଇଣ ସୁବର୍ଣ୍ଣପୁର କର । ୧୯ । ଶୁଣ ଶୁଣ ସୁଜ୍ଞଜନେ ହେ ବେତାଳେ ଚଳିଗଲେ । ଯେଉଁ ପ୍ରକାରେ ଘର ହେବ ତାହା କହିବା ଭଲେ । ୨୦ । କହଇ ଧୀବର ଉକାସ୍ତି ମୋତେ ରଖ ମଙ୍ଗଳା । ଚଉଦ ଅଧ୍ୟାୟ ରାଗରେ ଏବେ ଲେଖିବି ଘର । ୨୧ ।

---

## ଚତୁସ୍ତ୍ରିଂଶ ଛାନ୍ଦ

ରାଗ—କଳଶା

ଖୁଲଣା ନିକଟକୁ ଯେ ବେତାଳେ ଚଳିଲେ । ରଜକର ତୁଠେ ଯାଇଁ ପ୍ରବେଶ ହୋଇଲେ । ୧ । ତତକ୍ଷଣେ ଉଆଇଲେ ସୁବର୍ଣ୍ଣର ପୁର । କାହିଁରେ କାଞ୍ଚ ଖଞ୍ଜିଲେ କି କହିବା ଆର । ୨ । କାହିଁ ମର୍କତ ସୁବର୍ଣ୍ଣ

ତାହିଁରେ ବୈଡ଼ୁର୍ଯ୍ୟ । ୨ । ପଲଙ୍କ ବାଙ୍କିଅ ଘୋଡ଼ା ଓଳ ଗଜ । ୩ । ଶୁକ ସାରୀ ମୟୂର ପଢ଼ାଉଛନ୍ତି ଦାସୀ । ସାତ ପାଞ୍ଚ ମିଶି କେଉଁଠାରେ ଲାଗେ ହସି । ୪ । କେଉଁଠାରେ ମଞ୍ଜାରୀ ଖୁଆଉଛନ୍ତି ଭାତ । କେ ଅବା କେଦାର ରାଗେ ଗାଉଅଛି ଗୀତ । ୫ । କହି ବସିଲେ ତ କଥା ହୋଇବ ବହୁତ । କଳିଯୁଗେ ମିଛ ବୋଲିବେଟି ମୂର୍ଖେ ଏତ । ଯେ ନିମନ୍ତେ ମନେ ମୋର ହୁଅଇ ପ୍ରମାଦ । ବୋଲିଥିବେ ମିଛେ ଯୋଡ଼ି ଦେଲା କେତେ ପଦ ॥ ସେ ନିମନ୍ତେ ବହୁତ ସମ୍ବାଦ ନ ଲେଖଇ । ଠିକ ଠିକ କରି କିଛି ଲେଖୁଅଛି ମୁହିଁ । ୮ । ଏମନ୍ତେ ସେ ନଗ୍ର ଯେ ବେଢାଲେ ଭୂଅଇଲେ । ଖୁଲଣାକୁ ନେଇ ସେହି ପୁରେ ରଖାଇଲେ ॥ ଖୁଲଣାସୁନ୍ଦରୀକ ସହସ୍ରେ ଦାସୀ ଦେଇ । ବୋଇଲେ ହେ ମାତ ତୁମ୍ଭେ ଈଶ୍ୱରଙ୍କର ଯାଇଁ । ୧୦ । ହରଷେ ଖୁଲଣା ବୋଲେ ଶୁଣ ମୋ ବଚନ । କପଟ ପଢ଼ିଲେ ତୁମ୍ଭେ ଅସିବ ବହନ ।୧୧। ଅବନ୍ତୀ ନଗର ବୋଲି ନାମ ତାର ଦେଲେ । ମଙ୍ଗଳା ପାଶରେ ଯାଇ ପ୍ରବେଶ ହୋଇଲେ । ୧୨ । ବୋଇଲେ ହେ ମାତ ଅମ୍ଭେ ପୁର ନିର୍ମାଣ କଲୁ । ଗୁରୁ ଯୋଜନରେ ପୁର ନିର୍ମାଣ କରି ଦେଲୁ । ୧୩ । ରଜକ ତୁଠକୁ କଲେ ଅବନ୍ତୀ ନଗର । ସାଗର ଦେଶକୁ କଲୁ ଦି କୋଶ ଅନ୍ତର । ୧୪ । କି ଜାଣି ହସ୍ତିନାପୁର ପ୍ରାୟେକ ରଚିଲୁ । କଳାବତୀ ପୁର ପ୍ରାୟ ଶୋଭା ତାକୁ କଲୁ । ୧୫ । ତାହା ଶୁଣି ମଙ୍ଗଳା ଯେ ହୋଇଲେ ହରଷ । ନିଶ୍ଚନ୍ତେ ରହିଲେ ଯାଇ ଯେ ଯାହାର ବାସ । ୧୬ । ଯହୁଁ ତହୁଁ ମାୟା କରି ଦେଲେ ମହାମାୟୀ । ଆଗେ ଦୁଃଖ ପାଇବା ମନରେ ତାର ନାହିଁ ।୧୭। ସେ ଦିବ୍ୟ ପୁର ଦେଖିଲେ ଖୁଲଣା ସୁନ୍ଦରୀ । ରତ୍ନ ପଲଙ୍କରେ ବସି ମନରେ ବିଚାରି । ୧୮ । ଏତେ ଦୁଃଖେ ସମ୍ପଦ ଯେ ଅଛଇ ମୋହର । ପତି ପୁତ୍ର ଦୁହେଁ ଯେ ରହିଲେ ବିଦେଶରେ । ୧୯ । ଏମନ୍ତ ପ୍ରକାରେ ତାର ଦାସୀକି କହଇ । ଧୀବର ଭିକାରୀ ଏହା ଗୀତରେ ଭଣଇ । ୨୦ ।



## ପଞ୍ଚଚତ୍ୱାରିଂଶ ଛାନ୍ଦ

ରାଗ—କଳଶା

ଶୁଣ ହେ ସୁଜନେ ଏଥୁଅନ୍ତେ ସେ କଥାକୁ । ସୋମନାଥ ଅଛିଥିଲା ସଙ୍କେତ ନେବାକୁ । ୧ । ତନ୍ମ ମାସ ସାତ ଦିନେ ପ୍ରବେଶ ହୋଇଲା । ଗଣ୍ଡକୀ ନଦୀରେ ସେ ଯେ ବୋଇତ ରହିଲା । ୨ । ପଥ ଗୃହୁଁଥିଲା ସେ ଯେ ଖୁଲଣା ସୁନ୍ଦରୀ । ପଚାରିଲା ଏ ବୋଇତ ଅଟଇ କାହାର । ୩ । କି ଅବା ମୋହର ପୁତ୍ର ବିଦେଶୁ ଅଇଲା । ମୋହର ବୋଇତ ପ୍ରାୟ ଏହୁ ଯେ ଦିଶିଲା । ୪ । ଯାଅ ଲୋ ମେନକା ନାରୀ ପଚାର ତାହାକୁ । ତାହା ଶୁଣି ଦାସୀ ପୂର୍ଣ୍ଣ ହରଷ ମନକୁ । ୫ । ତତକ୍ଷଣେ ମେନକା ଯେ ତହୁଁ ଚଳି- ଗଲା । ବୋଇତ ନିକଟେ ଯାଇଁ ପ୍ରବେଶ ହୋଇଲା । ୬ । ପଚାରିଲା ଏ ବୋଇତ ଅଟଇ କାହାର । ଏହା ଶୁଣି ସୋମନାଥ ବୋଲଇ ଉତ୍ତର । ୭ । ଧନେଶ୍ୱର ସାଧୁଙ୍କର ଅଟେ ଏ ବୋଇତ । ତାଙ୍କର ଡ଼ଗର ମୁଁ ଅଟଇ ସୋମନାଥ । ୮ । ଖୁଲଣା ସୁନ୍ଦରୀ କାହିଁ ଅଛନ୍ତି ଲୋ ଦାସି । ତାହା ଶୁଣି ମେନକା ଦାସୀ ଯେ ଦେଲା ହସି । ୯ । ମେନକା ବୋଲେ ଶୁଣ ସୋମ- ନାଥ ଡ଼ଗର । ଖୁଲଣା ଅଛନ୍ତି ଏବେ ଅବନ୍ତୀ ନଗର । ୧୦ । ତାହା ଶୁଣି ସୋମନାଥ ତତକ୍ଷଣେ ଗଲା । ଅବନ୍ତୀ ନଗରେ ଯାଇ ପ୍ରବେଶ ହୋଇଲା । ୧୧ । ଖୁଲଣା ସୁନ୍ଦରୀକି ସେ ପ୍ରଣମିତ କରି । ଉଠି କହି ଉଭା ହେଲା ହୋଇଲା କର ଯୋଡ଼ି । ୧୨ । ଦେଖିଣ ଖୁଲଣା ସୋମନାଥକୁ ପଚାରି । କୋମଳ କରଣ ତାକୁ ବଚନ ଉଚ୍ଚାରି । ୧୩ । କହ ସୋମନାଥ ମୋର ପୁତ୍ର ଗଲା କାହିଁ । ତୁହି ଏକା ଅଇଲୁ କି ସେ ପଛେ ଆସଇ । ୧୪ । ସୋମନାଥ ବୋଲେ ମାତ ଶୁଣ ମୋ ଉତ୍ତର । ବରୁଣା ଦେଶରେ ପୁତ୍ର ଅଛଇ ତୁମ୍ଭର । ୧୫ । ସୁଦର୍ଶନ ରାଜା ହୋଇ ବନ୍ଦୀ ସେ ହୋଇଲେ । ପିତାଙ୍କୁ ବନ୍ଦୀଘରୁ ସେ ମୁକୁଳାଇଲେ । ୧୬ । ବହୁତ ସୈନ୍ୟ ତାଙ୍କର ସଙ୍ଗେ ଛନ୍ତି ପରା । ସେ ନିମନ୍ତେ ଆଗରେ ପେଷିଲେ ମୋତେ ତହୁଁ । ୧୭ । ବୋଇଲେ ଆମ୍ଭର ବାଟ ଚାହିଁ ଦେଖୁ ଥାଅ । ଅଛଇ କାହାଁକି ସେ ଯେ

ଅପଣାର ଦେଶ । ୧୮ । ତୁମ୍ଭେ କ୍ଷ ପେ ଆଇଲ ଅବନ୍ତୀ ନଗର । ଏଥିର ସନ୍ଦେଶ କହ ମୋହର ଆଗର । ୧୯ । ତାହା ଶୁଣି ଖୁଲଣା ଯେ ଆନନ୍ଦ ହୋଇଲା । ଶାଢ଼ୀ ଶୀର୍ଘ ଖଡ଼ୁ ବୋଲି ମନ ସୁଖେ ଦେଲା । ୨୦ । ଝୁଞ୍ଜି-ବାକୁ ଆଣିକର ଦିବ୍ୟ ସଞ୍ଚା ଦେଲା । ଗଡ଼ରବ କରି ତାଙ୍କୁ ପାଶେ ବସା-ଇଲା । ୨୧ । ବୋଇଲା ହେ ସୋମନାଥ ଶୁଣ ମୋ ବଚନ । ଅବନ୍ତୀ ନଗରକୁ ସ୍ୱରୂପା କେତେ ଯୂଣ । ୨୨ । ପୁଣି କେତେ ଦିନେ ଆସି ପ୍ରବେଶ ହୋଇବ । କହ ସୋମନାଥ ଏବେ ଏଥିର ପ୍ରସ୍ତାବ । ୨୩ । ସୋମନାଥ ବୋଲେ ମାତା ଶୁଣ ମୋ ବଚନ । ସ୍ୱରୂପା ଦେଶ ଏଥକୁ ଛନ୍ଦଶତ ଯୂଣ । ୨୪ । ମହା ଦୁର୍ଗମ ପଥ ଯେ ଅଟଇ ତେଣିକି । ସପତ ସାଗର ପଥ ନ ଦିଶେ କେଣିକି । ୨୫ । ଗଲାବେଳେ ପଥରେ ପଡ଼ିଲା ଯେତେ ଦୁଃଖ । ଯେକାଳେ ମଙ୍ଗଳା ମାତ ହେଲେ ସାହାପକ୍ଷ । ୨୬ । ସୁଦର୍ଶନ ରାଜା ରାଜ୍ୟେ ପ୍ରବେଶ ହୋଇଲୁଁ । ମଙ୍ଗଳାଙ୍କୁ ସେବାକରି ନିଶ୍ଚିନ୍ତେ ରହିଲୁଁ । ୨୭ । ଆଜନ୍ମୁଁ ଆଇଲି ଛନମାସ ସାତ ଦିନ । ପୁଣି ଏହିପଥେ ମୁଁ ଯେ କରିବି ଗମନ । ୨୮ । ଏକ ଏକ ଦୁଃଖ ମୁଁ କି କହିବି ତୋ ଆଗେ । ପୁସ୍ତକ ଖଣ୍ଡିଏ ହେବ ଯିବ ଜଦବେଗେ । ୨୯ । ତୁମ୍ଭେ ମାତ କେମନ୍ତେ ଆଇଲ ଏତେ ଦୂର । କେମନ୍ତେ ଯେ ହେଲା ମାତ ସୁବର୍ଣ୍ଣର ପୁର । ୩୦ । ଖୁଲଣା ବୋଇଲା ତୁରେ ଶୁଣ ସୋମନାଥ । ଅନେକ କଷ୍ଟ ସହିଲି ଯେତେ ହେଲା କୃତ୍ୟ । ୩୧ । ମଙ୍ଗଳାମାତ ଯେ ସବୁ ଦୁଃଖ ନିବାରିଲେ । ଏ ସୁବର୍ଣ୍ଣମୟ ପୁର ଦେଇଛନ୍ତି ଭଲେ । ୩୨ । ଏହା ଶୁଣି ସୋମନାଥ ଯୋଡ଼ି ବେନିକର । ବୋଇଲା ହେ ମାତ ତୁମ୍ଭେ ବେଗେ ବିଦାକର । ୩୩ । ଏତେ ପଥ ଦୂର ବୋଲି ବହୁ ଶୋକ କଲା । ଆତଙ୍କ-ନାଶିନୀ ମଙ୍ଗଳାକୁ ସୁମରିଲା । ୩୪ । ତତକ୍ଷଣେ ମଙ୍ଗଳା ଯେ ପ୍ରବେଶ ହୋଇଲେ । କାମ୍ପାଇ ରୋଦନ କରୁଅଛୁ ତୁ ବୋଇଲେ । ୩୫ । ଧନ ଜନ ଗୋପ ଲକ୍ଷ୍ମୀ ସକଳ ପାଇଲୁ । ଆଉ କେଉଁ କାରଣରେ ରୋଦନ ତୁ କଲୁ ॥ ଗେରସ୍ତ ପୁତ୍ରକୁ ଚିନ୍ତା କରୁଛୁ ମନକୁ । ଆଉ ସାତମାସରେ

ଅସିବେ ସଦନକୁ । ୩୭ । ଏହା ଶୁଣି ଖୁଲଣା ଯେ ବୋଲଇ ବଚନ ।
ସେ କାଳ ପର୍ଯ୍ୟନ୍ତ କାହିଁ ଥିବ ମୋ ଜୀବନ । ୩୮ । ଏହି ଆଜ୍ଞା ଯେ ମାତ
ତୁ ଦିଅ ଶ୍ରୀମୁଖରେ । ପନ୍ଦର ଦିନରେ ପୁତ୍ର ଅସୁ ମୋ ମନ୍ଦିରେ । ୩୯ ।
ମଙ୍ଗଳା ବୋଇଲେ ଏହି କଥା ଅସ୍ତୁ ହେଉ । ମୋର ଥିଲେ ଭାବନା
ତୋହର କିଛି ନୋହୁ ।୪୦। ଏତେ କହି ମଙ୍ଗଳା ଶୂନ୍ୟରେ ଚଳିଗଲେ ।
ଅଷ୍ଟ ବେତାଳଙ୍କୁ ଚାହିଁ ବଚନ ବୋଇଲେ । ୪୧ । ତୁମ୍ଭେ ଅଷ୍ଟ ବେତା-
ଳରେ ବେଗେ ଚଳିଯିବ । ସମୁଦ୍ର ଭିତରେ ଯାଇ ପ୍ରବେଶ ହୋଇବ ।୪୨।
ବୋଇତ ଉପରେ ଯାଇ ଅଦୃଶ୍ୟରେ ଥିବ ଛମାସ ପଥ ଛଅ ଦିନରେ
ଆସିବ । ୪୩ । ଯାଅ ବାବୁ ଘେନି ଆସ ଶ୍ରୀମନ୍ତ କୁମର । ଆଜ୍ଞା ପାଇ
ଚଳିଲେ ସେ ତହୁଁ ତତପର । ୪୪ । ମେଲାଣି ସେ ଦେଲା ଯୋମନୀଅ-
ଡଗରକୁ । ଯାଅ ବାବୁ ଘେନିଆସ ମୋର କୁମରକୁ । ୪୫ । ଖୁଲଣାର
ଆଜ୍ଞା ପାଇ ଡଗର ଚଳିଲା । ବୋଇତ ଉପରେ ଯାଇ ତ୍ୱରିତେ ମିଳିଲା ॥
ଏହି ରସରେ କହଇ ଧୀବର ଭିକାରୀ । ଆତଙ୍ଗନାଶିନୀ ମା ଗୋ ମୋତେ
କର ପାରି । ୪୬ ।

---

## ଷଟ୍‌ଚତ୍ୱାରିଂଶ ଛାନ୍ଦ

### ( ଗୋପୀଭାଷା—ବୃତ୍ତେ )

ଏଥୁ ଅନନ୍ତରେ ଶୁଣ ସୁଜନ । କହୁଛି ଏଣିକି ଯେତେ ବିଧାନ ॥
ଯହୁଁ ଖୁଲଣା ଉଆସ ପାଇଲା । ଜମୁନା ଅଗରେ ଦାସୀ କହିଲା । ୨ ।
ଶୁଣ ପାଟରାଣୀ ମୋର ବଚନ । କାହୁଁ ଆଣିଲା ସେ ଏତେକ ଧନ । ୩ ।
ତୁମ୍ଭଠାରୁ ଦୁଇ ଗୁଣ ଉଆସ । ଏହା ଶୁଣି ଜମୁନା ହସ ହସ । । ୪ । ଚଣ୍ଡା-
ଳିକି ନଷ୍ଟେ ନାଶ କରିବି । ଏମନ୍ତ ମନେ ମନେ ସେହୁ ଭାବି । ୫ । ଦାସୀ
ସଙ୍ଗେ ନେଇ ତା ପାଶେ ଗଲା । କି ଦେଲୁ ଖୁଲଣା କି କରୁଛୁ ବୋଲା । ୬ ।
ସେ ବୋଲଇ ଭଗ୍ନୀ ବସିଛି ମୁହିଁ । କି କରିବି କର୍ମକୁ ଆଦରଇ । ୭ ।
ଜମୁନା ବୋଲଇ ଦାସୀକି ପୁଚ୍ଛି । ମେଘ ମଣ୍ଡପ ମୋ କପାଳେ ଅଛି ।୮।
ଏତେ ଶୂନ୍ୟେ ଧାତା ଦେଇଛି ମୁକୁ । ମିଛେ ଆଦରୁଛୁ କମ୍ପା କର୍ମକୁ ॥

ପର ପୁରୁଷରେ କରନ୍ତୁ ଘର । ସେମାନେ ଥିଲେ କି ଦୁଃଖ ଭୋଗର ।୧୦। ଖୁଲ୍ଲଣା ବୋଲେ କି ବୋଇଲୁ ତୁହି । କେଉଁ ପର ପୁରୁଷରେ ମୁଁ ଯାଇ ॥ ନୟନା ବୋଲେ ତୁ ଶୁଣ ସୁନ୍ଦରୀ । ଯେବେ ପୁରୁଷେ ନାହିଁ ପ୍ରୀତି କରି ॥ କାହୁଁ ଏତେ ଧନ ଅଣିଲୁ କହ । ତେବେ ସିନା ଯିବ ମୋର ସନ୍ଦେହ ॥ ଖୁଲ୍ଲଣା ବୋଲେ ମୋ କପାଳେ ଥିଲା । ଏତେ ଧନ ମୋତେ ପ୍ରାପତ ହେଲା । ୧୪ । ନୟନା ବୋଲଇ ଶୁଣ ସୁନ୍ଦରୀ । ଚମ୍ପୂ ଫାଳକେ ନଦୀ ହୁଅ ପାରି । ୧୫ । ତେଣୁ ଜାଣିବ ତୋ କପାଳେ ଥିଲା । ଅଜ କାହିଁପାଇଁ ଦଣ୍ଡିବ ଭଲା । ୧୬ । ତା ଶୁଣି ଖୁଲ୍ଲଣା ବୋଲେ ଉତ୍ତର । ଚମ୍ପୂ ଫାଳକେ କେହ୍ନେ ହେବ ପାର । ୧୭ । ଅପସ୍ୱତ କଥା କହୁଛ ଏହା । କଲ୍ଲ କର୍ମ କହ କରିବ ତାହା । ୧୮ । ନୟନା ବୋଲେ ତୁ ନୋହିଲେ ପାର । ଗାଡ଼ିରେ ତୋତେ ପକାଇବି ମାରି । ୧୯ । ଶୁଣି ଖୁଲ୍ଲଣା ଚକିତେ ହୋଇଲା, ମନରେ ମଙ୍ଗଳା ନାମ ଧଇଲା । ୨୦ । ଖୁଲ୍ଲଣାର ବାନ୍ତା ଜାଣିଲେ ସେହି । ମଙ୍ଗଳା ଡ଼ାକିଲେ ଅକାଶେ ଥାଇ ।୨୧। ଅଟଲ୍ଲ ଖୁଲ୍ଲଣା ତୁ ବିରସ ନୁହ । ମୋ ନାମ ଧରି ନଦୀ ପାରି ହୁଅ । ୨୨ । ଖୁଲ୍ଲଣାକୁ କହି ମଙ୍ଗଳା ମାତ । ଅଷ୍ଟ କାନ୍ତାମାନଙ୍କୁ ଧାଇ ଅଗ୍ରତ । ୨୩ । ବୋଇଲେ ତୁମ୍ଭେ ଏହିକ୍ଷଣି ଯିବ । ଖୁଲ୍ଲଣାକୁ ସାହାପକ୍ଷ ହୋଇବ । ୨୪ । ତାକୁ ଦଣ୍ଡୁଛି ନୟନା ସୁନ୍ଦରୀ । ତା ସଙ୍ଗେ ଥିବ ତୁମ୍ଭେ ବାସକରି ।୨୫। ସେ ଚମ୍ପୂଫାଳକୁ ବଜ୍ର କରିବ । ଖୁଲ୍ଲଣା ତହିଁ ପାରି ହୋଇଯିବ । ୨୬ । ଖୁଲ୍ଲଣା ଦୁଃଖ ନିବାରଣ ହେଲେ । ତୁମ୍ଭେ ଆସିବ ମୋ ପୁରକୁ ଚଳେ । ୨୭ । ଶୁଣି କାନ୍ତାମାନେ ହୋଇଲେ ହରଷ । ଖୁଲ୍ଲଣା ଅଙ୍ଗରେ କଲେକ ବାସ । ୨୮ । ସ୍ୱପନେ ମୋତେ ଯାହା ଦୃଶ୍ୟ ହେଲା । ଭବାଣୀ ଦୀନ ଉଦାସୀ କହିଲା ॥

---

## ସପ୍ତଚତ୍ୱାରିଂଶ ଛାନ୍ଦ

ରାଗ—କଳଶା ।

ଯହୁଁ କାନ୍ତାମାନେ ରହିଲେ ଖୁଲ୍ଲଣା ଅଙ୍ଗର । ତତକ୍ଷଣେ ଉଚାଟ ହୋଇଲା ମନ ତାର । ୧ । ଚମ୍ପୂଫାଳେ ନେଇଣ ନଦୀରେ ମେଲି ଦେଲେ । ଆପଣେ

ଯାଇଣ ତାର ଉପରେ ବସିଲେ ।୨। ଇତ୍ୟାଦି ମାନେ ତାଙ୍କୁ ଠେକ ଧର-ଛନ୍ତି । ଏତେ ତ ମଙ୍ଗଳା ମାତା ଯାହା ହୋଇଛନ୍ତି । ୩ । ମାତାଙ୍କୁ ମନରେ ଧର ଖୁଲଣା ସୁନ୍ଦରୀ । ଏଥିଉପରେ ବସିଣ ନଦୀକି ହେଲେ ପାର ।୪। ସାତ ଦଣ୍ଡା ପାର ହୋଇ ଅଏସେ ଉପରକୁ । ପାଦେ ପାଣି ଲାଗିନାହିଁ ଦେଖାଇଲେ ତାଙ୍କୁ ।। ଦେଖିକରି ସମସ୍ତେ ଯେ ହୋଇଲେ ହରଷ । ବୋଇଲେ ଢଳାଙ୍କେ ନାହିଁ ଖୁଲଣାର ଦୋଷ ।୬। କେତେ କେତେ ସତୀମାନେ ଜଗତରେ ଥିଲେ । ସେମାନେ ଏମନ୍ତ କଥା କ୍ଷିତରେ ନ କଲେ । ୭ । କର୍ଣ୍ଣଯୁଗେ ଶୁଣିବାକୁ ବିପରୀତ ଏହା । ଧରଣୀ ମଧ୍ୟରେ ପୁଣି ଶୁଣା ନାହିଁ ତାହା ।୮। ସୀତା ଯେ ପରମସତୀ ଜଗତର ମାତ । ଅନେକ ପରୀକ୍ଷା ଦେଲେ ଶୁଣିଛୁ ଏମନ୍ତ । ୯ । ଦେଖଣାହାରୀ ସମସ୍ତେ ଏମନ୍ତେ କହିଲେ । ଧନ୍ୟ ଧନ୍ୟ ଖୁଲଣା ସେ ବୋଲି ପ୍ରଶଂସିଲେ । ୧୦ । ତାହା ଶୁଣି ନସୁନା ଯେ ଖୁଲଣାକୁ ବୋଲେ, ବହୁତ ଯେ ହୁନର ଏ ଶିଖିଛୁ ବୋଇଲେ । ୧୧ । ଆଉର ପରୀକ୍ଷା ତୋତେ କରିବି ଯେ ମୁହିଁ । ମୋହର ପାଳ... ତୁହି ଯିବୁ କ ବଳାଇ । ୧୨ । ସୁତା ସପ୍ତ ଖିଅ ପରେ ଯେବେ ଯିବୁ ବୁଲି । ତେବେ ମୁଁ କହିବି ତୋତେ ମହାସତୀ ବୋଲି । ୧୩ । ନୋହିଲେ ତୋହର ଶିର ହାଣିବି ଖଡ଼ଗେ । କେ ଅବା ନେଇଣ ତୋତେ ରଖିବ ମୋ ଆଗେ ।୧୪। ଖୁଲଣା ବୋଇଲା ତୁହି ଶୁଣ ଲୋ ଡଉଣୀ । ସାତ ଖିଅ ସୁତାପରେ କେହ୍ନେ ଯିବ ପୁଣି । ୧୫ । ମାନବ ହୋଇଣ କେହୁ କରିଅଛି ଏହା । କେଉଁ ଶାସ୍ତ୍ରେ ଅଛି ଅବା ଜାଣିଅଛୁ ଏହା ।୧୬। ନସୁନା ବୋଇଲା ଏହା ଶାସ୍ତ୍ରରେ ତ ନାହିଁ । ସତୀପଣ ତୋହର କେମନ୍ତେ ଜାଣିବଇଁ । ୧୭ । ଏମନ୍ତ ପ୍ରକାରେ ସେ ଯେ ତାହାକୁ କହିଲା । ସୁତା ଲୋଟି ଗୋଟି ସେ ଯେ ବେଗେ ଅଣାଇଲା ।୧୮। ଏ ପାରି ସେ ପାରି ପୁଣି ପୋତଇଲେ ଖମ୍ବ । ସାତ ଖିଅ ସୁତା ତହିଁ ବାନ୍ଧିଲେକ ଦମ୍ଭ ।୧୯। ବୋଇଲା ଏଥିରେ ତୁ ଲୋ କରସି ଗମନ । ନ ଗଲେ ଏଥର ନଷ୍ଟେ ହେଉଣ ପରାଣ ।୨୦। ଏମନ୍ତ ପ୍ରକାରେ ଯହୁଁ ନସୁନା ବୋଇଲା । ତାହା ଶୁଣି ଖୁଲଣା ଯେ ସ୍ଥିରସ ହୋଇଲା ।୨୧। ମଙ୍ଗଳାଙ୍କୁ ଧ୍ୟାନ କରି ଆପଣା ମନରେ । ଦୁର

ଘାତ କେଶ୍ୱ ଯେ ଯେ ଧଇଲା ହସ୍ତରେ ।୨୨। ଉଭା ହେଲା ସାତଝିଅ ସୂତା-ପରେ ଯାଇଁ । ପବନୁ ପ୍ରଖରେ ଯେ ଗମନ କଲା ତହିଁ । ୨୩। ମଙ୍ଗଳାମାତା ଯାହାଙ୍କୁ ସାହା ହୋଇଛନ୍ତି । ତୁ କାହିଁ କେଉଣି ଛାର ଜାଣି ପାରିବୁ କା ।୨୪ ବୃନ୍ଦଭାଳମାନେ ସୂତାଙ୍କୁ ଧରିଛନ୍ତି ପୁଣି । ତାଙ୍କୁ କରିଛନ୍ତି ଯେ ଯେ ବଜ୍ରହୁଁ କଠିନ । ୨୫ । ସାତ ଭେଡ଼ା ତହୁଁ ଝୁଲିଗଲାକ ସୁନ୍ଦରୀ । ଉପରକୁ ଅସିଣ ଯେ ନମସ୍କାର କରି । ୨୬ । ଦେଖଣାହାରୀଏ ଦେଖି ଚକିତ ହୋଇଲେ । ଧନ୍ୟ ଧନ୍ୟ ଝୁଲଣା ଗୋ ବୋଲଣ ବୋଇଲେ ।୨୭। କଳିଯୁଗେ ଏହା-ଶୁଣିବାକୁ ଅସମ୍ଭବ । ଶାସ୍ତ୍ରରେ ଶୁଣିଣ ଏହା ନିନ୍ଦା ନ କରିବ ॥ ନ ବୋଲିବ ସବୁ କଥା ମିଛ ଅଟେ ଏହି । ଯେ ନିମନ୍ତେ ମହାଭୟ ମୋ ମନେ ଲାଗଇ ॥ ମୋହର କ ଗଲା ଯାହା କହିଲେ ମଙ୍ଗଳା । ସୁଜନ ଜନଙ୍କ ହାତେ ବାନ୍ଧି-ଦେଲେ ଭେଳା । ୩୧ । କହଇ ଭିକାରୀ ସନ୍ଧ୍ୟା କାଳରେ ଶୁଣିବ । ନାନା ଦୁଷ୍କୃତ ଯେ ଥିଲେ ତାହା ନ ରହିବ ।୩୧। ଧନ ଜନ ଗୋପ ଲକ୍ଷ୍ମୀ ଅବର ପାଇବ । ଅପୁତ୍ରିକ ଥିଲେ ପୁତ୍ର ପ୍ରାପତ ହୋଇବ ।୩୨। ସର୍ବ୍ବ ଝୁଲଣି ଛାନ୍ଦକୁ ମୁଁ କଲଇ ସମ୍ପୂର୍ଣ୍ଣ । ଅହେ ସୁଜ୍ଞ ଜନମାନେ ମୋ ଦୋଷ ନ ଘେନ ।୩୩।

---

## ଅଷ୍ଟଚତ୍ୱାରିଂଶ ଛାନ୍ଦ

ରାଗ—କଲଣା ।

ଯହୁଁ ସୂତାପରେ ଝୁଲିଗଲା ସେ ସୁନ୍ଦରୀ । ଚକିତ ହୋଇଲା ଯେ ନସୂନା ଦେଖି କରି । ୧ । କୋହିଲେ ସୁନ୍ଦର ତୁହି ନ ଜାଣୁ କ ଟୋକୀ କାହିଁ ପାଇଁ ଘେନିଗଲୁ ଦୁବ ସାତ କେରା । ୨ । ସେହି ଦୁବ ପରେ କ କ ମନ୍ତ୍ର ଅଛୁ କରି । ହସ୍ତରେ ଘେନିଣ ତୁହି ଗଲୁ ସିନା ଝୁଲି । ୩ । ଆଉରି ପରୀକ୍ଷା ଅଛି ନେବଇଟି ମୁହିଁ । ସେଥିରୁ ରହିଲେ ସତୀପଣ ଜାଣିବଇଁ । ୪ । ସିନ୍ଦୂର ବନ୍ଧରେ ଯେବେ କରିବୁ ଗମନ । ତେବେ ଯାଇ ସମ୍ମତେ ହୋଇବ ମୋର ମନ । ୫ । ପାଦରେ ଯେବେ ସିନ୍ଦୂର ଲାଗିବ ତୋହର । ତେବେ ମୁଁ ଜାଣିବି ସତୀ ପଣ ନୁହେ

ତୋର । ୭ । ଏମନ୍ତ ପ୍ରକାରେ ସେ ଯେ ତାହାଙ୍କୁ କହିଲା । ସତ୍ତୁସି ମନ୍ଦଣ
ଯେ ସିନ୍ଦୂର ଅଣାଇଲା । ୭ । ଯତନରେ ସିନ୍ଦୂରକୁ ଦେଲାକ ବାଣ୍ଟିଇ ।
ବୋଇଲା ଏଥିରେ ବାଟ ଫୁଲିଯାଅ ତୁହି । ୮ । ତାହା ଶୁଣି ଖୁଲଣା ଯେ
ହରଷ ହୋଇଲା । ଅନ୍ତର୍ଗତେ ମଙ୍ଗଳା ନାମକୁ ସୁମରିଲା ॥ କାତ୍ୟାୟିନୀ-
ମାନେ ତାଙ୍କୁ ବେଗେ ଠେକ ନେଲେ । ଦ୍ୱାଦଶ ଅଙ୍ଗୁଳ ପଥ ଛଡ଼ା
ଚଳାଇଲେ ।. ୧୦ । ସମସ୍ତଙ୍କୁ ଦିଶୁଅଛି ସିନ୍ଦୂରେ ଫୁଲୁଛି । ମାୟା କରୁଛନ୍ତି
ଯହିଁ ସେ ପର୍ବତବର୍ତ୍ତି । ୧୧ । ଏତେ ଛଡ଼ା ମଧ୍ୟରେ ଖୁଲଣା ପଥ ଫୁଲେ ।
କାତ୍ୟାୟିନୀମାନେ ସିନ୍ଦୂରକୁ ଛୁଆଁଇଲେ । ୧୨ । ଛିନ୍ନ ଭିନ୍ନ ହୋଇଣ ଯେ
ପଡ଼ିଲା ସିନ୍ଦୂର । ଖୁଲଣା ଉଭା ହୋଇଲା ସଭାର ମଧ୍ୟର । ୧୩ । ବେନି
ପାଦ ଦେଖାଇଲା ସଭା ମଧ୍ୟେ ଯାଇ । ତିଳେମାତ୍ର ସିନ୍ଦୂର ପାଦରେ ଲାଗି
ନାହିଁ । ୧୪ । ସଭାଜନେ ଦେଖିକରି ଆଶ୍ଚର୍ଯ୍ୟ ହୋଇଲେ । ଖୁଲଣାର
ଦୋଷ ନାହିଁ ବୋଲିଣ ବୋଇଲେ । ୧୫ । ନୟନା ବୋଇଲା ଆଲୋ
ଶୁଣ ମୋର ବାଣୀ । ଅଧିକ ପରୀକ୍ଷା ତୋତେ କରିବି ମୁଁ ପୁଣି । ୧୬ ।
ଖଣ୍ଡା ଦାଢ଼ପରେ ଯେବେ ଫୁଲିଯିବୁ ବାଟ । ତେବେ ତୋର ସତୀପଣ
ଜାଣିବି ନିଶ୍ଚୟ ।.୧୭ । ତାହା ଶୁଣି ଖୁଲଣା ଯେ ହରଷ ହୋଇଲା । ଫୁଲି-
ଯିବି ବୋଲି ମଙ୍ଗଳାଙ୍କୁ ସୁମରିଲା ।୧୮। ତତକ୍ଷଣେ ଖଣ୍ଡା ଗୋଟି ବସାଇଲା
ଆଣି । ବୋଇଲା ଏଥିରେ ଫୁଲିଯାଅ ଲୋ ତରୁଣୀ । ୧୯ । ଅଦୃଶ୍ୟରେ
କାତ୍ୟାୟିନୀ ଯେହୁ ଖଣ୍ଡା ଧରେ । ଖଣ୍ଡାଦାଢ଼ ପରେ ଫୁଲିଗଲା ସାତ ବାରେ ॥
ଉପରେ ଆସିଣ ପାଦ ଦେଖାଇଲା ଯେହ୍ନେ । ଦୁଇ ଚରଣ ତାହାର କାଟି
ହୋଇ ନାହିଁ ।୨୧। ଦେଖିକରି ନୟନା ଯେ ହୋଇଲା ଚକିତ । ବୋଇଲା
ସମସ୍ତେ ଶୁଣ ଦେଇ ଏକ ଚିତ୍ତ । ୨୨ । ବିଧାତା ସୁନ୍ଦର ଜାଣେ ଖୁଲଣା-
ସୁନ୍ଦର । ଏହା ଦେଖି ହୋଇଲେ ସମସ୍ତେ ଚମତ୍କାର ।୨୩। ନୟନା ବୋଲଇ
ଏବେ ଶୁଣ ମୋର ବାଣୀ । ଅଧିକ ପରୀକ୍ଷା ମୁହିଁ କରିବଇଁ ପୁଣି । ୨୪ ।
ଛୁଞ୍ଚି ମୂନ ପରେ ଯେବେ ଫୁଲି ଯିବୁ ବାଟ । ତେବେ ମୁଁ ଜାଣିବି ତୋର
ସତୀପଣ ଶ୍ରେଷ୍ଠ । ୨୫ । ଏମନ୍ତ ପ୍ରକାରେ ସେ ଯେ ତାହାଙ୍କୁ ବୋଇଲା ।

ଅନେଶ୍ବର ଘର ସେ ଯେ ଛୁଇଁ ଅଣାଇଲା । ୨୬ । ବାନ୍ଧ ଏକ ଅପୂର୍ବରେ ପୋଟଳୀକ ସବୁ । ବୋଇଲା ଏଥିରେ କେଉଁ ପଥ ଗୁଲ୍‌ଯିବୁ । ୨୭ । ଏହା ଶୁଣିଣ ଖୁଲଣା ମନରେ ବିମୁଖ । ଅନ୍ତର୍ଗତେ ବିଶୁରେ ମଙ୍ଗଳାମାତା ରଖ । ୨୮ । କାତ୍ୟାୟିନୀ ତାହା ହୃଦେ ଛନ୍ତି ବାସ କରି । ଉଚ୍ଚାଠ ସେ କରାଇଲେ ଖୁଲଣାସୁନ୍ଦରୀ । ୨୯ । ଛୁଇଁ ମୂନ ପରେ ସେ ଯେ ଗୁଲ୍ ଗଲା ବାଠ । ଅରକୁ ଯେ ଯାଉ ଅର ଦେଖିଣ ଉଲ୍ଲଠ । ୩୦ । ଉପରେ ଅସିଣ ପାଦ ଦେଖାଇଲା ବାଳୀ । ଦୁଇ ଚରଣେ ତାହାର ଲଗିଅଛି ଧୂଳି । ୩୧ । ଦେଖିଣ ସଭାର ଲୋକ ହୋଇଲେ ଚକିତ । ବୋଇଲେ ଏ ମହାସତୀ ଅଟଇ ମୂକତ । ୩୨ । ଶୁଣ ହେ ସୁଜନ ଜନ ଅପୂର୍ବ କାହାଣୀ । ଏଥୁଅନନ୍ତରେ ଯେ ନୟନା ପାଠରାଣୀ । ୩୩ । ବୋଇଲା ଖୁଲଣା ଶୁଣ ମୋହର ଉତ୍ତର । ଏତେ ଏତେ ପରୀକ୍ଷା ତୁ ଦେଲୁ ନିରନ୍ତର । ୩୪ । ଅଧିକର ଏକ ପରୀକ୍ଷା ଦେବୁ ଯେବେ ମୋତେ । ତେବେ ସତୀପଣରେ ମୁଁ ଜାଣିବଇଁ ତୋତେ ॥ ଖୁଲଣା ବୋଇଲା କସ କହୁଅଛୁ ତୁହି । ଏତେ ଏତେ କଥାରେ ତୋ ମନେ ଦୟା ନାହିଁ । ୩୫ । ନୟନା ବୋଇଲା ଗୁହିଁ ଖୁଲଣା ଅଗ୍ରତ । ଲୁହା ଗୁଉଳରେ ମୋତେ ରାନ୍ଧି ଦେବୁ ଭାତ । ୩୬ । ଯାହାକୁ ମଙ୍ଗଳା ମାତା ଦେଇଛନ୍ତି ବୁଦ୍ଧି । ସେ କି ନ କରି ପାରିବ ଅସିଦ୍ଧକୁ ସିଦ୍ଧି ।୩୮। ବୋଇଲା ଉଉଣୀ ତୁ ଗୁଉଳ ଅଣ ଯାଇଁ । ଏହିକ୍ଷଣି ତୋତେ ଭାତ ରାନ୍ଧି ଦେବି ମୁହିଁ । ୩୯। ତୁ ଯାହା କହିଲୁ ଏହି କଥା ନୋହେ ସତ୍ୟ । ଅସିଦ୍ଧ କଥା ଅଟଇ ପଚୁର ଜଗତ । ୪୦ । ଯେତେ ଯେତେ ଦଣ୍ଡ ମୋତେ ଦେଲୁଣି ଗୋ ତୁହି । ପାଷାଣ ପରାୟେ ସବୁ ସହୁଅଛି ମୁହିଁ ।୪୧ ତୁ ବଡ଼ଉଉଣୀ ଅଟୁ ମାତାର ସମାନ । ତେଣୁ ସିନା କରୁଛି ମୁଁ ତୋହର ବଚନ ।୪୨। ନ କଲେ ଅବା ତୁ ମୋତେ କି କରି ପାରନ୍ତୁ । ନ ଜାଣିଲା ପଣେ ବିଷ ଦେଇଣ ମାରନ୍ତୁ ।୪୩। ମୁହିଁ ମନ କଲେ ତୋତେ ପକାନ୍ତିଣି ମାରି । ପଶ୍ଚାତେ ଅଧର୍ମ ସିନା ହୋଇବ ମୋହର ।୪୪। ତୁ ପଛକେ ଦଣ୍ଡ ଦିଅ ସହୁଅଛି ମୁହିଁ । ତୋର ବଡ଼ଲୋକ ପଣ ସର୍ବଦା ଯେ ରହୁ । ୪୫ ।

ଶୁଣିକରି ନମ୍ବୁନା ଯେ କୋପଭରେ ହେଲା । ଖଡ଼ଗରେ ତୋର ଶିର
ହାଣିବି ବୋଇଲା ।୪୬। ବୋଇଲା ଲୋ କେତେ ଠାଣ କରୁଛୁ ମୋ ଆଗେ
ଲୁହା ଶୃଙ୍ଖଳରେ ହାତ ବାନ୍ଧି ଦିଅ ବେଗେ ।୪୭। ଏମନ୍ତ କହିଣ ଲୁହା
ଶୃଙ୍ଖଳ ଅଣାଇ । ଖୁଲ୍ଲଣା ହସ୍ତରେ ବେଗେ ସମର୍ପିଲା ନେଇ ।୪୮। ଶୁକ୍ଳ
ବସ୍ତ୍ର ପିନ୍ଧିଣ ଯେ ଅନ୍ନକୁ ରାନ୍ଧିଲା । ମଙ୍ଗଳା ପ୍ରସାଦେ ଅନ୍ନ ତତକ୍ଷଣେ
ହେଲା ।୪୯। ଦେଖିଣ ସମସ୍ତ ଜନେ ତରସ୍ତ ହୋଇଲେ । ଏ କି ଉପ-
ଘାତ ବୋଲି ମନେ ବିଚାରିଲେ । ୫୦ । ନମ୍ବୁନା ବୋଇଲା ଶୁଣ ଖୁଲ୍ଲଣା
ଅଦ୍ଭୁତ । ଲୁହା ଶୃଙ୍ଖଳରେ ମୋତେ ବାନ୍ଧିଦିଅ ହାତ ।୫୧। ତେନ୍ତୁଳି ପତ୍ରରେ
ଯେବେ ପରଷିଣ ଦେବୁ । ତେବେ ଯାଇ ସତୀପଣେ ଧ୍ୱଜା ଉଡ଼ାଇବୁ ॥
ତତକ୍ଷଣେ ତେନ୍ତୁଳିର ପତ୍ର ଅଣାଇଲା । ସମସ୍ତ ଜନଙ୍କୁ ଏକସ୍ଥାନେ ବସା-
ଇଲା ।୫୩। ବୋଇଲା ଯେ ଖୁଲ୍ଲଣା ତେନ୍ତୁଳିପତ୍ର ନେଇ । ସମସ୍ତଙ୍କୁ ଗୋଟିଏ
ଗୋଟିଏ ପତ୍ର ଦେଇ ।୫୪। ଅନ୍ନ ତରକାରୀ ପରଷିଲା ସୁନ୍ଦରୀ । ହାତକୁ
ରଖି ପତ୍ରରେ ଅଧିକ ବଳାଇ ।୫୫। ସମସ୍ତେ ବୋଇଲେ ନିଶ୍ଚେ ଅଟେ ମହା-
ସତୀ । ଅନ୍ନଆଦି ଭୁଞ୍ଜିକରି ହୋଇଲେ ତୃପତ ।୫୬। ନୋହିଲେ ଏତେ
ଧଇର୍ଯ୍ୟ କାହାର ହୁଅନ୍ତା । କେ ଅବା ତେନ୍ତୁଳି ପତ୍ରେ ଅନ୍ନ ପରଷନ୍ତା ॥
ଆଉ ଦଣ୍ଡ ନ ଦିଅ ଖୁଲ୍ଲଣା ସୁନ୍ଦରୀକି । ଶୁଣି ନମ୍ବୁନା ବୋଲଇ ଉତ୍ତର
ତାହାଙ୍କୁ ।୫୮। ପ୍ରଭାତୁ ଉଠି ସୁନ୍ଦର କରନ୍ତି ବହୁତ । ଏ ଯେତେ ସତୀ
ବୋଲାଉ ଅଛି ଏ ଜଗତ । ୫୯ । ପରପୁରୁଷଙ୍କୁ ଆଣି ଘରେ ରଖିଥିଲା ।
ମୋର ଝିଅ ଶୁଣିକରି ଘଉଡ଼ାଇ ଦେଲା । ୬୦ । ତାହାକୁ ଟାଣି ମୁହିଁ
ହାଣି ପକାଇବି । ଅଗ୍ନିର ପରୀକ୍ଷା କାଲି ମୁହିଁ କରି ନେବି । ୬୧ । ଜଉ-
ଶାଳ ଘରେ ତାକୁ ରଖିବି ଯତନେ । ତହିଁରୁ ବାହାରିବ ଏ ଯେ କେଉଁଣ
ବିଧାନେ । ୬୨ । ସେଥିରୁ ବର୍ତ୍ତିଲେ ଆଉ ନ ଦଣ୍ଡିବି ତାକୁ । ସାତ ସାତ
ବାର ସାକ୍ଷୀ ଦେଉଛି ଧର୍ମଙ୍କୁ । ୬୩ । ସଭାଜନେ ବୋଇଲେ ଏ ଅଟେ
ଉପଘାତ । ଜଉଶାଳ ଘରେ ସେ ଯେ ବଞ୍ଚିବ କେମନ୍ତ । ୬୪ । ଅଗ୍ନିର
ଭିତରେ ଅଉ କି ସୁନ୍ଦର ଅଛି । ପୁର ଜନ ତହିଁରୁ ଯେ କେ ବଞ୍ଚି

ପାରୁଛି । ୬୫ । ତହିଁରେ ଯେବେ ପରୀକ୍ଷା ଦେବ ଏ ତରୁଣୀ । ତେବେ
ସିନା ଜାଣିବ ଯେ ସତୀପଣ ପୁଣି । ୬୭ । ନମୁନା ମୁଖରୁ ଏହା ଖୁଲଣା
ଶୁଣିଲା । ମଙ୍ଗଳା ନାମ ସୁନ୍ଦର ନାମଶ୍ରେ ରହିଲା । ୬୮ । ଏଣେ ଖୁଲଣା
ଅଙ୍ଗ କାତ୍ୟାୟିନୀ ଗଲେ । ମଙ୍ଗଳା ନିକଟେ ଯାଇ ପ୍ରବେଶ ହୋଇଲେ ॥
ହେ ମାତ ଶୁଣ ବାରେ ଆମ୍ଭର ସନ୍ଦେଶ । ଚଣ୍ଡୀ ପାଳକରେ ନଦୀ ପାର
କଲୁଁ କେଶ । ୬୯ । ଯାଉଥିଅ ସୁଭାପରେ ଚଲାଇଲୁ ବାଟ । ସ୍ୱପରୀତ କଥା
ଏ ଯେ ଶୁଣସି ଗୋ ଶ୍ରେଷ୍ଠ । ୭୦ । ଲୁହା ଶୃଙ୍ଖଳରେ ଭୂତ ବନ୍ଧାଇଲା
ପୁଣି । ତେନ୍ତୁଳି ପତ୍ରରେ ପରଷିଲ୍କ ତରୁଣୀ । ୭୧ । ଖଣ୍ଡା ଗୋଟିଏ ଏକ
ଆଣି ଦେଲା ତା ନିକଟ । ପୁତ୍ରି ଲୁଗିମାନେ ତାକୁ ଚଲାଇଲୁ ବାଟ । ୭୨ ।
ସେ ଖଣ୍ଡା ଧାରରେ ତାକୁ ବାଟ ଚଲାଇଲୁ । ସିନ୍ଦୂର ବନ୍ଧୁଁ ତାକୁ ପାର
ଆମ୍ଭେ କଲୁ । ୭୩ । ଏତେ ଦୁର୍ଗତିରୁ ଆମ୍ଭେ ତାର ଦୁଃଖ ନାଶୁ । ଏବେ
ସେ କହିଲା ଜଉଶାଳ ଘରେ ପଶୁ । ୭୪ । ଦେବ ସୁର ନର ହେଲେ
ଯିବେ ତହିଁ ପୋଡ଼ି । ଏ କଥା ଶୁଣିଣ ଆମ୍ଭେ ଅଇଲୁ ବାହୁଡ଼ି ।୭୫। କଲା
କର୍ମ ସିନା କଲୁ ଆମ୍ଭେ ତୋ ଆଜ୍ଞାରେ । ଅଧିକ କଥା କରିବୁ କେମନ୍ତ
ପ୍ରକାରେ । ୭୬ । ଆମ୍ଭ ପଞ୍ଚପ୍ରାଣ ଯେ ତହିଁରେ ପୋଡ଼ିଯିବ । ତୋହର
ବ୍ୟତୀତ ଆନ କେହି ନ ରଖିବ । ୭୭। ତାହା ଶୁଣି ମଙ୍ଗଳା ଯେ ହରଷ
ହୋଇଲେ । ଏ ଦୁଃଖରୁ ତାହାକୁ ମୁଁ ରଖିବି ବୋଇଲେ ।୭୮। ଶୂନ୍ୟରେ
ଥାଇ ମଙ୍ଗଳା ବୋଲନ୍ତି ବଚନ । ସ୍ୱଅର୍ଥେ କେତେ ଖୁଲଣା କରୁଛୁ
ରୋଦନ । ୭୯ । ଏତେ ଦୁଃଖରୁ ଖୁଲଣା ରଖିଛି ଉଦ୍ଧରି । ଏ ଥର
ସ୍ୱପଣରୁ କି ମୁଁ ରଖି ନ ପାରି । ୮୦ । ମୁହିଁ ଥାଉଁ କାହାକୁ କପାଇଁ
ତୋର ଡର । ନିର୍ଭୟ ହୋଇଣ ତୁହି ପଶ ଅନଳର । ୮୧ । ଏତେ
କହି ତାର ପାଶେ ପ୍ରବେଶ ହୋଇଲେ । ମୁଖରେ ଚୁମ୍ବନ ଦେଇ କୋଳେ
ବସାଇଲେ । ୮୨ । ପତି ପୁତ୍ର ଆସିବେ ତୋହର ପରଦିନ । ନମୁନା-
ସୁନ୍ଦରୀ ଦୁଃଖ ଦେଖିବୁ ବହନ । ୮୩ । ଗଣ୍ଡକୀନଦୀରେ ତୁ ସ୍ନାହାନ
କର ଯାଇଁ । ତୋ ସଙ୍ଗେ ରହିଲି ମୁଁ ଯେ ଅଦୃଶ୍ୟ ସେ ହୋଇ । ୮୪ ।

ଅଜ୍ଞା ଶୁଣି ଖୁଲଣା ଯେ ବୋଲଇ ଉତ୍ତର । ସ୍ନାହାନ କରିବ ମୁହିଁ
ଗଣ୍ଡକୀ ନଦୀର ।୮୫। ତତକ୍ଷଣେ ବାହାର ହୋଇଣ ତହୁଁ ଗଲା ।
ଗଣ୍ଡକୀ ନଦୀରେ ଯାଇଁ ପ୍ରବେଶ ହୋଇଲା ।୮୬। ମଙ୍ଗଳା ମାତାଙ୍କୁ
ତହୁଁ ଚେତାଇଦେଲା ଜଳ । ଧର୍ମ ନିରଞ୍ଜନ ମାତା ପିତା ମହୀପାଳ ।୮୭।
ସାହା ହୋଇଥାଅ ମୋତେ ଦଶଦିଗପାଳ । ଦୋଷଥିଲେ କାଳଦେବ
ମୋତେ ଏ ଅନଳ ।୮୮। ସାହାହୋଇ ଥାଅ ଜଗତର ନରନାରୀ ।
ଅନଳେ ପଶିବି ମୁହିଁ ବୋଲି ହରବର ।୮୯। ହୁଳହୁଳି ଦିଅ ମାତା
ସୀମନ୍ତିନୀଗଣେ । ଦୋଷଥିଲେ ଅନଳରେ ହୋଇବ ଦହନ ।୯୦।
ଅଦୋଷରେ ଯେତେ ଦଣ୍ଡ ଦେଲଣି ସେ ଦେଉ । ପତିକି ଯେହୁ
ଦେଖନ୍ତେ ତାର ପ୍ରାଣ ଯାଉ ।୯୧। ସୁଖଭୋଗମାନ ମର୍ତ୍ତ୍ୟେ ନ ପାରିବ
କରି । ଅଉ କସ ଶାପ ଦେବ ଭଉଣୀ ମୋହରି ।୯୨। ଏମନ୍ତ ପ୍ରକାରେ
କହି ଖୁଲଣା ସୁନ୍ଦରୀ । ଯାଇ କରି ପଶିଲା ସେ ଜଉଶାଳ ଘର ।୯୩।
ସାତ ବର୍ଷର ଘରରେ ଜଉ ଅଛି ପୁରି । ତହିଁ ଭିତରେ ପଶିଲା ଖୁଲଣା
ସୁନ୍ଦରୀ ।୯୪। ସଭାଜନମାନେ ଦେଖି କାତରହୋଇଲେ । ନିଷ୍ଠୁରେ ଖୁଲଣା
ଏବେ ମରିବ ବୋଇଲେ ।୯୫। ନମୁନା ସୁନ୍ଦରୀ ଦେଖି ହୋଇଲା
ହରଷ । ଆପଣେ ନେଇଣ ଅଗ୍ନି ଜାଳି ଚଉପାଶ ।୯୬। ପ୍ରଜ୍ୱଳିତ ହୋଇ
ଯେ ଉଠିଲା ହୁତାଶନ । ଦେଖିକରି ସର୍ବଜନ ପଳାଇଲେ ପୁଣି ।୯୭।
ଦୂରେ କୋଶ ଛଡ଼ା ଚଉପାଶେ ଦେଖୁଛନ୍ତି । କେହୁ ବା ରୋଦନ କରେ
ଗୃହିଁଣୀ ଧରନୀ ।୯୮। ପଣ୍ଡିତ ଘୋଡ଼ାଇ ଯାକୁ ରଖିଛନ୍ତି ମାଏ ।
ନମୁନା ସୁନ୍ଦରୀ କାର୍ଯ୍ୟ କରିବାକୁ ପାଏ ।୯୯। ଏଥୁ ଅନନ୍ତରେ ସୁଜ୍ଞଜନ-
ମାନେ ଶୁଣ । ସୋମନାଥ ଉଗର ଯେ ଯାଇଥିଲା ପୁଣ ।୧୦୦। ଦେଢ଼
ଦିନେ ବୋଇତକୁ ବେତାଳେ ଯେ ନେଲେ । ଧନେଶ୍ୱର ରାଜା ପାଶେ
ପ୍ରବେଶ ହୋଇଲେ ।୧୦୧। ଛଅଦିନ ଛମାସ ବାଟ ଛକ ଓଳା ।
ଏମନ୍ତ ମାୟା କଲେ ସେ ସିନ୍ଧୁର ଦୁଲଲୀ ।୧୦୨। ସୋମନାଥ ବୋଲଇ
ଶ୍ରୀଧର ମୁଖ ଚୁହିଁ । ତୁମ୍ଭ ମାତାଙ୍କ ଆନନ୍ଦ କି କହିବ ମୁହିଁ ।୧୦୩।

ଅରତ ଙ୍କରର ଘର ପାଖରେ ନାହାନ୍ତି । ସେ ସ୍ଥାନରେ ଅନେକ ଯେ ପଡ଼ିଲ ଦୁର୍ଗତି । ୧୦୪ । ମଙ୍ଗଳା ତହୁଁ ଉଦ୍ଧାର ଆଣିଲେକ ପୁଣି । ରଜକ ଛୁଠରେ ଘର କରଛନ୍ତି ଜାଣି । ୧୦୫ । ଉଆସ କରଣି ଛନ୍ତି ଗୃହ ଯୋଜନର । ହସ୍ତୀ ଘୋଡ଼ା ଶୁକ ସାରୀ ଅବର୍ ମୟୂର । ୧୦୬ । ମଙ୍ଗଳାଙ୍କ ଦୟାରୁ ପାଇଣ ଛନ୍ତି ଧନ । ଦାସୀ ପରିବାରୀ ଯେ ପୋଇଲ ଆଦି ପୁଣି । ସମସ୍ତେ ଆନନ୍ଦ ହୋଇ ସେଠାରେ ଅଛନ୍ତି । ତୁମ୍ଭର ନାମରେ ମାତା ନିତ୍ୟ ସ୍ମରୁଛନ୍ତି । ୧୦୮ । ଆମ୍ଭଙ୍କୁ ଦେଖିଣ ମାତା ଆନନ୍ଦ ହୋଇଲେ । ତୁମ୍ଭର କୁଶଳ ସେନ୍ତୁ ସକଳ ପୁଚ୍ଛିଲେ । ୧୦୯ । ସକଳ ବୃତ୍ତାନ୍ତ ତାଙ୍କୁ ମୁହଁ କହିଲଇଁ । ଶାଢ଼ୀ ସୁନାବଳା ମୋତେ ଅଣି ଦେଲେ ସ୍ନେହ । ୧୧୦ । ମଙ୍ଗଳା ଆସି ମୋତେ ବିଦାକଲେ ବହନେ । ଛନମାସ ପଥକୁ ଅଇଲ ଛନଦିନେ । ୧୧୧ । ହରଷରେ ମୋତେ ସେନ୍ତୁ ବିଦାକରିଦେଲେ ॥ ନନ୍ଦନଙ୍କୁ ଘେନିଆସ ମୋତେ ଯେ ବୋଇଲେ । ୧୧୨ । ତାହା ଶୁଣି ଶ୍ରୀଧର ଯେ ମନରେ ଆନନ୍ଦ । ମୁଖ ପ୍ରକାଶଇ ଯେହ୍ନେ ପୂର୍ଣ୍ଣିମାର ଚନ୍ଦ । ୧୧୩ । ସୁଦର୍ଶନ ରାଜା ପାଶେ ଶ୍ରୀଧର ଚଳିଲା । ମେଲାଣି ଦିଅ ପୁରକୁ ଯିବଇଁ ବୋଇଲା । ୧୧୪ । ତାହା ଶୁଣି ସୁଦର୍ଶନ ହରଷ ହୋଇଲା । ତହୁଁ ଯାଇଁ ରାଜା ରାଣୀ ପାଶରେ କହିଲା । ୧୧୫ । ଜାମାତା କହୁଛି ଯେ ପୁରକୁ ଯିବା ପାଇଁ । ବିଦା କରି ଦେବା କି ନ ଦେବା କହ ତୁହି । ୧୧୬ । ପାଟରାଣୀ ବୋଲେ ସ୍ୱାମୀ ଶୁଣ ମୋ ଉତ୍ତର । ପୁରକୁ ଯାଆନ୍ତୁ ଝିଅ ଜୋଇଁ ବିଦାକର । ୧୧୭ । ତାହା ଶୁଣି ସୁଦର୍ଶନ ଆନନ୍ଦ ହୋଇଲା । ଧନେଶ୍ୱରଙ୍କୁ ବହୁତ ବିନମ୍ର ହୋଇଲା । ୧୧୮ । ଦୁହିତା ସ୍ୱଭାବେ ମୋର ଅଟଇ ବାଳୁତ । ଦୋଷ ତାର କ୍ଷମା କରୁଥିବ ନରନାଥ । ୧୧୯ । ଆନନ୍ଦ ସ୍ୱରୂପା ଦେଶ ଅଟଇ ତୁମ୍ଭର । ମୋତେ କୀରତରେ ଦୟା କର ନୃପବର । ୧୨୦ । ତାହା ଶୁଣି ସୁଦର୍ଶନ ଆନନ୍ଦ ହୋଇଲେ । ଧନେଶ୍ୱର ରାଜାଙ୍କୁ ସେ ଆଲିଙ୍ଗନ କଲେ । ୧୨୧ । ଏଥୁ ଅନନ୍ତରେ ତୁମ୍ଭେ ଶୁଣ ସୁଜନର । ଧନେଶ୍ୱରଙ୍କୁ ମେଲାଣି ଦେଲେ ନୃପବର । ୧୨୨ । ଶ୍ରୀଧର

କୁମର ତାକୁ ଦେଲେକ ମେଲାଣି । ବଦାକଲେ ବେଗେ ସୁଦର୍ଶନ ନୃପମଣି । ୧୨୩। ତେତେବେଳେ ଶିଶୁ ଧର ମନରେ ପଡ଼ିଲା । ମଙ୍ଗଳାମାତା ମୋହର କେଉଁ ଆଡ଼େ ଗଲା । ୧୨୪ । ଚୈତ୍ରମାସ ହେଲା ଘୁଞ୍ଚି ଗଲେ ସେ କେଣିକି । ମୋତେ କିଏ ବୁଦ୍ଧି କହିଦେବ ସେ ଏଣିକି । ୧୨୫ । ଏମନ୍ତ ପ୍ରକାରେ ସେ ଯେ ରୋଦନ କରଇ । ମଙ୍ଗଳା ଜାଣିଲେ ସେ ଖୁଲଣା ପାଶେ ଥାଇ । ୧୨୬ । ଜଉଘର ଘରେ ଥାନ୍ତି ଖୁଲଣା ସଙ୍ଗର । ମାୟାବେଶେ ପ୍ରବେଶ ହୋଇଲେ ତତପର । ୧୨୭ । ବୋଇଲେ କମାଇଁ ଚିନ୍ତା କଲୁରେ କୁମର । ଘରକୁ ଘରଣୀ ତୋର ହେଲା ରେ ଶ୍ରୀଧର । ୧୨୮ । ସେଦିନୁ ବାଳକ ମୋତେ ମନୁ ପାଶୋରିଲୁ । ବୋଇଲେ ଶ୍ରୀଧର କମା ଚିନ୍ତା ତୁହି କଲୁ । ୧୨୯ । ଏମନ୍ତ ପ୍ରକାରେ ତାକୁ ମଙ୍ଗଳା ବୋଇଲେ । କୋଳରେ ବସାଇ ତାର ମୁଖେ ଚୁମ୍ବ ଦେଲେ । ୧୩୦ । ଏଥୁ ଅନନ୍ତରେ ଶୁଣ ଆହେ ସୁଜ୍ଞଜନ । ଯେ ଯାହାକୁ ମେଲାଣି ଦେଲାକ ସୁଦର୍ଶନ ।୧୩୧। ରାଜାର ଦୁହିତା ପିତାଠାରୁ ବିଦାହେଲା । ଅନେକ ପ୍ରକାରେ ଦାନ ଯଉତୁକ ନେଲା । ୧୩୨ । ଦୁହିତା ଚଳିଲା ପୁଣି ଧନୀହଂସପୁର । ଯେ ଯାହାକୁ ମେଲାଣି ମାଗିଲାକ ସେଠାର । ୧୩୩ । ଅଷ୍ଟମ ଖୁଲଣା ଛାନ୍ଦ ଶେଷ ସମ୍ପୂର୍ଣ୍ଣ ହୋଇଲା । ଧୀବର ଭିକାରୀ ଏହା ରସରେ କହିଲା । ୧୩୪ ।

---

## ଊନପଞ୍ଚାଶତ୍ ଛାନ୍ଦ

ରାଗ—ରାମକେରୀ

ରାଜାର ଦୁହିତା ଯାଇଁଣ ରାଣୀ ପାଶେ ମିଳିଲା । ଗର୍ଭଧାରୀ ମାତା ମୋହର ବିଦାକର ବୋଇଲା । ୧ । ଦଶମାସ ଧରି ଉଦରେ କେତେ କଷ୍ଟ ସହିଲୁ । ଏବେ ମାତା ମୋତେ ନେଇଣ ପର ଆଗୁଁରେ ଦେଲୁ ।୨। ଉଦର ଆଉଁସି ମୋହର କେଉଁ ଭୋଜନ ଦେବ । କଉତୁକେ ନାମ ଧରିଣ ମୋତେ କିଏ ଡାକିବ । ୩ । ମୁଁ କାହାକୁ ମାତା ଡାକିବି କହ ବୁଦ୍ଧି ଏଣିକି । ତୁମ୍ଭେ ତ ନିଶ୍ଚିନ୍ତେ ରହିବ ମୋତେ ଦେଇ ତେଣିକି । ୪ । ସୁତା ବାଣୀ

ଶୁଣି ଜନନୀ କ୍ରୋଧେ ରୋଦନ କଲା । ଦୁହିତାଙ୍କୁ କୋଳେ ବସାଇ ଶାନ୍ତ କରି କହିଲା । ୫ । ଜଗତର ଏହି ବେଭାର ଅସ୍ଥିର୍ବ୍ୟସ୍ଥ ହେଉଛି । କେ କାହାର ଅଟେ ବନିତା ମିଛ ମାୟା ଲାଗିଛି । ୬ । କାହା କପାଳେ କସ ଅଛି ତାହା ଜାଣିଛି କେହୁ । ମୁହିଁ ତୋତେ ଜନ୍ମ କରିଛି କର୍ମ ନ ଜାଣେ ଅଉ ।୭। କପାଳେ ତୋର ଯାହା ଥିବ ତାହା ଭୋଗ କରିବୁ । ଶାଶୁ ଶ୍ୱଶୁରଙ୍କ ସେବାରେ ମନ ରଖିଣ ଥିବୁ । ୮ । ଜନନୀ ଏମନ୍ତେ କହନ୍ତେ ସୁତା ତୋଷ ହୋଇଲା । ମେଲାଣି ମାଗିଣ ତୁରିତେ ମାଉସୀପାଶେ ଗଲା । ବୋଇଲାମାତାଙ୍କୁ ମୋହର ପର କରିବୁ ନାହିଁ । ଦେଇ ସପ୍ତବାର ନମସ୍କାର ତୋର ହିଂଅସି ମୁହିଁ । ୧୦ । ମାତା ଯେବେ ଚିନ୍ତା କରିବ ପ୍ରବୋଧିଣ କହିବୁ । ରାଗ ଅହଙ୍କାର ତାଠାରେ କେବେହେଁ ନ କରିବୁ ।୧୧। ନ ବୋଲିବୁ ଏ ସପତଣୀ ଅଟେ ମୋହର ପୁଣି । ପଞ୍ଚମନରେ ମାନିଥିବୁ ଏହି ବଡ଼ ଭଉଣୀ ॥ ବହୁତ ପ୍ରବୋଧ କରିଣ ସେ ଯେ ତାକୁ କହିଲା । ଚନ୍ଦ୍ରରେଖା ନାମ ତାହାର ଶୁଣି ତୋଷ ହୋଇଲା ॥ ବୋଇଲା ଶୁଣ ଲୋ ସୁନ୍ଦରି ଚିନ୍ତା ନ କର ମନ । ମହାସୁଖ ଭୋଗ କରିବୁ ପତିର ଯେ ସଦନ ।୧୪। ସଦାକାଳେ ତୋତେ ରଖନ୍ତୁ ମଙ୍ଗଳ ସାରଙ୍ଗ ବାହୁ । ସୁବର୍ଣ୍ଣ ଚୂଡ଼ି ତୋ ହସ୍ତରେ ନିତ୍ୟେ ବିରାଜୁଥାଉ । ୧୫ । ବିଧବା ଯୋଗ ତୁ ନ ପାଅ ପାଅ ସାତ ନନ୍ଦନ । ତୋତେ ଏ କଲ୍ୟାଣ କ ଛି ଯାଅ ନିଜ ଭବନ । ୧୬ । ସେଠାବ ବାଳୀ ଚଳିଲା ଭ୍ରାତାଙ୍କର ପାଶ ନ୍ତୁ । ସେ ସପ୍ତ ଭାଇଙ୍କି ଦେଖିଣ ବିଦାୟ ହୁଏ ବୁଲ୍ଲି । ୧୭ । ପର ପରାଯେ ନ କରିବ ଅଟେ ସପତ ଭାଇ । ବରଷେ ଛମାସେ ତୁମ୍ଭେ ତ ଦେଖା କରିବ ଯାଇଁ ।୧୮। ଭଗ୍ନୀ ବାଣୀ ଶୁଣି ସେମାନେ ବୋଧ କରି କହିଲେ । ବିଅର୍ଥେ ରୋଦନ ନ କର ସେ ଜେମାକୁ କହିଲେ ।୧୯। କେ କାହାର ଅଟେ ଭଉଣୀ କେ କାହାର ତ ଭାଇ । ମାତା ପିତା ଦୂର କରିବେ ଏହା କରିଛି ବିହି । ୨୦ । ଆପଣା ସଙ୍ଗକୁ ଆପଣା ଭ୍ରାନ୍ତ ହୋଇବ ଯେତେ । ଭାଇ ବନ୍ଧୁ ଇଷ୍ଟ କୁଟୁମ୍ବ କାହିଁ ହୋଇବେ କେତେ ॥ ଏମନ୍ତ ପ୍ରକାରେ ତାହାର ସପ୍ତ ଭାଇ କହିଲେ । ସଖୀ ସଙ୍ଗାତକୁ

ଡ଼କାଇ ରାଜନନ୍ଦନୀ ବୋଲେ । ୨୨ । କାହା ସଙ୍ଗତରେ ଖେଳିବୁ ଭଉଣୀମାନେ ଏଣିକି । ତୁମ୍ଭେ ନିଶ୍ଚିନ୍ତରେ ରହିବ ମୋତେ ଦେଇ ଡେଣିକା ।୨୩। ପଡ଼ୁଥିବ ତୁମ୍ଭ ମନରେ ଆଜ୍ଞୁ ଗଲା ମୋ ଅଳି । ଯାଉଛି ଶ୍ୱଶୁର ଘରକୁ ମୋତେ ନ ଦେବ ଗାଳି । ୨୪ । ଏ ବଚନ ଶୁଣି ସେମାନେ କୋଧେ ରୋଦନ କଲେ । ସବୁ ସଖୀମାନେ ମିଳିଣ କେମା କର ଧଇଲେ । ୨୫ । ଏତେ ଦିନେ ତୁମ୍ଭ ଆମ୍ଭର ସଙ୍ଗ ହୋଇଲା ଭିନ୍ନ । ତୁମ୍ଭଙ୍କୁ କେମନ୍ତେ ମୁଁ ଛୁଞ୍ଚି ଆମ୍ଭେ ପାରବୁଁ ଦିନ । ୨୬ । ସିବା କଥା ଶୁଣି ହୃଦସ୍ତ ଫାଟଯାଏ ଆମ୍ଭର । ପାଶୋର ନ ସିବ ମନରୁ ଯେତେ କଥା ତୁମ୍ଭର ।୨୭। ଏମନ୍ତେ ସେମାନେ କହନ୍ତେ କେମା ରୋଦନ କର । ମେଲଣି ମାଗିଣ ସେଠାରୁ କେମା ଗାଧୋଇ କର ।୨୮। ଅନ୍ନ ଖୁଞ୍ଜି ପଣ୍ଡିଙ୍କୁ ସେ କହେ ବିନସ୍ତ ଭାବେ । ଏବେ ଯେ ଘେନିଣ କାହାକୁ ଆଉ ଗାଧୋଇ ସିବେ । ୨୯ । ସଙ୍ଗ ସହଚରୀମାନଙ୍କୁ ଏହିରୂପେ କହିଲା । ଆଜହୁଁ ମୁଁ ପର ହୋଇଲି କେମା କୋଧ ହୋଇଲା ।୩୦। ତା ଶୁଣି ସମସ୍ତେ ବୋଲନ୍ତି କମା କର ରୋଦନ । ତୁହି ଅଟୁ ରାଜ-କୁମାରୀ ପଡ ରାଜନନ୍ଦନ । ୩୧ । କେଉଁ କଥା ଉଣା ହୋଇବ ତୋର ରାଜ୍ୟରେ ତୋତେ । ସବୁ ସୁଖ ଶିରୀ ପାଇବୁ ସବୁ ମଙ୍ଗଳା ହିତେ ।୩୨। ଆମ୍ଭେ କି ତୋତେ ମୁଁ ଛୁଞ୍ଚିବୁ ଆରେ ପ୍ରାଣର ସଖୀ । ଦୁଇ ତୁର ମାସେ ଯାଇଣ ତୋତେ ଆସିବୁ ଦେଖି ।୩୩। ତୁହୁ ରତ୍ନୋବତୀ ହୋଇବୁ ଜାଣ ଶ୍ୱଶୁର ଘରେ । ଅନ୍ୟ ପୁରୁଷ ନ ଗ୍ରହିବୁ ରହ କୁଳଶୀଳରେ । ୩୪ । ସହଚରୀମାନେ ବୋଧନ୍ତେ ବୋଧ ହେଲା ସୁନ୍ଦରୀ । ସବୁ ରାଣୀମାନେ ଆସିଣ ନେଲେ ଭିତରପୁରୀ ।୩୫। ଭୋଜନ କାମନ୍ତେ ଦେଲେ ସେ ତାଙ୍କୁ ଉତ୍ତମ ଦ୍ରବ୍ୟ । ପିଠା ପଣା ଗୁଡ଼ ନବାତ ଧୂସ୍ର କାକରା ସବୁ ।୩୬। ରାଜା ଘରେ କର ଅପୂର୍ବ କେମା ଭୋଜନ କଲା । ଆଚମନ ସାରି ତ୍ୱରିତେ ବେଶ ହେବାକୁ ଗଲା । ୩୭ । ସହଚରୀମାନେ ଯାଇଣ ତାକୁ କଲେ ସୁବେଶ । କେଶ ବାନ୍ଧି ଦେଲେ ସୁନ୍ଦର ମୂନ୍ନ ହୋଇବେ ତୋଷ ।୩୮। ଆଉ ଇତ୍ୟାଦି ବେଶ ଯେତେ ଲକ୍ଷେ ନାହିଁ ଉପମା । ଶରଦ କାଳରେ କି କାଣି ଉଇଁ

ଆସେ ଚନ୍ଦ୍ରମା ।୩୯। ପିନ୍ଧାଇଲେ ହୀନ ବସନ ତାର ଦେହକୁ ସାଜେ । ନାନା ଅଳଙ୍କାର ତାହାର ହୃଦସୂକୁ ବରଜେ ।୪୦। ବେଶ ହୋଇଣ ସ୍ତ୍ରୀ- କେଶୀ ତହୁଁ ଗମନ କଲେ । ପିତା ମାତାଙ୍କର ଚରଣେ ଯାଇ ଓଳଗି ହେଲେ ।୪୧। ଶ୍ରେଷ୍ଠ ଶ୍ରେଷ୍ଠ ଯେତେ ଅଛନ୍ତି ସବୁଙ୍କୁହିଁ ଓଳଗି । ସାନ ୨ ଯେତେ ଅଛନ୍ତି ତାଙ୍କ ମେଲାଣି ମାଗି । ୪୨ । ବାହାର ହୋଇଲେ ଅବଳା ଏବେ ତାର ଭବନେ । କହଇ ଧୀବର ଭକାରୀ ଶୁଣ ହେ ସୁଜ୍ଞଜନେ ।୪୩।

---

## ପଞ୍ଚାଶତ୍ ଛାନ୍ଦ

ରାଗ—କଳଶା ।

ସମସ୍ତଙ୍କ ମେଲାଣି ମାଗିଣ ରୂପବତୀ । ହାନ୍ଦୋଳା ଭିତରେ ଯାଇ ବସିଲା ତତ୍ପତି ।୧। ହୁଳହୁଳି ଦେଲେ ଅନ୍ତଃପୁର ନାରୀଗଣେ । ଶଙ୍ଖ ଭେରୀ ମୃଦଙ୍ଗ ବାଜଇ ଘନ ଘନ ।୨। ସାତଲକ୍ଷ ପଞ୍ଚାବନ କୋଟି ସୈନ୍ୟ ଛନ୍ତି । ମୃଖେଶ୍ବ ଶବଦରେ କମ୍ପେ ବସୁମତୀ । ୩ । ପ୍ରବେଶ ହୋଇଲେ ଯାଇଁ ସମୁଦ୍ର ତୀରରେ । ବୋଇତ ଛାଡ଼ିଣ ଦେଲେ ଦରିଆ ଭିତରେ । ୪ । ଧୂମାଳ୍ଭ ଦେଶର ରାଜା ପାଶେ ଦେଲେ ଭେଟି । ରାଜା ଦେଖି ତରସ୍ତ ହୋଇଲା ଏତେ ଥାଟି । ୫ । କାଳୀଙ୍କି ସୈନ୍ୟରେ ରଖିଥିଲା ଶିରୀଧର । ରାଜାଙ୍କୁ କହିଣ ଘେନି ଅଇଲା ସଙ୍ଗର ।୬। ଧନ୍ୟ ସେ ମଙ୍ଗଳାମାତା ତାହାଙ୍କ ପ୍ରସନ୍ନେ । ଦିନମାତ୍ର ପଥକୁ ଅଇଲେ ଦିନଦିନେ । ୭ । ଧାଗର୍ ଦେଶରେ ଯାଇ ପ୍ରବେଶ ହୋଇଲେ । ମୃଖୋଶ୍ବ ଶବଦରେ ଅବନୀ କମ୍ପିଲେ । ୮ । ବାର୍ତ୍ତା ପାଇ ଲୋକେ ଧାଇଁ ଛନ୍ତି ଦେଖିବାକୁ । କେ ବୋଲଇ ଧନେଶ୍ୱର ଅଇଲା ଘରକୁ । ୯ । କେ ବୋଲଇ ପୁତ୍ର ବଡ଼ ହୋଇଲାଣି ତାର । କେ ବୋଲଇ କନ୍ୟା ଘେନି ଅଛିଟି ସଙ୍ଗର । ୧୦ । କେ ବୋଲଇ ଖୁଲଣାକୁ ମାର ପକାଇଲା । ନନ୍ଦନର ସୁଲକ୍ଷ ସେ ଦେଖି ନ ପାରିଲା । ୧୧ । କେ ବୋଲଇ ନୟନାକୁ ପଡ଼ିଲା ବିପତ୍ତି । ନଷ୍ଟେ ତାର ପ୍ରାଣ ସେ ଘେନିବ ନରପତି ॥ ଏମନ୍ତ ପ୍ରକାରେ ଲୋକେ କରନ୍ତି ବିଚାର । ଗୃହଳ୍ଛନ୍ତି ଗ୍ରାମ-

ଲୋକେ ହୋଇ ତତପର । ୧୩ । ଖୁଲଣାକୁ ଯେତେ ଜନ ଅଛି ଦେଖି-
ଥିଲେ । ସେମାନେ ଦେଖିବା ପାଇଁ ଧାଇଁଣ ଅଇଲେ ।୧୪। ନସୃନା ସୁନ୍ଦରୀ
ଶୁଣି ମହା ଖରତର । ଶ୍ରମହାଳ ବନ୍ଧିଗଲ ସବାଙ୍ଗରୁ ତାର । ୧୫ ।
ଅର୍ଘ୍ୟଥାଳୀ ଦ୍ବାରତରେ ଯାଇ ଭିଆଇଲା । ସଖୀ ସଙ୍ଗାତ ଡ଼କାଇ ଆନନ୍ଦ
ହୋଇଲା । ୧୬ । ବୋଇଲା ଲୋ ମୋର ସଙ୍ଗେ ଅସ ବେଗ ହୋଇ ।
ବନ୍ଦାପନା ବେଗେ କରି କନ୍ୟା ଆଣିବାଇଁ । ୧୭ । ଏଥୁ ଅନନ୍ତରେ
ସୈନ୍ୟ ଅଇଲେକ ମାଡ଼ି । ଘନ ଘନ ହୋଇଣ ଶୁଭିଲା ତୂର୍ଯ୍ୟ ରଡ଼ି ।୧୮।
ମହା ଉତ୍ସବ ଲଗିଛି ଘାଗରା ଦେଶରେ । ସେ କାଳର କଥା ଏବେ
କେ କହି ତ ପାରେ । ୧୯ । ନସୃନା ସୁନ୍ଦରୀ ଅର୍ଘ୍ୟଥାଳୀ ଘେନିକରି ।
ଧନେଶ୍ୱରଙ୍କୁ ଦେଖାଇ ନେଲା ନିଜ ପୁରୀ । ୨୦ । ଆବର ରାଣୀମାନଙ୍କ
ଘେନି ସଙ୍ଗତରେ । ଅର୍ଘ୍ୟଥାଳି ଘେନିଗଲେ ସମୁଦ୍ର ତଟରେ । ୨୧ ।
ହୁଳହୁଳି ଦେଇ ବେଗେ କନ୍ୟାକୁ ଆଣିଲେ । ସେ କାଳ କଥାକୁ
ଅବା କେ କହିବ ଭଲେ । ୨୨ । ଏଥୁ ଅନନ୍ତରେ ଯେ ପହରେ ବେଳ
ଗଲା । ମାତାଙ୍କୁ ନ ଦେଖି ଶିଶୁଧର ପଚାରିଲା । ୨୩ । କହ ଲୋ ମାଉସି
ମୋର ମାତା ଗଲା କାହିଁ । ଅବନ୍ତୀ ଘାଗରା ଦେଶେ ନ ଦେଖିଲି ମୁହିଁ ॥
ଏହା ଶୁଣି ଧନେଶ୍ୱର ତାହାଙ୍କୁ ପଚାରେ । ଖୁଲଣା ସୁନ୍ଦରୀ କାହିଁ କହ ମୋ
ଆଗରେ । ୨୪ । ପ୍ରହରେ ଯେ ହେଲା ମୁହିଁ ଏଠାକୁ ଅଇଲି । ସବୁ ରାଣୀ-
ମାନେ ଛନ୍ତି ତାଙ୍କୁ ନ ଦେଖିଲି । ୨୬ । ନସୃନା ବୋଲେ ହେ ଦେବ
ଶୁଣ ମୋ ବଚନ । ପ୍ରାଣ ହାରିଲାଣି ସେ ଆଳଙ୍କୁ ପାଞ୍ଚଦିନ । ୨୭ । ଶିଶୁ-
ଧର ପିତାପୁତ୍ରେ ଭୂମିରେ ପଡ଼ିଲେ । କି ଜାଣି ତାଙ୍କର ପିଣ୍ଡୁ ପ୍ରାଣ ଛାଡ଼ି-
ଗଲେ । ୨୮ । ଚେତନା ପାଇଲେ ପିତା ପୁତ୍ର ଘଡ଼ିକରେ । କହ ମୋତେ
ସେ କେମନ୍ତେ ଗଲା ମୃତ୍ୟୁପୁରେ । ୨୯ । ତାହା ଶୁଣି ବୋଇଲେ ଯେ
ନସୃନା ସୁନ୍ଦର । ହେ ଦେବ ଅଲଙ୍କା କଥା ନୁହେ କହିବାର । ୩୦ ।
ଧନେଶ୍ୱର ବୋଲଇ ମୁଁ ଶୁଣେ କହ ଥରେ । ତୋହ ମୁଖୁଁ ଶୁଣି ସେ
ସନ୍ଦେହ ଯାଉ ଦୂରେ ॥ ନସୃନା ବୋଲେ ହେ ଦେବ ହୁଅ ସାବଧାନ ।

ଫିଟାଇଣ କହୁଅଛୁ ସ୍ୱରୂପ ବଚନେ । ୩୨ । ଖୁଲଣା ସୁନ୍ଦରୀ ତୁମ୍ଭ ସଉଭାଗୀ ରାଣୀ । ଦେଖିଲା ମାତ୍ରକେ ଅମ୍ଭେ ଡ଼ରୁଥାଉଁ ପୁଣି ।୩୩। ଡ଼ରେ ଥରହର ତାଙ୍କୁ ବଚନ ନ କହୁ । ସେ ଯାହା ମାଗଇ ତାହା ପାଶେ ଦେଉ-ଥାଉଁ । ୩୪ । ସେବାରେ ଖଟଣ ଥାଉଁ ତାଙ୍କୁ ସବଂଦିନେ । ଅଙ୍ଗକୁ ଅବଜ୍ଞା ନ କରନ୍ତି ରାଣୀମାନେ ।୩୫। ଏତେ ସେବା କରି ସୁଖେ ରହୁଛୁ ଯବନୀ । ତେବେ ତାର ପରପୁରୁଷର ସଙ୍ଗେ ପ୍ରୀତ । ୩୬ । ବେଳ ପହରକଯାଏ ଶୋଇଥାଇ ଘରେ । ବିହାର କରଇ ସେ ଯେ ପରପୁରୁଷରେ । ୩୭ । ଜଗତରେ ସମସ୍ତେ ବୋଇଲେ ଧିକ ଧିକ । ସୂର୍ଯ୍ୟବଂଶ କୁଳରେ ଯେ ଲାଗିଲା କଳଙ୍କ ।୩୮। ଏହା ଦେଖି ଧଇର୍ଯ୍ୟ ସେ ଧରି ନ ପାରିଲା । ମନ୍ତ୍ରୀଙ୍କ ପୁତ୍ର ସେ ପୁରୁଷ ପ୍ରାଣ ନେଲା । ୩୯ । ଘଉଡ଼ାଇ ନ ଦେଲା କଳଙ୍କ ହେବା ପାଇଁ । ତାହା ଦେଖି ଅନଳ ଲଗାଇ ପୋଡ଼ିଲଇଁ । ୪୦ । ଶୁଣି ପିତା ପୁତ୍ରେ ବହୁ ବେଦନ ଟେ କଲେ । କାହିଁରେ ଦହନ କଲୁ ଦେଖାଅ ବୋଇଲେ । ୪୧ । ଶୁଣି କରି ନଯ୍ନା ଯେ ବେଗେ ଘେନିଗଲା । ଧନେ-ଶ୍ୱର ଶ୍ରୀଧରଙ୍କୁ ବେଗେ ଦେଖାଇଲା । ୪୨ । ଗ୍ରାମଲୋକେ ଦେଖିବାକୁ ଧାଇଁଲେ ଅପାର । ସବୁ ସୈନ୍ୟମାନେ ଗୋଡ଼ାଇଲେ ସଙ୍ଗତର । ୪୩ । ପ୍ରଜ୍ୱଳିତ ଅଗ୍ନିପାଶେ ପ୍ରବେଶ ହୋଇଲେ । ଦେଖିକରି ତତ୍କ୍ଷଣରେ ଯାଇ ନ ପାରିଲେ ।୪୪। ପାଞ୍ଚଦିନ ପାଞ୍ଚରାତ୍ର ଜଳିଲାଣି ସେହି । କାନ୍ତି ପ୍ରମାଣେ ଯେ ଅନଳ ଲଭି ନାହିଁ । ୪୫ । ଧନେଶ୍ୱର ପିତା ପୁତ୍ରେ ମୋହରେ ପଡ଼ିଲେ । ନ ଜାଣିଲା ଲୋକେ କାଏ ବୋଲି ପଚାରିଲେ । ୪୬ । ଜାଣିଥିଲା ଲୋକ ତାଙ୍କୁ ବୁଝାଇ କହଇ । କାହିଁ ପାଇଁ ନଯ୍ନା ଯେ ଏମନ୍ତ କରଇ ॥ ଏମନ୍ତେ ସେ ଲୋକେ ନଯ୍ନାକୁ ଗାଳି ଦ୍ୟନ୍ତି । ଧନେଶ୍ୱର ପିତା ପୁତ୍ରେ ଆକୁଳେ କାନ୍ଦନ୍ତି । ୪୮ । ତାହାଙ୍କ ବେଦନ ଦେଖି ସମସ୍ତେ କାନ୍ଦନ୍ତି । ପରଜାମାନେ ଯେତେକ ଆକୁଳ ହୁଅନ୍ତି । ୪୯ । ଘାଗରା ଦାଣ୍ଡରେ ବହୁ ହୁରି ପଡ଼ିଅଛି । କି ଜାଣି ପ୍ରଳୟ କାଳେ ସିନ୍ଧୁ ଗରଜୁଛି । ୫୦ । ଏମନ୍ତ ପ୍ରକାରେ ସେ ଯେ ନଯ୍ନା ସୁନ୍ଦରୀ । କବାଟ କିଳଣ ସେହୁ ପଶିଲା ଗମ୍ଭିରୀ ॥

ଧନେଶ୍ୱର ବେଦନ ଯେ କେ ପାରବ ସହ୍ୟ । ଶ୍ରୀଧର କୁମର ପଡ଼ ଭୂମିରେ ଲୋଟଇ । ୫୨ । ଅରେ ମନ୍ଦ ଦଇବରେ ଏତେ ତୁ ଦାରୁଣ । ସୁଖକାଳେ ଦୁଃଖ ତୁହ ବହିଲୁ କପୁଣ । ୫୩ । କେତେ କେତେ ଦୁଃଖକୁ ମଙ୍ଗଳା କଲେ ନାହିଁ । ଏବେ ସୁଖ କାଳରେ ଯେ ଘୁଞ୍ଚଗଲେ କାହିଁ । ୫୪ । ଏମନ୍ତ ପ୍ରକାରେ ଶୋକ କରନ୍ତି ଶ୍ରୀଧର । ଅଗ୍ନିକି ଲିଭାଇ ଦେଲେ ମଙ୍ଗଳା ସେଠାର । ୫୫ । ଜଗତ ଜନ ଦେଖିଣ ତରସ୍ତ ହୋଇଲେ । କପାଇଁ ଅଗ୍ନି ଲିଭିଲା କହ ମନ୍ତ୍ରୀଭଲେ । ୫୬ । ବାଳୁତ ଶ୍ରୀଧର ତହିଁ ଚୁହିଁଣ ଯେ ଦେଲେ । ଅଗ୍ନି ଭିତରେ ମଙ୍ଗଳା ମାତାଙ୍କୁ ଦେଖିଲେ । ୫୭ । ମଙ୍ଗଳାଙ୍କ କୋଳରେ ଯେ ଦେଖିଲେ ମାତାଙ୍କୁ । ତତକ୍ଷଣେ ଡେଇଁ ଗଲେ ଅଗ୍ନି ଭିତରକୁ । ୫୮ । ମାତା ପୁତ୍ର ଦୁଇ ଜଣ କୋଳରେ ବସାଇ । ଅଗ୍ନିରୁ ବାହାର ହେଲେ ଯେ ମଙ୍ଗଳାମାଈ । ୫୯ । ଏଥୁଅନ୍ତେ ଖୁଲଣା ଯେ କୋଳରୁ ବାହାରି । ଧୀରେ ଧୀରେ ଯେନ୍ତୁ ଗମନ ଯେ କରି । ୬୦ । ଶିଶୁଧର ପିତା ପୁତ୍ର ଆନନ୍ଦ ହୋଇଲେ । ହରି ହରି ଶବଦରେ ପୃଥ୍ୱୀ ଉଚ୍ଛୁଳିଲେ ॥ ଧନ୍ୟ ଧନ୍ୟ ସତୀ ବୋଲି ବୋଲନ୍ତି ସଂସାର । ମହା ଉତ୍ସବ ହୋଇଲା ଘାଗରା ଦେଶର ।୬୨। ଏଥୁଅନ୍ତେ ଶିଶୁଧର ମନରେ ପଡ଼ିଲା । କହ ମନ୍ତ୍ରୀ ମାଉସୀ ମୋହର କେଉଣେ ଗଲା ।୬୩। କେମନ୍ତ ପ୍ରକାରେ ଅପବାଦ ଦେଇ ତାଙ୍କୁ । ପର ଦୁଃଖରେ ରଖି କହେ ମୋ ମାତାଙ୍କୁ । ୬୪ । ଏହା ଶୁଣି ମନ୍ତ୍ରୀବର କହଇ ବଚନ । ଶୁଣ ଅହେ ଶିଶୁଧର ହୋଇ ଏକମନ । ୬୫ । କମ୍ବନାସୁନ୍ଦରୀ ଏହିଠାରେ ଦେଖୁଥିଲା । ମନେ କ ବାଞ୍ଛିବ ଏଥୁଁ ପଳାଇଣ ଗଲା ।୬୬। ତାହା ଶୁଣି ଶିଶୁଧର କୋପମୂର୍ତ୍ତି ହୋଇ । ସତ୍ୟକରି କହୁଅଛି କଷ୍ଟେ ମାରିବଇଁ । ୬୭ । ଶୁଣ ଶୁଣ ସୁଜ୍ଞଜନେ ଦେଇ ଏକ ଚିତ୍ତ । ଏଥୁଅନନ୍ତରେ ଯେତେ ହୋଇଲା ଚରିତ । ୬୮ । ଯେମନ୍ତ ପ୍ରକାରେ ଗଲେ ଆପଣା ମନ୍ଦିର । ତାହା ସତ୍ୟ ମୁଁ କହିବି ଶୁଣ ସୁଜ୍ଞଜନର ।୬୯। ଅର୍ଘ୍ୟଥାଳୀ ଗୋଟିଏ ହସ୍ତରେ ଧରି କରି । ଧୀରେ ଗମନ କରେ ଖୁଲଣା-ସୁନ୍ଦରୀ । ୭୦ । ବୟନକୁ ପାଣି ଧାର ବହି ପଡ଼ୁଅଛି । ଗଡ଼ୁଁ ଶତେ ଗୁଣ

ତାର ଦେହ ଦିଶୁଅଛି ।୭୧। ଦେଖଣାହାରୀଏ ଦେଖି ହେଲେ ଚମତ୍କାର । ଏହାପରି ସତୀ କେହି ନାହିଁ ବ୍ରହ୍ମାଣ୍ଡର ।୭୨। ଅର୍ଘ୍ୟଥାଳୀ ନେଇଣ ବାନ୍ତକୁ ଦେଖାଇଲା । ଅବନ୍ତୀ ନଗର ବୋଲି ତାର ନାମ ହେଲା । ୭୩ । ଯହୁଁ ଖୁଲଣାସୁନ୍ଦରୀ ପୁତ୍ରକୁ ପାଇଲା । ପତିକି ଦେଖିଣ ମହା ହରଷ ହୋଇଲା ॥ ବୋହୂକୁ ନେଇଣ ଅର୍ଘ୍ୟ ବନ୍ଦାପନା କରି । ଆନନ୍ଦ ହୋଇଣ ଯେ ରହିଲା ନିଜ ପୁରୀ । ୭୫ । ପଞ୍ଚାଶତ ଛାନ୍ଦଟିକୁ ଏଠି ଶେଷ କଲି । ପଣ୍ଡାନ୍ତରେ ନ ବୋଲିବ ଏହୁ ମିଛ ବୋଲି । ୭୬ । ଧୀବର ଭିକାରୀ ଦୋଷ ନ ଧରିବ ମନେ । ହରିବୋଲ ହୁଳହୁଳି ଦିଅ ସର୍ବଜନେ । ୭୭ । ଧୂପ ଦୀପ ନଇବେଦ୍ୟ ମଙ୍ଗଳାଙ୍କୁ ଦେବ । କାପୁଣ୍ୟହୋଇଣ ଦୁଃଖ ଛାମୁରେ କହିବ ।୭୮। କହଇ ଭିକାରୀ ମୋତେ ରଖ ଗୋ ମଙ୍ଗଳା । ଅଭୟ ଦାୟିନୀ ମାଗୋ କଣ୍ଠେ କର ଖେଳା । ୭୯ ।

---

## ଏକପଞ୍ଚାଶତ ଛାନ୍ଦ

ରାଗ—ରାମକେରୀ ।

ବନ୍ଦଇ ମଙ୍ଗଳା ମାଗୋ ଦୁରିତନାଶିନୀ । ସର୍ବସୁଲକ୍ଷଣୀ ମାତା ଶ୍ରୀହରି ଘରଣୀ । ୧ । ଅଶେଷ ମାୟା ତୋହର ଅନ୍ତ କରି ନୋହେ । ଚତୁର ମୁଖରେ ବ୍ରହ୍ମା ତୋ ନାମକୁ କହେ ।୨। ତୁ ଯାକୁ ଅଲପଦୟା କରୁ ମହାମାୟୀ । ମୂର୍ଖ ହୋଇଥିଲେ ସେ ସଭାରେ ବସେ ଯାଇ ।୩। ତୋହର କୃପିତ ଦୟା ନୁହେ ଯାହାଠାରେ । ପଣ୍ଡିତ ହୋଇଲେ ଧରି ନୁହେଁ ମୁଖରେ ।୪। ମୁଁ ତୋର ପ୍ରସନ୍ନେ ଚୁରି ପାଳି କଲି ଗୀତ । ଏବେ ଅସି ବସ ମାତା ମୋ କଣ୍ଠେ ତ୍ୱରିତ ।୫। ପାଞ୍ଚପାଳି ଛାନ୍ଦ କହିବାକୁ ମୋର ମନ । ଶଇଳ ନନ୍ଦନୀ ମୋତେ ହୁଅ ତୁଂ ପ୍ରସନ୍ନ । ୬ । ଧନେଶ୍ୱର ଶିରୀଧର ରାଜ୍ୟେ ପ୍ରବେଶିଲେ । ଅନଳ ଭିତରେ ଖୁଲଣାକୁ ସେ ପାଇଲେ ॥ ପୁତ୍ରବଧୂ ପାଇଣ ସେ ଆନନ୍ଦ ହୋଇଲେ । ଏଥୁ ଅନନ୍ତରେ ତହିଁ କେତେ କୃତ୍ୟ କଲେ । ୮ । ତାହା ମୋତେ କହିତେ କହିବା ଠାକୁରାଣୀ । ସୁଜନଙ୍କ ହତେ ମୁହିଁ ଲେଖିବଇଁ

ପୁଣି । ୯ । ଯେତେ ଯେତେ କଥା ହେଲା ଘାଗର ଦେଶରେ । କହୁଅଛି ଏକମନେ ଶୁଣ ସୁଜ୍ଞ ନରେ । ୧୦ । ପାଞ୍ଚପାଳି କଥା ଏ ଯେ ଅପୂର୍ବ କାହାଣୀ । ପଦେ ପଦେ ଅଛଇ ଅମୃତ ରସବାଣୀ ।୧୧। କର୍ଣ୍ଣେ ଯେ ଶୁଣିବ ତା ଦୁରିତ ଯିବ ନାଶ । ସୁଜ୍ଞଜନ ମାନେ ଯେ ମଙ୍ଗଳା ନାମ ଘୋଷ ।୧୨। ଦୁର୍ଗତିନାଶିନୀ ଦୁଃଖ ନାଶିବେଟି ସେହୁ । ବନ୍ଧନରେ ଥିଲେ ଯେ ବନ୍ଧନ ଫିଟିଯାଉ । ୧୩ । କହଇ ଧାନ ଭିକାରୀ ରଖ ଗୋ ମଙ୍ଗଳା । ନ ଆସିଲା ପଦ ମୋତେ କହିଦିଅ ଗଲା । ୧୪ ।

---

# ଦ୍ୱିପଞ୍ଚାଶତ୍ ଛାନ୍ଦ

## ରାଗ—ମଙ୍ଗଳ

ଶୁଣ ହେ ସୁଜନ ଜନେ ଏଥୁ ଅନନ୍ତରେ । ଯେତେ ଯେତେ କଥା ହେଲା ଘାଗର ଦାଣ୍ଡରେ । ୧ । ପୁତ୍ର ଯହୁଁ ପାଇଲା ସେ ଶୀଳଶୋଭନ୍ଦରୀ । ଆନନ୍ଦ କେ ଆଉ କହି ପାରିବ ତାହାରି । ୨ । ନିଜ ମନ୍ଦିରେ ନେଇଣ ପୁତ୍ର ବସାଇଲା । ଦଧି ଦୁଗ୍ଧ ଗୁଡ଼ ଅଣି ଭୁଞ୍ଜିବାକୁ ଦେଲା । ୩ । ଭୁଞ୍ଜିସାରି ଶିରୀଧର ହୋଇଲେ ହରଷ । ନିଶ୍ଚେ ବର କନ୍ୟା ଯେ ଯେ ହୋଇଲେକ ତୋଷ । ୪ । ଶ୍ରୀଧର ମୁଖକୁ ଚୁମ୍ବି ବଚନ କହଇ । ଶୁଣ ତୁ ମୋହର ବାଣୀ ସାବଧାନ ହୋଇ । ୫ । ସୋମନାଥ ସଙ୍ଗତରେ ବୋଇତରେ ଗଲୁ । କେତେ ଦିନେ ପିତାପାଶେ ପ୍ରବେଶ ହୋଇଲୁ । ୬ । ପିତାକୁ ଯେ ତୁହି ଭେଟ ପାଇଲୁ କେମନ୍ତେ । ବାଟରେ ଯେ ବିପତ୍ତି ପଡ଼ିଲା କେତେ କେତେ । ୭ । ଶ୍ରୀଧର ବୋଇଲା ମାତା ଶୁଣ ମୋର ବାଣୀ । ଯେଉଁଦିନ ତୋହଠାରୁ ହୋଇଲୁ ମେଲାଣି ।୮। ବୋଇତ ବାହିଣ ଯେ ଏଠାରୁ ଚଳିଗଲୁଁ । ପାଞ୍ଚଦିନେ ମଳିକା ଦେଶରେ ପ୍ରବେଶିଲୁଁ । ୯ । ସେଠାରେ ଜଳ ଭିତରେ ଜୀବ ଅକଳନ୍ତା । ପାଦ ନାହିଁ ଗମନ କରନ୍ତି କେ କହନ୍ତା । ୧୦ । ଏ ପାଟିକି ସେ ପାଟି ଲଗାଇ ଅଛି ପାଣେ । ବଗାଣ ହାତ ଅଷ୍ଟ ହୋଇବେ ବଶେଷେ ।୧୧। ମଙ୍ଗଳାଙ୍କ ପ୍ରସନ୍ନରେ ସେଠାରୁ ବାହିଲୁଁ ।

ତେଣିକି ଏଗାର ଦିନ ପଥ ଗୃଲି ଗଲୁ । ୧୨ । ଧୂମାନ୍ତ ଦେଶରେ ଯାଇ ହୋଇଲୁ ପ୍ରବେଶ । କାର୍ତ୍ତିକେଶ୍ୱର ବୋଲଣ ତହିଁ ନରଈଶ ।୧୩। ମହା-ଦୁର୍ଗମ ସ୍ଥାନ ଯେ ଯାହେର ବେଢିଛି । ରାଜ୍ୟ ତାର ସ୍ଥଳ କୂଳ ନ ଦିଶଇ କଛି । ୧୪ । ଅମ୍ଭଙ୍କୁ ଦେଖିଣ କାଳୀ ଧାଇଁଲା ପ୍ରଖରେ । ଗ୍ରାମ ଦେବତାଙ୍କି ମୁହିଁ ଭାବିଲି ମନରେ । ୧୫ । ତତକ୍ଷଣେ ମାତା ଆସି ହୋଇଲେ ପ୍ରବେଶ । ବୋଇଲେ କାଳୀକୁ ଯାଇଁ ଧର ଘେନି ଆସ ।୧୬। ତାଙ୍କ ଆଜ୍ଞା ପାଇ ମୁଁ ଯେ କାଳୀକି ଧଇଲି । କାର୍ତ୍ତିକେଶ୍ୱର ନୃପତି ପାଶେ ନେଇ ଦେଲି ॥ ସେଠାରୁ ଥୋକାଏ ଦୂର ପଥ ବହିଗଲୁଁ । ଜୟନ୍ତୀ ନବରେ ଯାଇ ପ୍ରବେଶ ହୋଇଲୁଁ । ୧୮ । ଯାତଣ ଚଣ୍ଡଡ଼ ଆସି ବେଢ଼ିଲେ ଅମ୍ଭଙ୍କୁ । ତାହା ଦେଖି ସୁମରଣା କଲି ମଙ୍ଗଳାଙ୍କୁ । ୧୯ । ଯେ ଦୁଃଖୁଁ ମଙ୍ଗଳା ମାତା, ମୋତେ କଲେ ପାର । ତହୁଁ ପୁଣି ଗଲୁଁ ଯେ ମଙ୍ଗଳା ନାମ ଧର । ୨୦ । ତହୁଁ ପଥ ବହିଗଲୁଁ ତେଉଦ ଦିବସ । ଯାଇଣ ମିଳିଲୁଁ ଯେ କଳପ ନାମେ ଦେଶ । ୨୧ । ମୁଣ୍ଡ ନ ଥିବାର ଜନ୍ତୁ ଅନେକ ଅଇଲେ । ଏକ ଏକ ଜୀବଗୋହା ପର୍ବତର ତୁଲେ । ୨୨ । ସେଠାରୁ ପାର୍ବତୀକାନ୍ତ ରଖିଲେ ଅମ୍ଭଙ୍କୁ । ଅବର ତିନ ଦିବସ ଗଲୁଁ ଯେ ଅଗକୁ । ୨୩ । ସୁଦର୍ଶନ ରାଜା ରାଜ୍ୟେ ହୋଇଲୁଁ ପ୍ରବେଶ । ସେହି ରାଜା କଟୁଆଳ ମିଳା ଅମ୍ଭ ପାଶ ।୨୪। ସେ ମୋତେ ବୋଇଲା ତୁମ୍ଭ ଘର କେଉଁ ଦେଶ । ଦର୍ଶନ କରିବ ଆସ ଅମ୍ଭ ରାଜା ପାଶ । ୨୫ । ମୁଁ ବୋଇଲି କଟୁଆଳ ଯାଅରେ ଏଠାରୁ । ନୃପତିଙ୍କ ବୋଲ ଅସି ଦର୍ଶନ ଯେ କରୁ । ୨୬ । ତାହା ଶୁଣି କଟୁଆଳ ବେଗେ ଚଳିଯାଇ । ସୁଦର୍ଶନ ରାଜା ଅଗେ ଯାଇଣ କହଇ । ୨୭ । ସୈନ୍ୟଦଳ ପେଶିଣ ଯେ ମୋତେ ଘେନି ଗଲେ । ଖଡ଼ଗ ଘେନିଣ ମୋତେ ହାଣିବାକୁ ଯେ ଭିଲେ ।୨୮। ମୋତେ ମାରନ୍ତେଣ ସୈନ୍ୟ ତାର ସବୁ ନାଶ । ଶୂଳର ଉପରେ ମୋତେ ଠେଲିଲେ ନରେଶ । ୨୯ । ତହିଁ ମଙ୍ଗଳାମାତା ରଖିଲେକ ମୋତେ । ପିତାର ସନ୍ଦେଶ ମୁଁ ଯେ ପାଇଲି ତତ୍କ୍ଷଣତେ । ୩୦ । ମଙ୍ଗଳାଙ୍କୁ ଘେନିଣ ପିତାଙ୍କୁ ଭଜିଲି । ସେହି ରାଜନନ୍ଦନୀକ ମୁହିଁ ବଭା

ହେଲ । ୩୧ । ସୋମନାଥ ଢ଼ଗରକୁ ପେଷିଲଇଁ ଏଥେ । ସକଳ ବୃତ୍ତାନ୍ତ ଯାଇ କହିଲକ ମୋତେ ।୩୨। ସେଠାରୁ ଆସିଣ ତୁମ୍ଭ ପାଶରେ ମିଳିଲୁଁ । ତୁମ୍ଭଙ୍କୁ ନ ଦେଖି ମାଉସୀଙ୍କ ପଚାରିଲୁଁ । ୩୩ । କିପାଇଁ ଏତେକ ଦୁଃଖ ଦେଲେ ସେ ତୁମ୍ଭଙ୍କୁ । ସଶସ୍ତ୍ର ପିଠାଇ କହ ତୁମ୍ଭେ ଯେ ଅମ୍ଭଙ୍କୁ । ୩୪ । ପିତାଙ୍କୁ ଶୁଣାଇ ଅରେ ଏଥିର ସନ୍ଦେଶ । ପାଞ୍ଚ ପାଳି ଛାନ୍ଦ ଏଥି ହୋଇଲାଙ୍କ ଶେଷ । ୩୫ । ଧୀବର ଭିକାରୀ ଏହି ରସରେ କହଇ । ସୁଜନ ଜନେ ମୋ ଦୋଷ ନ ଧରିବ କେହି । ୩୬ ।

---

## ଦ୍ୱିପଞ୍ଚାଶତ୍ ଛାନ୍ଦ

### ରାଗ—ମଙ୍ଗଳ

ପୁତ୍ର ବାଣୀ ଶୁଣିଣ ଜନନୀ ମହାତୋଷ । ଧନେଶ୍ୱର ନୃପତିଙ୍କ ଡ଼କାଇଲା ପାଶ । ୧ । ପିତା ପୁତ୍ର ଦୁଇଜଣେ ବସିଛନ୍ତି ଯହୁଁ । ସବୁ କଥା କୁହାକୁହି ହେଉଛନ୍ତି ସେହୁ ।୨। ହେ ନାଥ ତୁମ୍ଭେ ଏଠାରୁ ଗଲ ଯେଉଁ ଦିନୁ । ଇନ୍ଦ୍ର ସୁଖ ନ ପାଇଲି ମୋତେ ସେହି ଦିନୁ । ୩ । ଗଲ ଦିନୁ ଯେତେ ଦଣ୍ଡ ଦେଲ ମୋ ଭଉଣୀ । କେତେ ମୁହିଁ କହିବଇଁ ତାହାର କାହାଣୀ ।୪। ବ୍ରନସ୍ତରେ ନେଇ ମୋତେ ଛେଳି ରଖାଇଲା । ଅନ୍ନ ବୋଲି କପା ମଞ୍ଜି ଭାତ ରାନ୍ଧି ଦେଲା ।୫। ଲୁହାର ଡିଙ୍କି ଗୋଟିଏ ଆଣିଦେଲା ପୁଣ । ବୋଇଲା ଏଥିରେ ମୋତେ କୁଟିଦିଅ ଧାନ । ୬ । କି କରିବି ମଙ୍ଗଳାଙ୍କୁ ସୁମରଣା କଲି । ଲୁହାର ଡିଙ୍କିରେ ଧାନ କୁଟି କରି ଦେଲି । ୭ । ପୁଣି ଷାଠିଏ ପଉଟି ମାଠିଆ ସେ ଦେଲା । ଏଥିରେ ପାଣି ତୁ ଆଣି ଦିଅ ଲୋ ବୋଇଲା ।୮। ତହିଁରୁ ମଙ୍ଗଳାମାତା କଲେ ଯେ ଉଦ୍ଧାର । ସେ କୁମ୍ଭରେ ପାଣିଆଣି ଦେଲି ଧାଡକାର । ୯ । ପୁଣି ମୋତେ ଅନ୍ନରେ ସେ ବିଷ ଗୋଳିଦେଲା । ତାହା ଭୁଞ୍ଜିକରି ମୋର ପ୍ରାଣ ଛାଡ଼ିଗଲା ।୧୦। ସେ ଦୁଃଖରୁ ମଙ୍ଗଳା ଯେ ରଖି-ଲେକ ମୋତେ । ଦଶମାସ ଶ୍ରୀଧର ଯେ ଥାଇ ଗର୍ଭଗତେ । ୧୧ । ଛେଳି କୁଡ଼ିଆରେ ପୁତ୍ର ଜନମ ହୋଇଲା । ନ ଥିଲି ମୁଁ ଦିନେ ମୋର ପୁତ୍ରଙ୍କୁ

ମାଇଲା । ୧୨ । ଲୁଣ ମଥା ଦହି ତାର ମୁଖରେଣି ଦେଲା । ମାଉ ବାଳ-କଙ୍କୁ ସେହି ପଲାଇଣ ଗଲା । ୧୩ । ସ୍ନାହାନ ସାରଣ ମୁଁ ଯେ ଘରକୁ ଅଇଲି । ନନ୍ଦନ ମୁଖରେ ଖୀର ଦିଅନ୍ତେ ଦେଖିଲି ।୧୪। ବହୁତ କୋଧ ହୁଅନ୍ତେ ମଙ୍ଗଳା ଅଇଲେ । ପୁତ୍ରଙ୍କୁ ମୋହର ମାତା ଜୀବଦାନ ଦେଲେ ॥ କାଞ୍ଚନ ବନେ ଘେନିଗଲି ନନ୍ଦନଙ୍କୁ । ସେଠାରେ ରହିଣ ବିଦ୍ୟା ପଢା-ଇଲି ତାଙ୍କୁ । ୧୬ । ଏକଦିନେ ଶ୍ରୀଧର ଯେ ବିଦ୍ୟା ପଢୁଥିଲା । ଖଡ଼ିଗୋଟି ତା ହସ୍ତରୁ ଗଡ଼ିଣ ଯେ ଗଲା । ୧୭ । ଅଣିବାକୁ ଅ ବୋଲିଣ ଗୁଟେ ଦେଲେ ଗାଳି । ଏ ବଚନ ଶୁଣି ପୁତ୍ର ମନେ ମନେ ଭାଳି । ୧୮ । ତୁମ୍ଭର ବ୍ରାହ୍ମଣ ମୁହିଁ କହିଲି ତାହାଙ୍କୁ । ତେଣୁକରି ଶ୍ରୀଧର ଯେ ଗଲା ଆଣିବାକୁ ।୧୯। ମୁ ବୋଇଲି କଦାଚିତେ ନ ଯାଅ ନନ୍ଦନ । ବିରୂପା ଦେଶରେ ତାତ ଅଛଇ ବନ୍ଧନ । ୨୦ । ତୁ ପୁଣି କେମନ୍ତେ ତାଙ୍କ ଦେଖି ଯେ ପାଇବୁ । ପିତା ବୋଲି କରି ତାଙ୍କୁ କେମନ୍ତେ ଚିହ୍ନିବୁ । ୨୧ । ବହୁତ ପ୍ରକାରେ ତାଙ୍କୁ ପ୍ରବୋଧିଲି ମୁହିଁ । ନ ରହିବ ବୋଲି ଦିନ ଭିକାରୀ କହଇ । ୨୨ ।

---

## ଚତୁଃପଞ୍ଚାଶତ୍ ଛାନ୍ଦ

ରାଗ—ରାମକେରୀ

ମନାକଲି ମୁହିଁ ସମ୍ମତ ନ କଲା ଯେ ଶ୍ରୀଧର । କଷ୍ଟସ୍ଥ ଯିବଇଁ ବୋଲିଣ ବୋଇଲା ଯେ କୁମର ।୧। ମୁଁ ବୋଇଲି ଅରେ କୁମର ଯେବେ ଯିବୁ ନ ଶୁଣି । ମାଉସୀ ପାଖକୁ ଯାଇଣ ହୋଇ ଆଜ୍ଞା ମେଲାଣି । ୨ । ଏ ବଚନ ଶୁଣି ଶ୍ରୀଧର ବେଗେ ଚଳିଣ ଗଲା । ମାଉସୀ ପାଖକୁ ଯାଇଣ ମେଲାଣି ଯେ ମାଗିଲା । ୩ । ସେଠାରୁ ଆସିଣ ଘରେ ଯେ ବେଗେ ହେଲା ପ୍ରବେଶ । ମୁଁ ବୋଇଲି ଆଜ କଥା ଏ ଶୁଣ ମୋହର ଶିଷ୍ୟ । ୪ । ଗ୍ରାମ-ଦେବତାଙ୍କି ମେଲାଣି ତୁହି ମାଗରେ ବଳା । ଏ ବଚନ ଶୁଣି ଶ୍ରୀଧର ମନେ ହରଷ ହେଲା । ୫ । ଯାଇ ଗ୍ରାମଦେବୀ ଚରଣେ ବେଗେ ଓଳଗି ହେଲା । ଉଠି ମେଲାଣି ମାଗିଣ ସେ କର ଯୋଡ଼ି ବୋଇଲା । ୬ । ଖଣ୍ଡା ଗୋଟିଏ ଏକ

ଦେଲେ ସେ ତହୁଁ ଅସିଲ୍ଲ ଶିଷ୍ୟ । ପୁଣି ତାହାକୁ ପେଷି ଦେଲ୍ ମହେ-
ଶ୍ବରଙ୍କ ପାଶ । ୭ । ଶ୍ରୀଧରକୁ ନେଇ ଦେଖିଣ ତହୁଁ ନାହିଁଚ ଦେଲ୍ ।
ତୋଷ ହୋଇଣ ପଞ୍ଚମୁଖୀ ତାଙ୍କୁ ମେଲାଣି କଲେ । ୮ । ସେଠାରୁ ପୁତ୍ର
ଅର୍ଥେଣ ଗଲ୍ଲ ମଙ୍ଗଳା ପାଶ । ବୋଇଲ୍ଲ ମୋତେ ଦୟାକର ମୁହିଁ ଯିବ
ପ୍ରବାସ । ୯ । ଏ ବଚନ ଶୁଣି ମଙ୍ଗଳା ବଡ଼ ହରଷ ହେଲେ । ଦୁବ
ସାତକେଚ୍ଚ ନେଇଣ ପୁତ୍ର ହସ୍ତରେ ଦେଲେ । ୧୦ । ସେଠାରୁ ଅସି
ବାଳକ ପୁରେ ପ୍ରବେଶ ହେଲ୍ଲ । ପ୍ରବାସକୁ ଯିବ ବୋଲ୍ଣି ମୋତେ ଅସି
କହିଲ୍ଲ ।୧୧। ମୁଁ ବୋଇଲ୍ ବାଳ କୁମର ଏକା ନ ଯାଅ ତୁହି । ଏ ବଚନ
ଶୁଣି ଶ୍ରୀଧର ବେଗେ ଚଳିଲ୍ଲ ସେହି । ୧୨ । ସୋମନାଥକୁ ସେ ଯାଇଣ
ସବୁ କଥା କହିଲ୍ଲ । ଶଦେଶକୁ ଯିବ ବୋଲିଣ ତାକୁ ଘେନି ଅଇଲ୍ଲ ॥
ତୁମ୍ଭ ପାଶେ ଯିବେ ବୋଲିଣ ସଜାଡ଼ିଲେ ବେପାର । ଠଙ୍କା ଲୁଗା ଧାନ
କଉଡ଼ି ଅଷ୍ଟାରତନ ସାର । ୧୪ । ଠାଙ୍ଗଣା ହିଙ୍ଗୁ ମରଚ ସେ ଜୀରା କଳା-
ମରିଚ । ଗଞ୍ଜାଇ କପୂର କସ୍ତୁରୀ ମେଥି ରସୁଣି ବଚ । ୧୫ । ଅଳାଇଚ
ତେଜପତର ନାଗେଶ୍ବରକୁ ଘେନି । ଶୁଣ୍ଠି ପିପ୍ପଳୀ ହରତାଳ ମୀଳବଡ଼ିକୁ
ପୁଣି । ୧୬ । ପାନମହୁରୀ ଯେ ଧନିଆ କଳାଜୀରା ସହିତେ । ଶରେଇତା
ଜାଇପତ୍ରି ସେ ଜାଇଫଳ ସହିତେ । ୧୭ । ଅଫିମ ସହିତେ ମହୁରା ମନଶିଳ
ହିଙ୍ଗୁଳ । ଗୁଡ଼ୁଚ଼ିକ ଆଦି ଭଲ୍ଲିଆ ପୁଣି ଯେ ମହାକାଳ ।୧୮ । ଏମନ୍ତେ ସେ
କେତେ ପ୍ରକାରେ ସଙ୍ଗେ ବେପାର ଘେନି । ମେଲାଣି ମାଗିଣ ବୋଇତେ
ସେ ବସିଲେକ ପୁଣି ॥ ଯହୁଁ ପୁତ୍ର ଯାଇଁ ବସିଲ୍ଲ ସେ ବୋଇତ ଉପରେ ।
ଇନ୍ଦ୍ର ସୁଖ ମୋତେ ନ ରୁଚେ ମନ ନ ରହେ ଘରେ । ୨୦ । କେତେ
କେତେ ଦୁଃଖ ପାଇଣ ଧୋବା ତୁଠେ ରହିଲ୍ । ଏକାନ୍ତ ହୋଇ ମୁଁ
ରହନ୍ତେ ମଙ୍ଗଳା ସୁମରିଲ୍ । ୨୧ । ଅଇଲେ ସେ ମାତା ମଙ୍ଗଳା ମୋତେ
ଦେଲେ ଅଭୟ । ତୁମ୍ଭ ବନୁ ଘଡ଼ ଘଡ଼ି ମୁଁ ଯାଉଥାଇ ସେ ଧାମ ।୨୨। ଯହୁଁ
ମୁଁ ସେ ପୁର ପାଇଣ ରହିଲ୍ଲି ନିଶ୍ଚିନ୍ତେ । ଏକ ଦିନକରେ ନୟନା ଅସି
ମୋର ଅଗ୍ରତେ । ୨୩ । ତୁମ୍ଭେ ଅସିବାର ସଙ୍କେତ ଥିଲ୍ଲ ଯେ ଦିନ ଗୁରୁ ।

କେତେ କେତେ ଦଣ୍ଡ ଦେଲା ସେ ଭଉଣୀ ଯେ ମୋହର । ୨୪ । କାହୁଁ ଏତେ ଧନ ଆଣିଲୁ କହ ମୋର ଆଗରେ । ମୁଁ ବୋଇଲି କର୍ମେ ଥିଲାକୁ ଦେଲେ ମଙ୍ଗଳା ମୋରେ । ୨୫ । ମୁଁ ବୋଇଲି ଅଲୋ ଭଉଣୀ ମୋର କର୍ମରେ ଥିଲା । ତେଣୁ ଏତେ ଏତେ ସମ୍ପଦ ମୋତେ ପ୍ରାପତ ହେଲା ।୨୬ ସେ ବୋଇଲା ଯେବେ କପାଳେ ଲେଖିଥିଲା ତୋହର । ଚଷୁ ଘାଲକରେ ନଦୀ ରୁ ବେଗେ ହୁଅନା ପାର ।୨୭। ବିପରୀତ କଥା ଶୁଣିଣ ମନେ ଶଙ୍କା ଉପୁଜି । ମଙ୍ଗଳାମାତାଙ୍କୁ ଡାକିଲି ଏବଂ କଥାକୁ ତେଜି ।; ତାଙ୍କର ପ୍ରସାଦେ ନଦୀ ମୁଁ ଚକ୍ଷୁରେ ହେଲି ପାର । ତାହା ଦେଖି ନେଡେ ନମୁନା ହେଲା ଯେ ଚମତ୍କାର ।୨୯। ସୂତା ସାତଖିଅ ଦେଲା ସେ ତହୁଁ ଗୁନ୍ଥିଲି ବାଟ । ପୁଣି ଖଣ୍ଡାଗୋଟା ଆଣିଣ ଦେଲା ମୋର ନିକଟ ।୩୦। ତା ଧାରରେ ଚାଲି ଯାଆନ୍ତେ ମହା ବୋଧ ହୋଇଲା । କି କି ସୁନ୍ଦର ତୁ ଜାଣିଛୁ କହ ବୋଲି ବୋଇଲା ।୩୧। ମୁଁ ବୋଇଲି ସ୍ତ୍ରୀ ସିଏ ଅଟଇ ଶିଖିବ କି ସୁନ୍ଦର । ଅଦୋ-ଷରେ ମୋତେ ନ ଦଣ୍ଡ ଲୋ ନମୁନା ସୁନ୍ଦର ।୩୨। ଏଣୁରି ମଦଣ ସିନ୍ଦୁର ଆଣି ଦେଲା ବିଷ୍ଟାଇ । ବୋଇଲା ଏଥିରେ ଖୁଲଣା ଚାଲି ଯାଅ ଲୋ ତୁହି ॥ ସିନ୍ଦୂର ବନ୍ଧରେ ଚାଲିଲି ତେବେ ନ ଗଲା ପ୍ରତେ । ଲୁହା ମୂନେ ବାଟ ଚାଲିଲି ପୁଣି କହିବି କେତେ । ୩୪ । ଲୁହା ଗୁଡଲରେ ହାଣିଣ ହାତ ଦେଲି ମୁଁ ତାକୁ । ତେନ୍ତୁଳି ପତ୍ରରେ ପରଷି ଆଣି ଦେଲି ମୁଁ ତାକୁ ।୩୫। ତେବେ ସେ ପରତେ ନ ଗଲା ତାର ଅଟେ କି ଗୁଣ । ବାରମ୍ବାର ମୋହ ଉପରେ ହେଲା ସେ କୋପମୂର୍ତ୍ତି ॥ ଜଉଶାଳ ଘରେ ପୂରାଇ ଅଗ୍ନି ଲଗାଇ ଦେଲା । ସେହୁ ମୋର ବାଡ଼ ଭଉଣୀ ଅରେ ଦୟା ନ କଲା ।୩୭। ମଙ୍ଗଳା ମାତାଙ୍କୁ ଡ଼ାକନ୍ତେ ସେ ଯେ ଅଇଲେ ଖରେ । ପଣତ ଘୋଡ଼ାଇ ରଖିଲେ ବସାଇଣ କୋ-ଳରେ ତାହାଙ୍କ ପ୍ରସନ୍ନେ ଦେଖିଲି ମୁଁ ଯେ ତୁମ୍ଭ ଶ୍ରୀମୁଖ । ସେ ମଙ୍ଗଳା ମାତା ଫେଡ଼ିଲେ ମୋର ଯେତେକ ଦୁଃଖ ।୩୯। ଏମନ୍ତ ପ୍ରକାରେ ଖୁଲଣା କହେ ପତି ପୁରକୁ । ବୋଲେ ଯେ ଧୀବର ଭକାରି ଶୁଣ ମୋର ଗୀତକୁ ।୪୦ ।

---

## ପଞ୍ଚପଞ୍ଚାଶତ୍ ଛାନ୍ଦ

ଗୋପୀଭାଷା—ବୃତ୍ତେ

ଯନ୍ତୁ ଖଳଣୀ ଏମନ୍ତ କହିଲା । ଶୁଣି ଧନେଶ୍ୱର ହରଷ ହେଲା ॥ ହସ୍ତରେ ଖଡଗ ଧରି ସତ୍ୱରେ । ବୋଇଲା ନିଶ୍ଚେ କାଟିବି ତା ଶିର । ୨ । ଶ୍ରୀଧର ଯାଇଣ ହସ୍ତ ଧଇଲା । ଏ କଥା ଭଲ ନୁହଇ ବୋଇଲା । ୩ । ସ୍ତ୍ରୀହତ୍ୟାରେ ବଡ଼ ଦୋଷ ପାଇ । କୁମ୍ଭୀପାକ ନରକରେ ପଡ଼ଇ । ୪ । ସାବଧାନେ ଶୁଣ ମୋହର ପିତା । କହୁଅଛି ସ୍ତ୍ରୀହତ୍ୟାର କଥା ॥ ପୂର୍ବରେ ଥିଲା ଏକ ନୃପବର । କୁଶଦ୍ୱୀପରେ ଅଟଇ ତା ଘର । ୬ । ବୀର ପଣେ କେ ନୁହେ ପଟାନ୍ତର । ବଇଲୋଚନ ତାହାର କୁମର । ୭ । କ୍ଷତ୍ରିୟ କୁଳରେ ଜନମ ସେହି । ତାହାପରି ଆଉ ନ ଥିଲେ କେହି ।୮। ସେ ପୁଣି ଅଟେ ବଡ଼ ଧନୁର୍ଦ୍ଧର । ନାମ ବହଇ ସେ ହରିଣଙ୍କର । ୯ । ବଡ଼ ଦୟାଳୁ ଅଟେ ସେ ରାଜନ । ନିତ୍ୟ ପ୍ରତି ବିପ୍ରେ ଦିଅଇ ଦାନ । ୧୦ । ଦୀନ ହୀନ ଲୋକ ଦେଖଇ ଯେବେ । ବିନୟ ଭାଷା କହୁଥାଇ ତେବେ । ୧୧ । ମନ ପୂର୍ଣ୍ଣ କରିଣ ଦିଏ ଦାନ । ବିଷ୍ଣୁ କଥାରେ ରଖିଥାଏ ମନ । ୧୨ । ରାଜା ଦାମୀପଣ ଅଟଇ ଯେତେ । ମୁଖରେ ତାହା କହିବଇଁ କେତେ । ୧୩ । ପ୍ରଭାତୁଁ ଉଠିଣ ସ୍ନାନ କରଇ । ବିଷ୍ଣୁ ନାମକୁ ମନେ ସୁମରଇ । ୧୪ । ଶିବ ନାମକୁ ସେ କଣ୍ଠରେ ଘୋଷି । ଚଣ୍ଡୀ ପୂଜା କରେ ଘଡ଼ିଏ ବସି । ୧୫ । ତହୁଁ ଉଠିକରି କରଇ ହୋମ । ଅଗ୍ନିରେ ଘୃତ ଦେଇ ତୋଷ ମନ । ୧୬ । ଆଖଡ଼ା ଶାଳରେ ମିଳଇ ଯାଇଁ । ଶସ୍ତ୍ର ଶାସ୍ତ୍ର ବିଦ୍ୟା ଶିଖଇ ତହିଁ । ୧୭ । ସେଠାରୁ ଚଳଇ ବିଷ୍ଣୁ ଦର୍ଶନେ । ସଙ୍ଗରେ ଥାନ୍ତି ସେ ପଦାତିମାନେ । ୧୮ । ତହୁଁ ଯାଇକରି ଆସ୍ଥାନେ ବସି । ବିଷ୍ଣୁ ଚରିତକୁ ମନରେ ଘୋଷି । ୧୯ । ଝୁଣ୍ଟିଆ ପଢିଆରି ସେବକଙ୍କୁ । ପଣ୍ଡ ବରତନ ଦିଏ ତାହାଙ୍କୁ । ୨୦ । ଆପଣା ରାଜ୍ୟ ପରଦେଶ କଥା । ବୃଝାମଣା କରଇ ମହାରଥୀ । ୨୧ । ଶୀତକାଳେ ଅଗ୍ନିଦାନ କରଇ । ଗ୍ରୀଷ୍ମକାଳେ ପାଣି ପଣା ଦିଅଇ । ୨୨ । ଅପନ୍ତରା ବାଟେ ବୃକ୍ଷ ରୋପଇ । ବାମ୍ଫୀ ପୁଷ୍କରଣୀମାନ ଖୋଳଇ । ୨୩ । ପୁତ୍ର ସ୍ନେହ କରି ପାଳେ

ପରକା । ବଡ଼ ଧାର୍ମିକ ଅଟଇ ସେ ରଜା । ୨୪ । ଅନେଶ୍ଵତ ମହାଦେଈ ତାହାର । ନନ୍ଦନ ନାହିଁ କୋଳରେ କାହାର । ୨୫ । ପାଟରାଣୀ ତାର ଅଟେ ସୁରେଖା । ନାହିଁ ରୂପ ତା ଜଗତରେ ଦେଖା । ୨୬ । କଜାଣି ସ୍ଵର୍ଗ ଅପସରୀ ସେହୁ । ଉପମା ଦେବାକୁ ପୃଥ୍ବୀରେ ନାହିଁ । ୨୭ । ସେ ଚତୁରସ୍ମଣି ଅଟେ ସୁଜାଣ । ନିତ ଶୁଣୁଥାଇ ବସ୍ତ୍ର ପୁରାଣ । ୨୮ । ଦେବୀ ଦୁର୍ଗା ଚଣ୍ଡୀ ନ ଜାଣେ କିଛି । କେବଳ ମନ ପଦ୍ମପାଦେ ଅଛି ॥ ସବୁ ରାଣୀଙ୍କର ଉପରେ ଶ୍ରେଷ୍ଠ । ମହାଦେଈଙ୍କର ଉପରେ ଜ୍ୟେଷ୍ଠ । ୩ । ସୁରେଖା ନାମ ଅଟଇ ତାହାର । ସାତମାସ ହୋଇଅଛି ଗର୍ଭର । ୩୧ । ଦିନେ ସେ ରାଜାକୁ ରାଣୀ ଧଇଲା । କୋମଳ କରି ବଚନ କହିଲା । ୩୨ । ହେ ନାଥ ତୁମ୍ଭେ ମୋ ପ୍ରାଣ ଠାକୁର । ତୁମ୍ଭ କୁଶଳେ ମୋର ଅଧିକାର । ୩୩ । ମୁଁ ସିନା ଅଟଇ ତୁମ୍ଭର ଦାସୀ । କଥାଏ କହିବି ନୋହିବ ରୋଷି । ୩୪ । ନୃପତି ବୋଲେ କି କହିବୁ କହ । ଶୁଣିଲେ ମନରୁ ଯିବ ସନ୍ଦେହ ।୩୫। ପାଟରାଣୀ ବୋଲେ ଶୁଣ ହେ ଦେବ । ଏତେ ଧର୍ମ ଆଚରିଲେ କି ହେବ । ୩୬ ॥ ପରସ୍ତ୍ରୀ ସଙ୍ଗ ତୁମ୍ଭେ କରୁଛ ଯେଣୁ । ସର୍ବ ଧର୍ମ ନାଶ ହୋଇବ ତେଣୁ । ୩୭। ନୃପ ବୋଲଇ ଶୁଣ ରାମାମଣି । ପରସ୍ତ୍ରୀ ସଙ୍ଗ ମୁଁ ଯେ ହରିଲି ପୁଣି । ୩୮ । ତେଣେ ମୋହର ଯେତେ ପାପ ହେଲା । ବସ୍ତ୍ର ଭକତରେ ସେ କ୍ଷୟଗଲା । ୩୯ । ତେଣୁ ଏତେ ଧର୍ମ କରୁଛି ମୁହିଁ । ଏ କଥାମାନ ନ ଜାଣୁ କି ତୁହି । ୪୦ । ଦେବତା ବ୍ରାହ୍ମଣ ପୂଜଇ ଯେତେ । ସେ ପାପ କାହିଁ ଲାଗିବଟି ମୋତେ ।୪୧। ରାଣୀ ବୋଲେ ତୁମ୍ଭେ ହେଲ କି ବାଇ । ଏହା କହିଲେ କି ମନକୁ ପାଇ । ୪୨ । ସାବଧାନ ହୋଇ ଶୁଣ ରାଜନ । ବ୍ରାହ୍ମଣ ବ୍ରାହ୍ମଣୀ ଏବେନି ଜନ । ୪୩ । ବ୍ରାହ୍ମଣକୁ ଲକ୍ଷେ ସୁବର୍ଣ୍ଣ ଦେବା । ବ୍ରାହ୍ମଣୀ ସଙ୍ଗରେ ପ୍ରୀତ କରିବା । ୪୪ । ସେ ଧନେ କି ପାପ ହୋଇବ ନାଶ । ଏ କଥା ମନେ ବିଚାର ନରେଶ । ୪୫ । ଦକ୍ଷିଣ କର୍ଣ୍ଣେ ଭାଗବତ ଶୁଣି । ଇତର କଥା ପଞ୍ଚମନେ ଗୁଣି । ୪୬ । ଭକତ କଲେ କି ଧର୍ମ ହୋଇବ । ଏହା ବିଚାର ନ କର ହେ ଦେବ । ୪୭ । ବିଧାତା କରିଛି ଯୋଡ଼ିଏ ଆଖି । ଏକଇ

ନେନେ ବସ୍ତ୍ର ପଦ ଦେଖି । ୪୮ । ଆରେକ ନେନେ ଇତରକୁ ଦେବ ।
ତହିଁରେ ଅବା କି ଫଳ ପାଇବ । ୪୯ । ତୁମ୍ଭେ ଏତେ ଧର୍ମ କଲେ
ନରେଶ । ଏଥିରୁ ସବୁ ଧର୍ମ ଯିବ ନାଶ । ୫୦ । ନୃପତି ବୋଲଇ ତୁ ବଡ଼
ଜ୍ଞାନୀ । କିଛି ଧର୍ମ ନ ଜାଣନ୍ତି କାମିନୀ । ୫୧ । ତୋର କଥାରେ କି ମୋ
ମନ ତୋଷ । ଯେଉଁଥି କହ କହୁଛି ତୋ ପାଶ । ୫୨ । କ୍ଷୁଧାବେଳରେ
ଭୋଜନ ସାରିବ । ଜଳ ଦେଇ ଆଚମନ କରିବ । ୫୩ । ତେବେ ସିନା
ସିଦ୍ଧ ହୁଏ ଶରୀର । ଏହାକୁ ନ ବାଞ୍ଛୁ ସମାଚର । ୫୪ । ସେପରି ସବୁ
ଅନୀତି କରିବ । ବସ୍ତ୍ର ନାମ ଗୋଟି ଯେବେ ଧରିବ । ୫୫ । ସବୁ ଦୁଷ୍କୃତ
ହୋଇବ ଦହନ । ତୁଳାକୁ ଦେଖିଲେ ଅଗ୍ନି ଯେସନ । ୫୬ । ଶୁଣି ପାଟ
ରାଣୀ ବୋଲେ ରାଜାକୁ । ତୁମ୍ଭର କଥା ସୁନ୍ଦର ତୁମ୍ଭଙ୍କୁ । ୫୭ । ଯେଉଁ
ଲୋକ ନିତି ଧର୍ମ ଆଚରେ । ସେ ପୁଣି କାହିଁପାଇଁ ଅଧର୍ମ କରେ । ୫୮ । ଅଜ୍ଞାନ
ଜ୍ଞାନ ଯେ ଦୁଇଟି ବାଟ । ଅବାଟେ ଗଲେ ନ ପାଇବ ଭେଟ । ୫୯ ।
ଅବାଟରେ ଗଲେ ମାଡ଼ଇ କଣ୍ଟା । ପାଦକୁ ଗୁନ୍ଥିଲେ ନୁଆଇଁ ଅଣ୍ଟା । ୬୦ ।
ବାଟରେ ଗଲେ ସୁଖେ ଯାଉଥାନ୍ତି । କଣ୍ଟା ଗୋଟିଏ କାହିଁ ମାଡ଼ନ୍ତି ॥ ତୁମ୍ଭେ
ଯେ ଯେହ୍ନପରି ଧର୍ମ କର । ବାଟେ ଯାଉଁ ଯାଉଁ ଅବାଟ ଧର । ୬୨ । ଏକ
ପାଦ ଜ୍ଞାନ ପଛକୁ ଦିଅ । ଆରେକ ପାଦ ଅମଡ଼ାରେ ଥୁଅ । ୬୩ । ତୁମ୍ଭେ
ବୋଲୁଥାଅ ଧରମ ହେଲା । ଏ ହସ୍ତ ପାପ ସେ ହସ୍ତକୁ ଗଲା । ୬୪ ।
ଶୁଣିକରି କୋପ ହେଲା ନରେଶ । ତତ୍କ୍ଷଣେ ଧରିଲା ରାଣୀର କେଶ । ୬୫ ।
ଖଡ଼ଗରେ ଶିର ଛେଦନ କଲା । ସେ ପାଟରାଣୀର ଜୀବନ ନେଲା । ୬୬ ।
ସେଦିନୁ ରାଜା ଯେ ହେଲା ଅଜ୍ଞାନ । ପାଶୋରିଲା ସେ ବସ୍ତ୍ରଙ୍କର ନାମ ।
ମୃତ୍ୟୁ ପରେ କେତେ ଦଣ୍ଡ ପାଇଲା । କୁମ୍ଭୀର ଗୋଟାଏ ଜନମ ହେଲା ॥
କୌଶାମ୍ବୀ ସହସ୍ର ବରଷଯାଏ । ତହିଁ କୁମ୍ଭୀର ହୋଇଣ ସେ ଥାଏ । ୬୭ ।
ରାଣୀ ଗର୍ଭେ ଥିଲା ଯେଉଁ ନନ୍ଦନ । ଧନିଷ୍ଠ ଘରେ ସେ ହେଲା ଜନମ ।୬୮।
ପିତାର ନାମ ହେଲା ଗଙ୍ଗାଧର । ଏହାର ନାମ ହେଲା ଦାମୋଦର ।୬୯।
ବାରପଣରେ ସେ ଜଗତ ଜିତ । ବଡ଼ ଦୟାଳୁ ସେ ଅଟଇ ମତି ।୭୦। କୁମ୍ଭୀର

ହୋଇଛୁ ତାହାର ପିତା । କେ ଅନ୍ୟ କରିବ କପାଳ କଥା ॥ ପୁତ୍ର ହୋଇଣ
ଯେ ତାଙ୍କୁ ମାଇଲା । ପୂର୍ବର କଥା ଅନ୍ୟଥା ନୋହିଲା ॥ ତୁମ୍ଭେ ସ୍ତ୍ରୀ ସ୍ୱହତ୍ୟା-
ଦୋଷ ନ କର । ବାରେ ମୋ ବଚନ ଘେନ ପିଅର । ୭୫ । ଧନେଶ୍ୱର
ବୋଲେ ଶୁଣରେ ବଳା । ମା ତାଙ୍କୁ ତୋର ଏତେ କଷ୍ଟ ଦେଲା । ୭୬ ।
ଶ୍ରୀଧର ବୋଇଲା ଯେ ହେଲା ହେଉ । ମୂଢ଼ପଣ ତାର ସର୍ବଦା ଥାଉ ।୭୭।
ତୁମ୍ଭେ ଏ କଥାକୁ ନ କର କୋପ । ମୋର ବୋଲକର ଛାଡ଼ ସନ୍ତାପ ।୭୮।
ସେ ଯେବେ ତାଙ୍କୁ ଏତେ ଦଣ୍ଡ ଦେଲା । ପୂର୍ବେ ଏ ପୁଣି ତାଙ୍କୁ ଦଣ୍ଡିଥିଲା ॥
ନୋହିଲେ ଯେବେ ସେ ମିଛେ ଦଣ୍ଡିଛି । ବିଧାତା ଉପରେ ରହି ଦେଖୁଛି ॥
ସତ ଅସତ ବାଛିବ ମନରେ । ଭୁଲ କରିଥିବ ଯେ ନାକଢରେ । ୮୧ । କଥା
ବୁଝିକରି ଦଣ୍ଡିବ ତାଙ୍କୁ । ତୁମ୍ଭେ କମାଇ ଯାଅ ମାରିବାକୁ ।୮୨। ତାକୁ
ଦଣ୍ଡିଲ ସେ ଦଣ୍ଡ ପାଇବ । ତୁମ୍ଭେ କମା ହତ୍ୟା କାନ୍ଧକୁ ନେବ । ୮୩ ।
ଶ୍ରୀଧର ବୋଇଲା ଏହି ପ୍ରକାରେ । ଖଳଣା ବୋଧ ହେଲା ଏ କଥାରେ ।୮୪
ଶୁଣି ଧନେଶ୍ୱର ହରଷ ହେଲା । ଶାନ୍ତ ହୋଇଣ ସେଠାରେ ବସିଲା ।୮୫।
ପୁତ୍ରକୁ ନେଇ କୋଳେ ବସାଇଲା । ମୁଖେ ମୁଖ ଦେଇ ଖେଳେ ଚୁମ୍ବିଲା ॥
ବୋଇଲା ଧନ୍ୟ ଅଟୁରେ ଶ୍ରୀଧର । ଏତେ ଜ୍ଞାନ କାହୁଁ ହୋଇଲା ତୋର ॥
କେତେ କରିଥିଲି ପୂର୍ବେ ସୁକୃତ । କୁଳଚନ୍ଦ୍ରମା ମୋ ମନ୍ଦିରେ ଜାତ । ୮୮ ।
ଏତେ ଦୁଃଖ ପାଇକଲ୍ ମୋତେ । କି କଲ୍ୟାଣ ବାବୁ କରିବ ତୋତେ ॥
ସୁଖରେ ସର୍ବଦା ତୋ ଦିନ ଯାଉ । ଗୋବିନ୍ଦ ପାଦେ ସଦା ଚିତ୍ତ ଥାଉ ।୯୦।
ତୋର ଲାଗି ମୋର ଯେ ଦୁଃଖ ଗଲା । ଏଣିକ ସୁଖ ଉତପତ୍ତି ହେଲା ।୯୧।
ଧନ୍ୟ ୨ ତୋର ଅଟଇ ବୁଦ୍ଧି । ଦୟାଳୁପଣେ ଅଟୁ ବାରିନିଧି ।୯୨। ମାତାକୁ
ତୋହର ଦଣ୍ଡିଲି ଯେତେ । ତିଳେ ମାତ୍ର କୋପ ନ କଲୁ ଚିତ୍ତେ । ୯୩ ।
ଏହି ବୁଦ୍ଧି ତୋର ସର୍ବଦା ଥାଉ । ତୋହର ଦୁର୍ଗତି ଯେ ନାଶ ହେଉ ।୯୪।
ଧନେଶ୍ୱର ଏହା କଲ୍ୟାଣ କଲା । ପୁତ୍ରକୁ ଘେନି ନିଶ୍ଚିନ୍ତେ ରହିଲା । ୯୫ ।
ତାହାପରେ କେହି ମାନ ନ କଲେ । ଯେ ଯାହା ମନ୍ଦିରେ ସୁଖେ
ରହିଲେ । ୯୬ । ଏ ଗ୍ରନ୍ଥେ କହେ ଧୀବର ଭିକାରୀ । ଦୁଃଖନାଶିନୀ

ମୋତେ କର ପାର । ୯୭ । ଭକ୍ତି ପରେ ସାହାପକ୍ଷ ହୁଅ । କଣ୍ଠରେ ବସି ପଦ କହି ଦିଅ । ୯୮ ।

———o———

## ଷଟ୍‌ପଞ୍ଚାଶତ୍ ଛାନ୍ଦ

ରାଗ—କଳଶା

ଶୁଣ ହେ ସୁଜନଜନେ ଏଥୁଁ ଅନନ୍ତର । ନସୁନାକୁ ଯେଉଁ ରୂପେ ପଡ଼ିଲା ବିପତ୍ତି । ୧ । ଚୈତ୍ର ମାସର ଶୁକ୍ଳପକ୍ଷ ଗୁରୁବାର । ସେ ଦିନରେ ନସୁନା ଯେ ଶୋଇଅଛି ଘର । ୨ । ଉରଗ ଜରରେ ତାର ନିଷ୍ଠୁରେ ଦଂଶିଲା । ତନ ଦଣ୍ଡ ଭିତରୁ ତାହାର ପ୍ରାଣ ଗଲା । ୩ । ଯମଦୂତେ ତାହାକୁ ଯେ ବାନ୍ଧି ନେଇଗଲେ । ଜମ୍ବୁପତି ଆଗେ ତାକୁ ଉଭା କରାଇଲେ । ୪ । କାଳଦଣ୍ଡ ହସ୍ତେ ଯେଣୁ ବସିଛି ନୃପତି । ନସୁନାକୁ ଗୃହିଁଣ ହୋଇଣ କୋପମୂର୍ତ୍ତି ॥ ବିକଟାଳ ରୂପ ତାର ନସୁନା ଗୃହିଁଲା । ଲହୁ ଡେଙ୍ଗା ଏକ ଯେଣୁ ତା ମୁଣ୍ଡେ ପିଟିଲା । ୬ । ବୋଇଲା ଏଡ଼େ ଅଜ୍ଞାନ ଦୁଷ୍ଟ ଅଟୁ ତୁହି । ଭଗବତୀଙ୍କ ଏତେ ଦଣ୍ଡ ଦେଲୁ କାହିଁ ପାଇଁ । ୭ । ଯେଣୁ ଯାଅ ଦୂତମାନେ ଏହାକୁ ତତ୍ପର । ରୌରବ କୁଣ୍ଡରେ ନେଇ ପକାଅ ସତ୍ୱର ।୮। ଆଜ୍ଞା ପାଇ ଦୂତମାନେ ତହୁଁ ଚଳିଗଲେ । ରଉରବ କୁଣ୍ଡେ ନେଇ ତାକୁ ପକାଇଲେ ॥ ଗୃଧ୍ର ପାଷାଣରେ ତାକୁ ମାରୁଛନ୍ତି ଘୋଟ । ମଲି ମଲି ବୋଲି କରୁଥାଏ ଛଟ ପଟ। ।୧୦। ପୁଣି ଦୂତମାନେ ଯେ ତାହାକୁ ଯେଣୁଗଲେ । କୁମ୍ଭୀପାକ ନର-କରେ ବେଗେ ପକାଇଲେ ।୧୧। ଖଣ୍ଡ ଖଣ୍ଡ କରି ତାକୁ ମାରଇ କୁମ୍ଭୀର । ଯୋକମାନେ ବେଢ଼ିଛନ୍ତି ଅଷ୍ଟାଙ୍ଗ ଆକର । ୧୨ । ଗୃଧ୍ରପକ୍ଷୀମାନେ ଯେ ଉପରେ ହାଣୁଛନ୍ତି । ନିର୍ଦ୍ଦୟା ପୁରେ ତାହାକୁ ଦୟା ନ କରନ୍ତି ॥ ଦୂତ-ମାନେ ଶୁଣି ଯେ ବହନ ଚଳିଗଲେ । ତପତ ବାଲିରେ ତାକୁ ଘୋଷାରିଇ ନେଲେ ।୧୩। ଅଗ୍ନିର ଉପରେ ତାକୁ ନିଅନ୍ତେ ଚଲାଇ । ମଲି ମଲି ବୋଲି ଡ଼ାକେ ରଖ ମୋତେ ଭାଇ ।୧୪। ଦୂତମାନେ ବୋଇଲେ ତୁ ଏତେବେଳେ କହୁ । ଖୁଲଣାକୁ ଯେତେବେଳେ ଦଣ୍ଡ ଦେଉଥାଉ ।୧୫। କେତେବେଳେ ଅବା ସେ ଦିଅନ୍ତି ଗୋପଡ଼ାଇ । ତେଣେ ଅଳ୍ପ ଲୋକ ତାକୁ ପ୍ରହାର

କରଇ ।୧୭। କେତେବେଳେ ତା ଦେହ ମାଂସ ଅବା କାଟି । ତହିଁରେ ବୋଲି ଦିଅନ୍ତି ଯୋରପକ୍ଷୁ ବାଟି । ୧୮ । ମଲ୍ ବୋଲ୍ ହେଉଥାଇ ସେହୁ ଯେ ଆକୁଳ । ଏତେକେ ତାହାଙ୍କ ଚକ୍ଷୁ ନୋହଇ ବିକଳ ।୧୯। ଏହିରୂପେ କେତେ ଦଣ୍ଡ କେ କହେ ମୁଖରେ । ତେତେବେଳେ କେହି ଯାହା ନାହାନ୍ତି ପାଖରେ । ୨୦ । ଓଷ କାଳରେ ଏକା ଯାହା ଅଟେ ରାମ ନାମ । ତୁମ୍ଭେ ଭଜୁଥିଲେ ତାଙ୍କୁ କି କରିବ ଯମ ।୨୧। ନସୃନା ଯେ ଏ ଜନ୍ମରେ କିଛି ଦେଇ ନାହିଁ । ସେକାଳେ ପାମରି ଅଉ ପାଇବଟି କାହିଁ ।୨୨। ବୋଇଲା ହେ ବୀରମାନେ ମୋର ବୋଲ କର । ବହୁତ ଦୁଃଖ ପାଇଲି ଅବର ନ ମାର ।୨୩। କ୍ଷୁଧାରେ ମୋହର ପେଟ ବଡ଼ ଜଳୁଅଛି । ଖାଇବା ନିମନ୍ତେ ମୋତେ ତୁମ୍ଭେ ଦିଅ କିଛି । ୨୪ । ତାହା ଶୁଣି ଦୂତମାନେ ବେଗେ ଚଳି- ଗଲେ । ଏହିର ଭିତରେ ନେଇ ତାଙ୍କୁ ଛାଡ଼ିଦେଲେ । ୨୫ । ନାନା ଜାତି ଉପହାର ପଡ଼ିଅଛି ତହିଁ । ପୁରି ନବାତ କାକରା ଛେନା ଦୁଧ ଦହି ।୨୬। ନସୃନା ବୋଇଲା ମୋତେ ଦିଅ ଖାଇବାକୁ । ଏହା ଶୁଣି ଦୂତମାନେ ପିଟିଲେ ତାହାଙ୍କୁ ।୨୭। ବୋଇଲେ ମର୍ତ୍ତ୍ୟରେ ତୁ ଲୋକେ କିଛି ଦେଇନାହୁଁ । ଏବେ ଏଥି ଲୋଡ଼ିଲେଟି ପାଇବୁ ତୁ କାହୁଁ ।୨୮। ଭଉଣୀକି ତୋହର ଯେ ଦେଇଥିଲୁ ବିଷ । ଏବେ ଏହିଠାରେ ତୁ ଗରଳ କର ଗ୍ରାସ । ୨୯ । ଏମନ୍ତ ପ୍ରକାରେ ଦୂତେ ଦିଅନ୍ତି କଷଣ । ମୁଖରେ କେ ଅବା ତାହା କହି- ପାରେ ପୁଣ ।୩୦। ଘେନିଗଲେ ତାହାଙ୍କୁ ଯେ ଜନ୍ତୁପଥ ପାଶ । ଦେଖିକରି ଜନ୍ତୁପଥ କୋପରେ ହୁତାଶ ।। ଚତୁର୍ଗୁଣ ପାଞ୍ଚି ଦେଖି ଦଣ୍ଡ ତାଙ୍କୁ ଦେଲେ । ଗୃଧ୍ର ପକ୍ଷୀଗୋଟି କରି ଜନ୍ମ ତାଙ୍କୁ କଲେ ।୩୯। ଅଣ୍ଟ କୁଡ଼ୀ ଦୋଷ ତାଙ୍କୁ ଲଗିଲାକ ଯହୁଁ । ଗୃଧ୍ର ପକ୍ଷୀରେଟି ତାଙ୍କୁ ଜନ୍ମ ଦେଲେ ତହୁଁ ।୪୦। ଧର୍ମ କରିଥିଲେ ଯେ ଧର୍ମରେ ପାର ହୋଇ । ଅଧର୍ମରେ ଗଲେ ତାଙ୍କୁ ବାଟ ଅଉ ନାହିଁ ।୪୧। ଶୁଣ ହେ ସୁଜନଜନେ ଏଥିର ଚରିତ । କେତେ କେତେ ଦୁଃଖ ଯେ ଦେଲିକ ଜଗନ୍ନାଥ । ୪୨ । ତେଣୁ ଧୀବର ଭିକାରି ଏ ରସେ ରସଇ । ପ୍ରତିଦିନ ଶ୍ରୀହରି ନାମକୁ ପ୍ରକାଶଇ ।୪୩। ସୁଜନଜନମାନେ ଶ୍ରୀହରି

ନାମେ ରତ । ଯେଉଁ ନାମ ଧଇଲେ କଲୁଷ ହୁଏ ନାଶ ॥ ବଡ଼ଉ ଭାଳଙ୍କୁ ଯେଉଁ ନାମ ସଙ୍ଗେ ଯିବ । ତାହାଙ୍କୁ ଛାଡ଼ି କମାଇଁ ଅନଙ୍କୁ ଭଜିବ ।୪୫। ଧୀବର ଭକାରି ମନ ଆଉ ପଦ୍ମପାଦେ । ଦୀନବନ୍ଧୁ ଉଦ୍ଧାର କରିବେ ଅପ୍ରମାଦେ । ୪୬ ।

---

## ସପ୍ତପଞ୍ଚାଶତ୍ ଛାନ୍ଦ

### ରାଗ—ରାମକେରୀ

ଏଣେ ଜମ୍ବୁନାସୁନ୍ଦରୀଙ୍କ ଉରଗ ଦଂଶିଥିଲା । ଶିରୀଧର ଯୋଗେ ପରାଣ ଦେହୁ ଯେ ବରଜିଲା । ୧ । ମୃତ ପିଣ୍ଡ ଗୋଟି ତାହାର ଦହନ ସେ କରାଇ । ଏକାଦଶ ଦିନେ ତାହାର ପ୍ରେତକର୍ମ ବଢ଼ାଇ । ୨ । ବିଧି ବିଧାନରେ ତାହାର ପ୍ରେତ କର୍ମ କରିଲେ । ଯେ ଯାହା ମନ୍ଦିରେ ଗମନ କଲେ କାର୍ଯ୍ୟ ଶେଷରେ । ୩ । ଯେତେ ଯେ ସୈନ୍ୟ ଶ୍ରୀଧର ଆଣିଥିଲା ସଙ୍ଗର । ତାହାଙ୍କର ପାଇଁ ସେ ପୁଣି ତୋଳାଇଲା ମନ୍ଦିର । ୪ । ସହର ଯେମନ୍ତ ପ୍ରକାରେ ତେମନ୍ତ ଘର ତୋଳା । ସପ୍ତ ଯୁଣାଯାଏ ଲାଗିଛି ତହିଁ ଓଳିକି ଓଳା । ୫ । ଏ ଭିତରେ ରହି ଗୃହମାନେ ଦେହୁ ଚଉ ଦିଗଇ । ଦେଖିଲେ ସବୁର ମନକୁ ଶୋଭିବନ ସେ ପାଇ । ୬ । ବଗିଚାକୁ ଆଉ ବଖରା କଲା ସେ ଭିନ୍ନ ଭିନ୍ନ । କାହିଁରେ ରଖିଛି ହସ୍ତୀକି ଆଉ ଅଶ୍ୱ ସଦନ । ୭ । କେଉଁ ଘରେ ଅଜା ଅଛନ୍ତି କେଉଁ ଘରରେ ଗାଈ । କେଉଁ ଘରେ ଓଟମାନ ସେ ଅଛନ୍ତି ବନ୍ଧା ହୋଇ । ୮ । କାହିଁରେ ମୟୂର ଅଛନ୍ତି କେଉଁଠାରେ ଡାହୁକ । କେଉଁ ଘର ଗୋଟା ଭିତରେ ଅଛନ୍ତି ସାରି ଶୁକ । ୯ । କାହିଁ ଚୂଲିଆ ଯେ ଅଛନ୍ତି କେଉଁଠାରେ ଗୋବରା । କେଉଁଠାରେ ରାଜହଂସ ଯେ କେଉଁ ମନ୍ଦିରେ ପାରା । ୧୦ । ପୁଣି ନଦୀ ତଟ ମଧ୍ୟରେ ବସାଇଲେ ବଜାର । ଛତିଶ ଜାତିଙ୍କି ବସାଇ କରିଲେ କାରବାର । ୧୧ । କାହିଁ ପାନ ମଞ୍ଚି ଅଛନ୍ତି କେଉଁଠାରେ ପାଇକ । କେଉଁଠାରେ ଛନ୍ତି ଖୁଣ୍ଟିଆ କେଉଁଠାରେ ସେବକ । ୧୨ । ଏମନ୍ତ ପ୍ରକାରେ ଶ୍ରୀଧର ସବୁ ସୈନ୍ୟଙ୍କୁ ରଖି । ପରଜାମାନଙ୍କୁ ପାଳିଣ କରାଇଲା ସେ ସୁଖୀ । ୧୩ ।

ବ୍ରାହ୍ମଣମାନଙ୍କୁ ସେ ପୁଣି ବହୁତ ଧନ ଦେଲା । ଠାବେ ଠାବେ ପୁଷ୍କରଣୀ ସେ କୂପ ବାପୀ ଖୋଳିଲା । ୧୪ । ଅପନ୍ତରା ବାଟେ ନେଇଣ ବଟବୃକ୍ଷ ସେ ରୋପି । ଜଗତୀ ଅଟ୍ଟାଳି ଦେଉଳ ସ୍ଥାନେ ସ୍ଥାନେ ସେ ସ୍ଥାପି । ୧୫ । ମଙ୍ଗଳାଙ୍କୁ ଧ୍ୟାନ କରଣ ସୁଖେ ଅଛନ୍ତି ତହିଁ । ଘାଗରା ଦେଣ୍ଟେ ଶମନର ବାଧା ଯେ ନ ଲାଗଇ । ୧୬ । ଅପୁତ୍ରିକ ହୋଇ ଗୋଟିଏ ସେଠାରେ ଯେ କାହାନ୍ତି । ସମସ୍ତଙ୍କ ଘରେ ବାଳକ ଖେଳା ଲୀଳା କରନ୍ତି । ୧୭ । କହଇ ଧୀବର ଭକତ ମୋତେ ମଙ୍ଗଳା ରଖ । ଶ୍ରୀଧର ପୁତ୍ରଙ୍କୁ ସେଠାରେ ଯେତେ ଦେଲେକ ସୁଖ । ୧୮ ।

---

## ଅଷ୍ଟପଞ୍ଚାଶତ୍ ଛାନ୍ଦ

ରାଗ—କାଳି

ଶୁଣ ସୁନରେ ଏଥୁଅନ୍ତରେ କଥା ହୋଇଲା ଯେତେ । କହୁଛି ମୁହିଁ କଥା ବୁଝାଇ ଶୁଣ ଶ୍ରବଣ ପତେ । ୧ । ଏକଦିନର ସେ ଧନେଶ୍ୱର ନୃପତ ବସିଅଛି । ପାତ୍ର ମନ୍ତ୍ରୀଙ୍କ କତଙ୍କ ଡାକ ପ୍ରିୟବାଣୀ କହିଲା । ୨ । ଶୁଣ ସେବକ ଆଦି ପାଇକ ଯେତେକ ଅଛ ମୋର । ଏ ରାଜ୍ୟେ ରାଜା ମୋର ତନୁଜ ହୋଇବ ଶିରୀଧର । ୩ । ତୁମ୍ଭର ଚିତ୍ତେ ଆସେ କେମନ୍ତେ ବାହୁର ମୋତେ କହ । ଶୁଣି ମୁଖକୁ ମୋର ମନକୁ ଜାଣ ଯାଉ ସନ୍ଦେହ ॥ ତା ଶୁଣି ପାତ୍ର ମନ୍ତ୍ରୀ ଯେତେକ ଅତ ହରଷ ହେଲେ । ନିଷ୍ଟେ ଏ କଥା କରନ୍ତୁ ଦେବ ବୋଲିଣ ସେ ବୋଇଲେ ॥ ଏ ରାଜ୍ୟେ ରାଜା ହେଲେ ଶ୍ରୀଧର କଥା ହୋଇବ ଶୋଭା । ଆମ୍ଭ ମନକୁ ଆସେ ଏ ଭଲ ନୃପତ ପଦ ଦେବା । ୬ । ଅଭିଷେକର ଲଗ୍ନ ସତ୍ୱର ବୁଝିଲେ ଯେ ପଣ୍ଡିତ । ରାଜାର ପାଶେ କହିଲେ ତୋଷେ ଶୁଣ ହେ ନୃପନାଥ । ୭ । ଅଜକୁ ଅଛି ପାଞ୍ଚ ଦିବସ ନୃପତ ହେବା ପାଇଁ । ଧନୁ ଲଗ୍ନରେ କକଡ଼ା ପରେ ଚନ୍ଦ୍ରମା ଅଛି ରହି । ୮ । ଏ ଅନୁରୂପେ ଲଗ୍ନ ବ୍ୟବସ୍ଥା ପଣ୍ଡିତ କଲେ ଯହୁଁ । ଶୁଣି ନରେଶ ହେଲେ ସନ୍ତୋଷ ସେ ଧନେଶ୍ୱର ତହୁଁ । ୯ । ଦିଅ ଟମକ ଆସନ୍ତୁ ଲୋକ ଉତ୍ସବ କର ଯାଇଁ । ଭାଅଇ ପିଙ୍କି ଲଗ୍ନର ବଧୂ ଦାନ ଭିକାରୀ କହି ॥

---

# ଊନଷଷ୍ଟିତମ ଛାନ୍ଦ

## ରାଗ—ରାମକେରୀ

ଭଆଣ ଲଗ୍ନର ନିଶାନ ବାଜେ ଝମକ ବାଜା । ଉତ୍ସବ ଲଗିଛି ନଗ୍ରରେ ହେବେ ଶ୍ରୀଧର ରାଜା । ୧ । ଆନନ୍ଦିତ ହୋଇ ନଗରେଣ ଘରେ ଘରେ ଯେବୁବ । ବସାଇଲେ ପୂର୍ଣ୍ଣକୁମ୍ଭକୁ ମହା ଉତ୍ସବ କରି । ୨ । ଠାବେ ଠାବେ ନାନା ଛଚନ୍ଦ ଦାଣ୍ଡ ଘାସକୁ ଛେଲି । ଖାଲି ଠକର ଯମ କଲେ ପକାଇଣ ହେ ବାଲି । ୩ । ଅପନ୍ତର ଘରମାନଙ୍କୁ ଜନେ ମଣ୍ଡଣି କଲେ । ଚାନ୍ଦକାରମାନ ଡ଼କାଇ ତହିଁ ଚାନ୍ଦ ଲେଖିଲେ । ୪ । ଅଧିବାସମାନ ବଢ଼ାଇ ସବେ ହରଷ ହୋଇ । ମୁଖାଗ୍ନ ଗୋଲ ଦେହଲେ ପୁର ଅଛଇ ମଣ୍ଡି । ୫ । ନଟକାରୀ ନାଚ କରନ୍ତି ବାଜେ ଶଙ୍ଖ ମହୁରୀ । ଦାଉଣ୍ଡି ମୃଦଙ୍ଗ କଂସାଳ ଠାବ ଠାବରେ ପୂରି । ୬ । ଦିଣ୍ଡିଡ଼ ଜଲଇ ନୃପତି ଦାଣ୍ଡେ ବୁଲି ଅଇଲେ । ଭାଟ ଭିକାରୀଙ୍କି ବହୁତ ଧନରତ୍ନ ଯେ ଦେଲେ । ୭ । ସେ ବୃଧ ବ୍ରାହ୍ମଣ ବଢ଼ାଇ ସବେ ହୋଇଲେ ତୋଷ । ପାଟରାଜା ହେଲେ ଶ୍ରୀଧର ସୁଖେ ପାଳିଲେ ଦେଶ । ୮ । ମାତାଙ୍କୁ ଅବୋଉ ରହିଲେ ଧନେଶ୍ୱର ନୃପତି । ମଙ୍ଗଳାମାତାଙ୍କ କୃପାରୁ କିଛି ନାହିଁ ଦୁର୍ଗତି । ୯ । ପୁତ୍ର ସ୍ନେହ କରି ଶ୍ରୀଧର ପାଳୁଅଛି ପରଜା । ଦିବ୍ୟ ବୁଝାମଣା କରଇ ପାଳି ଜନ ପରଜା । ୧୦ । ଆପଣା ରାଜ୍ୟ ପରଦେଶ କଥାମାନ ବୁଝଇ । ଯାହାର ଯେମନ୍ତ ଗତିକ ବୁଝି ଦଣ୍ଡ ଦିଅଇ । ୧୧ । ଏକ ଦିନକରେ ଅସ୍ଥାନେ ବସିଛନ୍ତି ଶ୍ରୀଧର । ଗୁହାରିଆ ଏକ ଅସିଣ ମିଳିଗଲା ସେଠାର ।୧୨। ରାଜାର ସମ୍ମୁଖରେ ଯାଇଣ ଦରଶନ ଯେ କଲା । ହେ ଦେବ ତୁମ୍ଭର ରାଜ୍ୟରେ ବଡ଼ ଅନୀତି ହେଲା ॥ ପ୍ରମାଣ କରିଣ ମୋ କଥା ବୁଝିବଟି ହେ ଦେବ । ନୋହିଲେ ମୁଁ ପ୍ରାଣ ତେଜିବି ତୁମ୍ଭରେ ହତ୍ୟା ହେବ । ୧୪ । ନୃପତି ବୋଇଲେ କି କଥା ମୋତେ କହ ରେ ତୁହି । ନ୍ୟାୟ ହୋଇଣ ବୁଝା ହେବ ତେବେ ପରତେ ଯାଇ । ୧୫ । ଘର କେଉଁ ଦେଶେ ଅଟଇ ତୁମ୍ଭେ କାହା କୁମର । କେଉଁ କାରଣରେ ଅଇଲୁ ଗୁହାରି କରିବାର । ୧୬ । ସେ ବୋଇଲା

ଶୁଣ ମୋ ବାଣୀ ଦେବ ଯେ ତଥ୍ୟ କର । ଜମ୍ବୁକ ଦେଶରେ ଯାଇଣ ଘର ଅଟେ ମୋହର । ୧୭ । ନିତ୍ୟାନନ୍ଦ ବୋଲିକର ଯେ ଅମ୍ଭ ପିତାଙ୍କ ନାମ । ତାଙ୍କଠାରୁ ଅମ୍ଭେ ଜନମ ହେଲୁ ଗୃହ ନନ୍ଦନ । ୧୮ । ଯେନ୍ତୁ ସେ ଅଟେ ଜ୍ୟେଷ୍ଠ ଭାଇ ନାମ ତା ଅଦିକନ୍ଦ । ତାହାଙ୍କ ତଳରେ କନିଷ୍ଠ ନାମ ଅଟେ ଗୋବିନ୍ଦ । ୧୯ । ତାହାଙ୍କ ତଳରେ ଜନମ ନାମ ଅଟେ ମଦନ । ମୁଁ ପୁଣି ତାହାଙ୍କ କନିଷ୍ଠ ନାମ ଅଟେ ମୋହନ । ୨୦ । ମୋହର ପିତା ଯେ ବହୁତ ସ୍ନେହ ମୋତେ ସେ କରେ । ସେ ତିନି ଭାଇଙ୍କି ନ ପୁଚ୍ଛେ ଦିନେ କୋମଳ ଗୀରେ । ୨୧ । ଏକଦିନେ ଅମ୍ଭ ପିଅର ବସି ନିଜ ସଦନେ । ଗୃହ ଭାଇଙ୍କି ସେ ଡ଼କାଇ ବସାଇ ନିଜ ସ୍ଥାନେ । ୨୨ । ବୋଇଲା ରେ ପୁତ୍ରେ ସୁଚିତ୍ତେ ଘେନ ମୋର ବଚନ । ମୋର ଜୀଅନ୍ତେ ବାଣ୍ଟି ଦେବ ଅଛି ଯେତେକ ଧନ ।୨୩। ମୋର ଜୀବ ଗଲେ ପଶ୍ଚାତେ କାଳେ ଦେବେଟି ଗାଳି । ଭାଇ ଭାଇ ଭିନ୍ନ ହେବାକୁ ଲାଗୁଥିବ ଯେ କଳି ।୨୪। ଏହା ଶୁଣିଣ ସନମତ କଲେ ଯେ ତିନି ଭ୍ରାତ । ଜ୍ୟେଷ୍ଠଭାଇ ଆଉ କେବେହେଁ ନ କଲା ସନମତ ।୨୫। ସେ ବୋଇଲା ଆହେ ଭୋ ପିତା କମ୍ପା ଏ କଥା କତ । ଅମ୍ଭେ ଗୃହ ଭାଇ କେବେହେଁ ନ କରୁ ଭିନ୍ନ ଘର । ୨୬ । ଆପଣା ସୁଚିତେ ଅପଣେ ସବେ ମଳାଣ ଥିବୁ । ଭିନ୍ନ ହେବା ପାଇଁ କେବେହେଁ କଳି ଯେ ନ କରିବୁ ॥ ଜ୍ୟେଷ୍ଠ ପୁତ୍ର କଥା ଶୁଣିଣ ପିତା ହରଷ ହେଲା । ଧନ ବସନ ଯେତେ ଥିଲା କାହାକୁ ସେ ନ ଦେଲା ॥ ଏଥୁଅନନ୍ତରେ କେତେହେଁ ଦିନ ବହିଣ ଗଲା । ପିତାଙ୍କର ଏବେ ଆସିଣ ଶେଷ କାଳ ହୋଇଲା ।୨୯। ସେ ମୃତ୍ୟୁପିଣ୍ଡକୁ ତାହାର ଦାହନ ସେ କରାଇ । ଯେ ବେଦ ବିଧିର ମତରେ ପ୍ରେତକର୍ମ ବଢ଼ାଇ । ୩୦ । ତହୁଁ ଜ୍ୟେଷ୍ଠ ଭାଇ ଅମ୍ଭର ସଙ୍ଗତେ କଳି କଲା । ଅମ୍ଭ ତିନି ଭାଇଙ୍କୁ ଘରୁ ଘଉଡ଼ାଇ ସେ ଦେଲା । ୩୧ । ବୋଇଲା ମୋହର ମନ୍ଦିରୁ ତୁମ୍ଭେ ଚଳିଣ ଯାଅ । ଆଉ ତୁମ୍ଭେମାନେ କିଛିହେଁ ଧନ ଦ୍ରବ୍ୟ ନ ନିଅ । ୩୨ । ତେଣୁ କାହିଁ ଦେବ ଭୋ ଦେବ ଅଇଲି ଯେ ଘୁମୁଳି । କେମନ୍ତ ବାହୁର ଆସଇ ଆପଣଙ୍କ ମନକୁ ।୩୩।

ଗୁହାରଅ କଥା ଶୁଣିଣ ଯେ ନୃପତ ବୋଇଲା, ପଡ଼ିଅଛି ଖୁଣ୍ଟିଅଛୁ ଯେ ଡକାଇଣ ଆଣିଲା ।୩୪। ବୋଇଲା ମଠ ନ କରଣବେଗେ ଯାଅ ଚଳାଇ। କମ୍ବୁକ ଦେଶକୁ ଯାଇଣ ଘେନି ଆସ ସ୍ଵାମୀ ଭାଇ ।୩୫। ଯେ ଭନଜଣକୁ ଯାଇଣ ବେଗେ ଘେନି ଆସିବ । ଧନ ଲୋଭେ କେହୁ ତାହାଙ୍କୁ ଗ୍ରହିଣ ନ ଆସିବ ।୩୬। ଆଜ୍ଞା ପାଇ ସେ ବେନିଜନେ ବେଗେ ଚଳିଣ ଗଲେ । କମ୍ବୁକ ଦେଶରେ ଯାଇଣ ବେଗେ ପ୍ରବେଶ ହେଲେ ।୩୭। ଅଦିକନ୍ଦ ନାମ ଧରଣ ତାକୁ ଡ଼ାକିଲା ସେହି । ଶୁଣିକରି ଶ୍ରୀଜ ମନ୍ଦୁ ବେଗେ ଅଇଲା ଧାଇଁ ।। ନୃପତର ଆଜ୍ଞା ତାହାକୁ ବୁଝାଇଣ କହିଲା । ଯେ ଭନ ଭାଇଙ୍କୁ ସଙ୍ଗରେ ବେଗେ ଘେନିଣ ଗଲା ।୩୯। ରାଜାଙ୍କ ସମ୍ମୁରେ ତାହାଙ୍କୁ କରାଇଲା ଭେଟ । ଦେଖିଣ ନୃପତ ବୋଇଲେ ଆସ ମୋର ନିକଟ ।୪୦। ଶୁଣି ସେ ବଚନ ସେମାନେ ସମ୍ମୁରେ ଉଭା ହେଲେ । ତାହାଙ୍କୁ ଗୃହିଣ ବଚନ ଦଣ୍ଡଧର ବୋଇଲେ ।୪୧। କି ହେ ଅଦିକନ୍ଦ ତୁ ପୁଣି ଅନୀତ କର୍ମ କଲୁ । କମ୍ପାଇଁ ଏ ଭନ ଭାଇଙ୍କି ବାଣ୍ଟି କରି ନ ଦେଲୁ ।୪୨। ପିତାର ଅରଜିବା ଧନ ତୁ ଯେ ନ ଦେଲୁ ବାଣ୍ଟି । ବଳାତ୍କାରେ ତୁହି ରଖିଣ କମ୍ପା କରୁଛୁ ପାଣ୍ଠି ।୪୩। ଏ କି ଯଶ କଥା ତୋହର ନେରୁ କେଉଁ ନୀତ । ଏହି ଭନଜଣ ତୋହର କିବା ଭାଇ ନୁହନ୍ତି ।୪୪। ଏହାଙ୍କର ସବୁ ବୃତ୍ତାନ୍ତ ମୋତେ ବୁଝାଇ କହ । ତାଙ୍କର ଅନୀତ ହୋଇଲେ ତୁ ଯେ ସମ୍ମତ ନାଅ ।। ଏହା ଶୁଣି ଅଦିକନ୍ଦ ଯେ ଯୋଡ଼ିଲା ବେନି କର । ସାବଧାନ ହୋଇ ଶୁଣିବା ଦେବ ବଚନ ମୋର ।୪୬। ଯେବଣ କାଳରେ ମୋ ପିତା ଜୀବନରେ ସେ ଥିଲେ । ସ୍ଵଇଚ୍ଛାରେ ସବୁ ସମ୍ପଦ ମୋତେ ସମର୍ପି ଦେଲେ ।୪୭। ତାହାଙ୍କ ଆଜ୍ଞାରେ ସକଳ ଭୋଗ ମୁହିଁ କରୁଛି । ଏହି ଭନଜଣ ଆଇଣ ସବୁ ଦେଖୁଅଛନ୍ତି ।୪୮। ମୁଁ ଯେତେବେ ମିଛ କହୁଅଛି କରିବ ମୁଁ ନିଯୁମ । ଏହା ଶୁଣି ବୋଲେ ନୃପତ ଏହା ସତ୍ୟ ବଚନ ।୪୯। ତୋହର ନିଯୁମ କରନ୍ତେ ଅମ୍ଭେ ତୋଷ ଯେ ହେବୁ । ଏହି ଭନଗୋଟି ଭାଇଙ୍କି ଦୂର କରଣ ଦେବୁ ।୫୦। ଏହା ଶୁଣିଣ ଅଦିକନ୍ଦ ବେଗେ ହରଷ ହେଲା । ପୁଷ୍କରଣୀ ପାଶେ ଯାଇଣ

ବେଗେ ସ୍ନାହାନ କଲା । ୫୧ । କୂଳକୁ ଆସି ଅଦିକନ୍ଧ ବେଗେ ଯୋଡ଼ିଲା
କର । ସୂର୍ଯ୍ୟ ଦେବତାଙ୍କୁ ଗୁହାଁଣ ବେଗେ କହେ ଉତ୍ତର । ୫୨ । ଭୋ ପ୍ରଭୁ
ଧର୍ମନିରଞ୍ଜନ ବେଗେ ସାହା ଯେ ହୁଅ । ମିଛ ହୋଇଥିଲେ ତୁ ମୋତେ
ଶୂଳୀପରେ ବସାଅ ।୫୩। ଅନୀତ କରିଣ ମୁଁ ଯେବେ ଯେ ଧନ ନେଇଥିବି ।
ଆର ଜନ୍ମରେ ମୁହିଁ ପୁଣି ଗୃଧ୍ର ପକ୍ଷୀ ହୋଇବି । ୫୪ । ନୋହିଲେ ଶୃଗାଳ
ଯୋନିରେ ମୁଁ ଯେ ହୋଇବି ଜାତ । କୁମ୍ଭୀର ଗୋହି ଏ ହୋଇଣ କରିବଇଁ
ଅକୃତ୍ୟ । ୫୫ । ଏମନ୍ତ ପ୍ରକାରେ ତହିଁ ଯେ ନିୟମ ସେ କରିଲା । ଧୀବର
ଭିକାରୀ ଶୁଣିଣ ବଡ଼ ଆଶ୍ଚର୍ଯ୍ୟ ହେଲା । ୫୬ ।

---

## ଷଷ୍ଟିତମ ଛାନ୍ଦ

ରାଗ—କଳଶା ।

ନୃପତି ଯେ ପଚାରିଲେ ତାଙ୍କ ମୁଖ ଗୁହାଁ । କହୋ ମଦନ ମୋହନ
କୁ କହୁଛି ଏହୁ ।୧। ସେମାନେ ବୋଇଲେ ଏତ ଅଟେ ଘରବୁଡ଼ା । ତହିଁକେ
ବୋଇଲେ ଏତ ହେଲା ଅଣ୍ଟୁଳୁଡ଼ା । ୨ ।ମିଛ କଥାରେ ସୁକୃତ କରଇଁ ନେ
ଏହୁ । ଆମ୍ଭର ଏହୁ ଧନରେ ପ୍ରୟୋଜନ ନାହିଁ । ୩ । ନିୟମ କରିଣ ଧନ
ନେଲା ଯେବେ ଦେବୁ । ଆମ୍ଭେମାନେ ଭିକ୍ଷାମାଗି ଉଦର ପୋଷିବୁ । ୪ ।
ଏମନ୍ତ ସେ ତିନିଭାଇ ରାଜାଙ୍କୁ କହିଲେ । ତାହା ଶୁଣି ନୃପତି ଯେ ମନ୍ତ୍ରୀକି
ବୋଇଲେ । ୫ । କହ ମନ୍ତ୍ରୀ ତୋହର ବିଚାର କେଉଁମତ । ମୁହିଁ ଜାଣି ନ
ପାରିଲି ଏଥିର ଚରିତ ।୬। ଜ୍ୟେଷ୍ଠ ଭାଇ ବୋଇଲା ଏ ପିତା ଦେବା ଧନ ।
ମୁଁ କମାଇ ଏମାନଙ୍କୁ ବାଣ୍ଟି ଦେବି ପୁଣ । ୭ । ସେମାନେ ବୋଇଲେ ତାକୁ
ପିତା ଦେଇ ନାହିଁ । ବଳାତ୍କାର କରିଣ ସେ ନେଇଛି ଛଡ଼ାଇ । ୮ । ସୁକୃତ
କରିଣ ଯେବେ ନେଲା ବାଡ଼ି ବୃତ୍ତି । ଏ କଥାକୁ କେଉଁମତେ ବୁଝ ଅହେ
ମନ୍ତ୍ରୀ । ୯ । ମନ୍ତ୍ରୀ ବୋଇଲେ ଭୋ ଦେବ ଶୁଣିମା ବଚନ । ଏକ ମାତା-
ଠାରୁ ଏହୁ ଚାରି ଜେ ନନ୍ଦନ । ୧୦ । ଜ୍ୟେଷ୍ଠ ଭାଇ ହୋଇକରି ସେ
ଅନୀତ କଲା । ମିଛ କଥା କହୁ ସେ ଅନୀତ ଆଚରିଲା । ୧୧ । ହେତୁ

ଏବେ ଏକାନ୍ତେ ସେ ନେଇ କୋଠ ଧନ । ଏହି ଛଅ ଭାଇଙ୍କି ସେ
କରି ଦେଇ ଭିନ୍ନ । ୧୨ । ସେ ଜ୍ୟେଷ୍ଠ ଭାଇର ଯେବେ ହୃଦେ
ଦୟା ଥାନ୍ତା । ଏ ଛଅ ଭାଇଙ୍କୁ ସେ ଯେ ଯତନେ ପାଳନ୍ତା । ୧୩ ।
କଠୋର ହୃଦୟ ତାର ପାଷାଣର ଚଇ । ମୁଁ ଜାଣେ ଏକ ପିତାରୁ ନୁହନ୍ତି
ସେ ଜାତ । ୧୪ । ନୃପତି ବୋଇଲେ ମନ୍ତ୍ରୀ ହୋଇଲୁକି ବାଇ । ଏହି
କଥା କହିଲେ କି ମନକୁ ଯେ ପାଇ । ୧୬ । ମିଛେ ସେ ନିୟମ କରି
ଛଅଭାଗ ନେବ । ଅପଣେ ଏକାନ୍ତେ ରଖି କାହାକୁ ନ ଦେବ ।୧୭। ନର-
ଲୋକେ ନାଗଲୋକେ ରହିବେ କେମନ୍ତେ । ସତ ମିଛ କିଛି ଜଣା ନ
ଗଲାକ ଏଥେ ।୧୮। ଅମ୍ଭେ ରଜା ବୋଲି ଅମ୍ଭ ପାଶକୁ ଅଇଲା । ଅହେ
ମନ୍ତ୍ରୀବର ତୁମ୍ଭ ମନ ଯୋଗାଇଲା ।୧୯। ଅମ୍ଭର ଚାତୁରକୁ ଯେ ନ ଅସେ
ତେମନ୍ତ । ଦେଖ ଦେଖ ଏହିକ୍ଷଣି ବାଣ୍ଟିଦେବା ବିତ୍ତ । ୨୦ । ଏମନ୍ତ
ପ୍ରକାରେ ରଜା ତାକୁ ଯେ ବୋଇଲେ । କାଷ୍ଠର ପିତୁଳା ଯେ ଗୋଟିଏ
ଗଢ଼ାଇଲେ ।୨୧। ନିତ୍ୟାନନ୍ଦ ବୃଙ୍କ ପଦ ସମସ୍ତ କରିଣ । ଚାରି ପୁତ୍ର ମୁଖ
ଚାହିଁ ବୋଇଲେ ବଚନ ।୨୨। ସୁଚିତ୍ତ ମନରେ ଘେନ ଅମ୍ଭର ଉତ୍ତର ।
ତୁମ୍ଭର ପିତା କି ଅଟେ ଏମନ୍ତ ପ୍ରକାର । ୨୩ । ଏହିରୂପେ ନାସା ଆଖି
ଏରୂପେ ଶ୍ରବଣ । ଏହିପରି ଦୁଇ ହସ୍ତ ଏପରି ଚରଣ । ୨୪ । ଶୁଣି ସେ
ବୋଇଲେ ଦେବ ଅଟଇ ଯଥାର୍ଥ । ଏହିପରି ଏ ଶରୀର ହେବ ଅମ୍ଭ ତାତ ॥
ରଜା ପଚାରିଲେ ଚାହିଁ ଏ ଛଅ ଭାଇଙ୍କୁ । ଏହି ବୁଢ଼ା ଧନ ବାଣ୍ଟି ନ ଦେଲା
ତୁମ୍ଭଙ୍କୁ ।୨୬। ସେତେବେଳେ ଭାଗ ନ କରନ୍ତେ ହେଲା କଳି । ଜ୍ୟେଷ୍ଠ
ଭାଇ ଧନ ରଖି ଦେଇଅଛି ଗାଳି ।୨୭। ତୁମ୍ଭେ ଏମନ୍ତ ପ୍ରକାର କର ଛଅ
ଜୁଟେ । ବୁଢ଼ାକୁ ଯେ ଧରିଣ ଘୁଅଁଣି ଘେନ ପିଠ ।୨୮। ସେ କାଷ୍ଠ ପିତୁଳା
ଯାହା ସମସ୍ୟା କହିବ । ସେହି ପରକାରେ ଚାରି ଭାଇ ବାଣ୍ଟି ନେବ । ୨୯ ।
ଏହା ଶୁଣି କରି ଛଅ ନନ୍ଦନ ବୋଇଲେ । ହେ ଦେବ ତହିଁରେ ଅମ୍ଭ
କାର୍ଯ୍ୟ ନାହିଁ ଭଲେ ।୩୦ ପିତା ଯେ ପରମ ମୂର୍ତ୍ତି ପିଣ୍ଡ ଅଧିକାରୀ । ଧନ
ଲୋଭେ କେମନ୍ତେ ପିଟିବୁ ଝାଡ଼ୁ ଧରି । ୩୧ । କିଛି କାହାକୁହିଁ ପଚ୍ଛେ ନ

ମିଳୁ ଅମ୍ବର । ଏତେ କହି ଭଳାଭାଇ ପଡ଼ିଲେ ପାଦର । ୩୨ । ଦେଖି କରି ରାଜା ମନେ ହରଷ ହୋଇଲେ । ଜ୍ୟେଷ୍ଠ ପୁତ୍ର ମୁଖ ଚାହିଁ ବଚନ ବୋଇଲେ ।୩୩। ସେ ଭଳା ଭାଇ ତୁମ୍ଭର ନ ମାନିଲେ କେହି । ସେମାନେ ସେ ଧନ ଅଜ ବାଣ୍ଟି ନେବେ କାହିଁ ।୩୪। ତୁ ଏବେ ପିତାକୁ ଧରି କର ହେ ପ୍ରହାର । ତେତେବେଳେ ଏହାଙ୍କୁ ସେ ନ କଲେ ବାହାର । ୩୫ । ଏତେବେଳେ ତୋ ସଙ୍ଗରେ ଲଗାଇଲେ କଳି । ଘୁଞ୍ଚୁଣି ପିଟିଣ ତାଙ୍କୁ ଦିଅ ତୁହି ଗାଳି ।୩୬। ତାହା ଶୁଣି ଅଦିକନ୍ଦ ହରଷ ହୋଇଲା । ତତକାଳେ ପିତା କେଶ ହସ୍ତରେ ଧରିଲା ।୩୭। ବୋଇଲା ରେ ମୂର୍ଖ ମୋତେ ସବୁ ଧନ ଦେଲୁ । ତେତେବେଳେ ଭଳା ପୁତ୍ରଙ୍କୁ ଯେ ନ କହିଲୁ । ୩୮ । ଏତେ-ବେଳେ ସେମାନେ ମୋ ସଙ୍ଗେ କଲେ ଦ୍ୱନ୍ଦ । ଏଡ଼ିକ ଅଜ୍ଞାନ ତୁହି ଥିଲୁ ଅରେ ମନ୍ଦ । ୩୯ । ଏମନ୍ତ କହିଣ ସେ ଯେ ଘୁଞ୍ଚୁଣି ଧରିଲା । ଯାତ ଯେ ପାହାର ବୁଢ଼ା ମୁଣ୍ଡରେ ପିଟିଲା ।୪୦। ଧନ୍ୟ ସେ ଖୁଲଣା ସୁତ ଧନ୍ୟ ବୁଦ୍ଧି ତାର । ନୋହିଲେ ସେ ଏତେକଥା କରନ୍ତା ବିଚାର । ୪୧ । କହଇ ଦୀନ ଭିକାରୀ ମଙ୍ଗଳାଙ୍କୁ ଭାବ । ମୋତେ ତୁ ଉଦ୍ଧାର କର ପରମ ମାଧବୀ ।୪୨।

---

## ଏକଷଷ୍ଠିତମ ଛାନ୍ଦ

### ( ଗୋପୀଭାଷା ବୃତ୍ତେ )

ଯହୁଁ ପିତୁଲାକୁ କଲା ପ୍ରହାର । ତାହା ଦେଖିଣ ବୋଲେ ନୃପ-ବର ।୧। ଏଡ଼ିକ ଅଜ୍ଞାନ ତୁ ମୂଢ଼ ଅଛୁ । ଧନ ଲୋଭରେ ତୁ ପିତାକୁ ପିଟୁ ।। ଜାଣିବାରେ ସେ ନୁହେ ତୋର ତାତ । ଭଗାରି ଗୋଟାଏ ହୋଇଛୁ ଜାତ ।। ପିତା ଅଟଇ ଯେ ପରମମୂର୍ତ୍ତି । ତାହାର ବୀର୍ଯ୍ୟୁ ହେଲୁ ଉତ୍ପତ୍ତି ।୪। ବାଳକ କାଳୁ ଯୁବା କରାଇଲା । କେତେଦିନ ପରେ ବିବାହ ଦେଲା । ୫ । କୋଳକୁ ଯୁବତୀ ଦେଲାକ ଯହୁଁ । ତୁ ପୁଣି ତାକୁ ମୂର୍ଖ କରୁଛୁ ତହୁଁ ।୬। ପିତା ମରନ୍ତେ ରଖିଲୁ ଧନକୁ । ବୋଇଲୁ ମୁହିଁ ନ ଦେବି କାହାକୁ ।୭। ତୋର ଅର୍ଜିଲା

ଧନ ହୋଇଥିଲେ । ନ ଶୂଳରୁ ଖସିତ ଉପରେ ଭଲେ ।୮। ପିତା ଧନରେ ଏତେ ଟାଣ ତୋର । ଯାଅ ମୋର ପାଶୁଁ ହୋଇଣ ଦୂର ।୯। ଆହେ ମନ୍ତ୍ରୀ ସ୍ୱାନ୍କୁ ବନ୍ଧନ କାଅ । ଶୂଳ ଉପରେଣ ସ୍ୱାନ୍କୁ ବସାଅ ॥ ଆଜ୍ଞା ପ୍ରମାଣେ ମନ୍ତ୍ରୀ ଚଳିଗଲା । ସାଧବ ପୁଅକୁ ବେଗେଣ ନେଲା । ୧୧ । ସୁବର୍ଣ୍ଣ ଦ୍ରବ୍ୟ ଛଡ଼ାଇ-ବାକୁ ଦେଲା । ଶୂଳ ଉପରେ ନେଇ ବସାଇଲା । ୧୨ । ନାହିଁତ ପ୍ରତାପେ ଗଲା ଜୀବନ । କୋହିଲେ ନେଇ ଆସ୍ତା ସବୁ ଧନ । ୧୩ । ଧନ୍ୟ ଧନ୍ୟ ଅଟେ ଶ୍ରୀଧର ବୁଦ୍ଧି । ଦୟାଳୁପଣେ ଅଟେ ବାରିନିଧି ।୧୪। ଅସାଧ୍ୟକୁ ସାଧ୍ୟ ଆପଣେ କରେ । ଦୁଷ୍ଟଙ୍କୁ ଦଳଇ ସନ୍ଥଙ୍କୁ ପାଳେ । ୧୫ । କହଇ ଭିକାରୀ ରଖ ମଙ୍ଗଳା । ସଦା ସର୍ବଦା ଚିତ୍ତ ହୁଏ ଖେଳା । ୧୬ । ଏହା ସୁଦଶା ଭିକାରୀକା ହେଉ । ଯେଉଁଣେ ଗୃହଁଲେ ପଦ ଦିଶୁ ଥାଉ ।୧୭।

---

# ବିଷ୍ଣୁ ଉତ୍ତମ ଛାନ୍ଦ

## ( ମାନ ଉଦ୍ଧାରଣ—ବୃତ୍ତେ )

ଶୁଣ ସୁଜ୍ଞଜନ ଏଅନ୍ତେ ବଧାନ ପାହା ହେଲା କହୁଅଛୁ ମୁହିଁ । ଘାଗବୀ ଦେଶର ସର୍ବ ସମାଚାର ଶୁଣ ଶିଶୁବନ୍ଧୁ ମନ ଦେଇ । ୧ । କାର୍ତ୍ତିକ ମାସରେ ଶୁକଳ ପକ୍ଷରେ ସେ ଦିନ ପୂର୍ଣ୍ଣମୀ ଗୁରୁବାର । ପ୍ରଭାତୁଁ ଉଠିଣ ସ୍ନାହାନ ସାରଣ ଧନେଶ୍ୱର ବଳା ଶିବାଧର । ୨ । କୋଟିଏକ ଚମ୍ପା କୋଟି ବେଲପତି କୋଟିଏ ଧୁତୁରା ଅଛୁ ନେଇ । ଚମ୍ପା ଯେ ବଉଳ କୋଟିଏ ମନ୍ଦାର କୋଟିଏ ଗଇଣକୁ ମିଶାଇ । ୩ । କୋଟିଏକ ପାରିଜାତକ କୁସୁମ କୋଟିଏ ତୁଳସୀ ସେହୁ ନେଲା । କୋଟିଏକ ଧେନୁ କ୍ଷୀରକୁ ନେଇଣ ଶ୍ରୀଧର ଶିବଙ୍କ ପରେ ଦେଲା ।୪। ହରଷ ହୋଇଣ ଖଳିଣା ନନ୍ଦନ ସଦାଶିବ ପାଦତଳେ ପଡ଼ି । ଉଠି ଉଭା ହୋଇ ଜଣାଣ କରଣ ବେନି ଭୁଜକୁ ମସ୍ତକେ ଯୋଡ଼ି ।୫। ଆହେ ତ୍ରିଲୋଚନ ଆହେ ସଦାଶିବ ଆହେ ପଶୁପତି ଉମାକାନ୍ତ । ଆହେ ତ୍ରିଶୂଳ ଧାରଣ କରିଅଛ ଡମ୍ବୁର କେ ପାଇପାରେ ଅନ୍ତ

୬। ଶିବ ହରହର ଅହେ ଗଙ୍ଗାଧର ଅହେ ମହେଶ୍ୱର ହୋଇ ଭୋଳା ।
ଅହେ ପ୍ରଭୁ କାଶୀ କଇଲାସ ବାସୀ ଅହେ ନୀଳକଣ୍ଠ ବିଷଗିଲା ।୭। ଦୁଃଖ
ନିବାରଣ ଡମ୍ବରୁ ଧାରଣ ଶରଣ ତାରଣ ଅଟ ଯେଣୁ । ମହିମା ଅପାର ହେ
ଯୋଗୀ ଯୋଗେଶ ତୁମ୍ଭର କରୁଣା ଅଟେ ତେଣୁ । ୮ । ଯେବଣ କାଳରେ
ଗଲି ବୋଇତରେ ପିତାଙ୍କୁ ଆଣିବା ଅର୍ଥେ ମୋର । ସେ କାଳରେ ମୁହିଁ
ଏହା ମାନିଥିଲି ତୁମ୍ଭଙ୍କୁ ଦେବାକୁ ମହେଶ୍ୱର ।୯। ଏବେ ଆଣି ତୋ
ପାଦରେ ଖଣ୍ଟାଇଲି କ୍ଷମା କରିବାକୁ ମୋର ଦୋଷ । ତାହା ଶୁଣିକରି
ଶ୍ରୀଧରକୁମର ନିଜ ଗୃହେ ହେଲେ ପରବେଶ ।୧୦। ସେ ରାଜ୍ୟରେ ସୁଖେ
ପ୍ରଜା ଅଛନ୍ତି ଦୁଃଖ ନ ପଡ଼େ କାହାକୁ କିଛି । ମଙ୍ଗଳା ପ୍ରସନେ ସବୁରି
ଭୁବନେ ପୁତ୍ର ଦୁହିତା ଯେ କୋଳେ ଅଛି । ୧୧ । ଯମ ବାଧା ଆଉ ସେ
ଗ୍ରାମରେ ନାହିଁ ମରଣହିଁ ନାହିଁ ଜଣେ ଜଣେ । ବେଳକାଳ ଜାଣି ଇନ୍ଦ୍ର
ପାଳୁଥାଇ ଧନେଶ୍ୱରସୁତ ରାଜପଣେ । ୧୨ । ବିପ୍ରଙ୍କୁ ବହୁତ ଆକଟ କରନ୍ତି
ବୈଷ୍ଣବଙ୍କୁ ପୂଜନ୍ତି ବେଳ ଜାଣି । ଆଉ କେହି କିଛି ଅନୀତି ନ କରେ ଧର୍ମ
ଶାସ୍ତ୍ରଙ୍କୁ ପରମାଣ । ୧୩ । ଏବେ ଆସିକରି ସବୁ କର୍ମ ହେଲା ସୁଜନେ
ସେହି ନାମକୁ ଘୋଷ । ଧନ ଜନ ପୁତ୍ର ସମସ୍ତ ହୋଇବ ପାଇବଟି
ସ୍ୱର୍ଗପୁରେ ବାସ । ୧୪ । ଭାରବା ନିମନ୍ତେ ତାରଣୀ ବୋଲନ୍ତି ଯାହି
କରିବେ ଏ ସଂସାରରୁ । ସିନ୍ଧୁରାଜ ସୁତା ଲକ୍ଷ୍ମୀ ଯାର ନାମ ପଢ଼ ଯା ଅଟେ
ମହିମା ମେରୁ । ୧୫ । ସେ ପୁଣି ତାରିବେ ସେ ପୁଣି ମାରିବେ ସେ ପୁଣି
ପାଇବେ ତାଙ୍କୁ ଭକ୍ତ । ସେ ସିନା ମାରିବେ ସେ ସିନା ରଖିବେ ସେ ସିନା
ରଖିବେ ଦେବରାଜ । ୧୬ । ରଖିଲେ ସୁଗ୍ରୀବ ରଖି ମାରୁତିକ ରଖିଲେ
ବଳିକି ପାତାଳରେ । ମାରିଲେ ରାବଣ ରଖି ବିଭୀଷଣ ସେ ପୁଣି
ଅଛନ୍ତି ଲଙ୍କାପୁରେ । ୧୭ । ତାରଣୀ ବୋଲି ଯେଉଁ ନାମ କହଇ ସେ
ପୁଣି ଅଟନ୍ତି ତାଙ୍କ ନାସ୍ତି । ତାହାଙ୍କ ପଦ ପାଦରେ ଆଶ୍ରେ କଲେ ସେହି
ପାରନ୍ତି ସଂସାର ତାର । ୧୮ । ସେହି ସେ ମଙ୍ଗଳା ସେହି ସେ କମଳା
ସେହି ସେ ଜଗତମାତା ପୁଣ । ସେହି ସେ କଙ୍କାଳୀ ସେହି ସେ ବେତାଳୀ

ସେହୁ ସେ ଭୈରବୀ ଅଟେ ପୁଣ । ୧୯ । ତାକୁ ଅସେବକଲେ ଦୁଃଖ ନାହିଁ କିଛୁ ଜାଣିଛୁ ମୁଁ ତାହା ଦୃଢ଼ କର । ଦୁଃଖ ନିବାରିବା ମାତୃାଙ୍କୁ ତାରିଣୀ ମଙ୍ଗଳା ନାମ ଗୋଟିକୁ ଧର । ୨୦ । ତେଣୁ ସେ ଧୀବର ଭକ୍ତାସୁ ରସିଲ ସକଳ କଥାଲୁ ହୃଦୁଁ ତେଜି । କେବଳ ମାତା ନାମକୁ ମୁଁ ଭଜଇ ଏହୁ କଥା ଗୋଟ ମନେ ହେଜି ।-୨୧ । ସ୍ୱପ୍ନେବେ ମୁହିଁତ ବାଳୁତ ଅଟଇ ଅଜହୁଁ ବୟସ ଊଣେଇଣ । ନ ଜାଣଇଁ ମୁହିଁ ଶ୍ରୀକୃଷ୍ଣ ଭଜନ ନ



ଜାଣଇଁ ମୁହିଁ ଜ୍ଞାନ ରସ । ୨୨ । ସବୁଦିନେ ମୁହିଁ କାଛି କରନାହିଁ ଗୋଷ୍ଠିରେ ଦିନେ ମୁଁ ନାହିଁ ବସି । କେଉଁ ନାମ ଧରୁ ମୁକତ ପାଇବୁ କେମନ୍ତେ କହିବେ ମୋତେ ଆସି ।୨୩। ବଡ଼ ଦୁଃଖୀ ମୁହିଁ ଜଗତ ଭିତରେ ଆଳି ନଗ୍ରେ ମୋର ଅଟେ ଘର । ପଦ୍ମନାଭ ଦେବ ଏ ରାଜ୍ୟରେ ରାଜା ସୂର୍ଯ୍ୟବଂଶ କୁଳେ ଅବତାର । ୨୪ ! ଯେବଣ କାଳେ ମୁଁ ଜନମ ହୋଇଲି ପିତାଙ୍କ ବଦନ ଦେଖି ନାହିଁ । ଜାତରେ ମୁଁ ପୁଣି ଅଟଇ ଧୀବର ମୋ ପରି ଦୁଃଖୀ ନ ଥିବେ କେହି । ୨୫ । ଜନନୀ ଥୋକାଏ ବିଦ୍ୟା ପଢ଼ାଇଲେ ସଦବୁଦ୍ଧି ମୋର ହେଲା ପଛୁଁ । ଗୁରୁଙ୍କର ନାମ ଶିବ ପ୍ରଷ୍ଟି ଅଟେ ଜ୍ଞାନ

ମୁହିଁ ଭଲେ ମୋତେ ଯେହ୍ନୁ ॥ ଏଗାର ବରଷେ ଗ୍ରନ୍ଥଶାଳା କଲି ସାମନ୍ତ
ଜଗନ୍ନାଥଙ୍କ ଘରେ । ଯେ ପୁଣି ଅଟନ୍ତି ନୃପତିଙ୍କ ଭ୍ରାତା ଦୟା ଧର୍ମ ମୋର
ତାଙ୍କଠାରେ । ୨୭ । ଆବର ଗୋଟିଏ ବାଳୁତ ତନୟ ବିଦ୍ୟା ପଢ଼ାଇଲି
ମୁହିଁ ଯେଣୁ । ଦିନେକ ସାମନ୍ତେ ମୋ ପାଶେ ଆସିଣ କୋମଳ ବାଣୀ
ଭାଷିଲେ ତେଣୁ ॥ ତାହାଙ୍କ ବଚନେ ମୁହିଁ ତୋଷମନେ ତାହାଙ୍କ ସଙ୍ଗେ ଯେ
ବସିଲଇଁ । ସେଠାରୁ ଯେ ପୁଣି ବଚନ କହିଲେ ମୋହ ନିକଟରେ
ବସିଥାଇ । ୨୯ । ସେ ଏହା ବୋଇଲେ ମଙ୍ଗଳା ଚରିତ ଲେଖି ଦେଇ
ପାରିବ କି ତୁମ୍ଭେ । ଦୁର୍ଗତି ନାଶିନୀ କାହାକୁ ରଖିଲେ କଷ୍ଟରେ ତାହ
ଶୁଣିବୁ ଆମ୍ଭେ । ୩୦ । ତାହା ଶୁଣି କରି ତତକ୍ଷଣେ ଗଲି ସମ୍ମତ ମୁଖେ ମୋ
ହିଁ କଲି । ଲେଖିବି ବୋଲିଣ ତାହାଙ୍କୁ କହିଲି ମଙ୍ଗଳାଙ୍କୁ ମନେ ସୁମ
ରିଲି । ୩୨ । ପୂର୍ଣ୍ଣ ହେଲା ପୁଣି ବାଅଶଠୀ ଛାନ୍ଦ ଗୀତ ମୋହର ବେନ୍ମ
ନସ୍ଥାନେ । ଲେଖା ପଚାଶ ଦିନ ଆରମ୍ଭିଲି ଶେଷ ହେଲା ଶିବରାତ୍ରୀ ଦିନେ ॥
ଖୁଲଣାଙ୍କର ବାଅଶଠୀ ଛାନ୍ଦ ଏ ଗୀତ ଶେଷ ଆଜି ଠିକ କଲି । ଯେଉଁ ଜନ
ଏହା ଶ୍ରବଣେ ଶୁଣିବ ନ ବୋଲିବ ଯେ ଅଶୁଦ୍ଧ ବୋଲି । ୩୩ ।

ଇତି ଶ୍ରୀ ଖୁଲଣାସୁନ୍ଦରୀ ବା ନାଗ ମଙ୍ଗଳବାର ଓଷା ସଦାଜଦେବୁ ସମ୍ପୂର୍ଣ୍ଣ

---

କଟକ ମନମୋହନ ପ୍ରେସରେ ଶ୍ରୀ ମୋହନ ଚରଣ ଦାସଙ୍କ ଦ୍ୱାରା
ମୁଦ୍ରିତ । ୧୯୦୪ ।

